

# ସାରସ୍ୱତ ସାଧକ
# ଡାକ୍ତର ବିକ୍ରମ ଦାସ

ଉତ୍କଳ ସାହିତ୍ୟ ସମାଜ

# ସାରସ୍ୱତ ସାଧକ
# ଡାକ୍ତର ବିକ୍ରମ ଦାସ

ସଂପାଦନା
ଡାକ୍ତର ପ୍ରସନ୍ନ କୁମାର ରାଠୋର
ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ




**ଉତ୍କଳ ସାହିତ୍ୟ ସମାଜ**
ଶ୍ରୀରାମଚନ୍ଦ୍ର ଭବନ, କଟକ-୯

# ସାରସ୍ୱତ ସାଧକ ଡାକ୍ତର ବିକ୍ରମ ଦାସ

ସଂପାଦନା
ଡାକ୍ତର ପ୍ରସନ୍ନ କୁମାର ରାଠୋର
ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ସୌଜନ୍ୟ :
ପ୍ରଫେସର ଡାକ୍ତର ସିଦ୍ଧାର୍ଥ ଦାସ

ପ୍ରକାଶକ
ଉତ୍କଳ ସାହିତ୍ୟ ସମାଜ
ଶ୍ରୀରାମଚନ୍ଦ୍ର ଭବନ, କଟକ-୯

ପ୍ରକାଶ କାଳ : ଶ୍ରୀପଞ୍ଚମୀ, ୨୦୧୩

ମୂଲ୍ୟ -୭୦ଟଙ୍କା

***Saraswata Sadhaka Dr. Bikram Das***

*Edited by*
***Dr. Prasanna Kumar Rathor***
***Dr. Gobinda Chandra Chand***

*Courtesy*
***Prof. Dr. Sidharth Das***

*Published by*
***Utkal Sahitya Samaj,***
*Sriramachandra Bhawan*
*Cuttack-9, Odisha, INDIA*

*First Edition*
***Sripanchami, 2013***

***Price : Rs. 70/–***

# ମହାମିଳନ

## ଡକ୍ଟର ରତ୍ନାକର ଚଇନି

ଡାକ୍ତର ବିକ୍ରମ ଦାସ ଆମ ଆଗଧାଡ଼ିର ଜଣେ ବିସ୍ମୟକର ମଣିଷ। ବୃତ୍ତିରେ ସେ ଥିଲେ ଜଣେ ଡାକ୍ତର; ମାତ୍ର ପ୍ରବୃତ୍ତିରେ ସେ ଥିଲେ ଜଣେ ନିଷ୍ଠାପର ସାରସ୍ୱତ ସାଧକ। ବାରମ୍ବାର ମୁଁ ତାଙ୍କୁ ଭେଟିଥିଲି ବାଣୀପୀଠ ଶ୍ରୀରାମଚନ୍ଦ୍ର ଭବନରେ। କେତେବେଳେ ହଲ୍‌ରେ ମୁଗ୍ଧ ଶ୍ରୋତା ରୂପରେ ତ କେତେବେଳେ ମଧୁସୂଦନ ପଠାଗାରରେ ଜିଜ୍ଞାସୁ ଚିତ୍ତର ସଚ୍ଚା ମଣିଷଟି ଭାବରେ। ହସ ହସ ମୁହଁ; ସ୍ନେହୀ ତଥା ଜଗତକୁ ନିଜର କରିନେବାର ଅପୂର୍ବ ବ୍ୟକ୍ତିତ୍ୱ।

ମନୀଷୀ ନୀଳକଣ୍ଠଙ୍କର ସେ ଥିଲେ ଶ୍ରଦ୍ଧାସ୍ପଦ ସୁପୁତ୍ର। ସେଥିପାଇଁ ସମ୍ଭବତଃ ତାଙ୍କ ଅନ୍ତର୍ଚେତନାରେ ସଂଜୀବିତ ହୋଇ ରହିଥିଲା ସର୍ଜନକଳା। ଉପନ୍ୟାସ, କିଶୋର ସାହିତ୍ୟ, ବିଜ୍ଞାନକଥା, ଭ୍ରମଣ କାହାଣୀ ଓ ସ୍ମୃତି-ବାର୍ତ୍ତା ଭଳି ରଚନାରେ ତାଙ୍କ ସାରସ୍ୱତ ଜଗତ ଉଚ୍ଚକିତ। ତାଙ୍କ ସୃଷ୍ଟିସଂପଦ ଜୀବନ୍ତ ଓ ହୃଦୟଗ୍ରାହୀ। ଖୁବ୍ ସରଳ ଓ ମନଛୁଆଁ ଭାଷାରେ ସେ ତାଙ୍କ କହିବା କଥା ଉପସ୍ଥାପନ କରିଥାଆନ୍ତି। ପାଠକ ଯେପରି ଭାବବିଭୋର ହୋଇ ସେ ସୃଜନ ଜଗତରେ ହଜିଯିବା ପାଇଁ ତାହା ଉଦ୍ଦିଷ୍ଟ।

ସ୍ରଷ୍ଟାଙ୍କ ସୃଷ୍ଟିର ମୂଲ୍ୟାୟନ କରିବା ପାଇଁ ନିରବଧି କାଳ ରହିଛି। ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଓ ଆଗାମୀ ପିଢ଼ିର ବିଦ୍‌ଗଧ ପାଠକମାନେ ଅଛନ୍ତି। ହୁଏତ ତାଙ୍କ ସାହିତ୍ୟର ପୁସ୍ତକ ରୂପ ଭବିଷ୍ୟତରେ ଭିନ୍ନ କିଛି ରୂପ ଧାରଣ କରିପାରେ। ତେବେ ତାଙ୍କ ସାହିତ୍ୟ ବଞ୍ଚିରହିବ। ବଞ୍ଚିରହିବ ତାଙ୍କ ଚେତନଶୀଳ ଭାବଫଲ୍‌ଗୁ।

ସାରସ୍ୱତ ସାଧକ ଡାକ୍ତର ବିକ୍ରମ ଦାସ
......................................

ତଥାପି ତାଙ୍କ ପ୍ରସଙ୍ଗଙ୍କୁ, ବ୍ୟକ୍ତିସତ୍ତାକୁ ତଥା ସାହିତ୍ୟିକ ମୂଲ୍ୟବୋଧକୁ ଜୀବନ୍ତ କରି ରଖିବାକୁ ତାଙ୍କ ସୁପୁତ୍ର ଡାକ୍ତର ସିଦ୍ଧାର୍ଥ ଦାସଙ୍କ ପ୍ରୟାସ ଏକାନ୍ତ ଭାବେ ସ୍ୱାଗତଯୋଗ୍ୟ। ବୁଦ୍ଧିଜୀବୀ ସମାଜ ସମ୍ମୁଖରେ ସେ ଡାକ୍ତର ବିକ୍ରମ ଦାସଙ୍କୁ ସ୍ମୃତି-ସଜଳ କରି ଉପସ୍ଥାପନ କରୁଛନ୍ତି। ସେଥିପାଇଁ ସେ ଧନ୍ୟବାଦର ପାତ୍ର।

ଉତ୍କଳ ସାହିତ୍ୟ ସମାଜର ଶ୍ରୀରାମଚନ୍ଦ୍ର ଭବନରେ ଡାକ୍ତର ବିକ୍ରମ ଦାସଙ୍କ ସ୍ମୃତି-ଚିତ୍ର ସ୍ଥାନିତ ହେବାକୁ ଯାଉଚି। ଏଇଠି ସ୍ଥାପନ ପାଇଥିଲା ତାଙ୍କ ପିତା ମନୀଷୀ ନୀଳକଣ୍ଠଙ୍କ ତୈଳଚିତ୍ର। ଏହା ଏକ ବିରଳ ଯୋଗାଯୋଗ। ପିତା-ପୁତ୍ରଙ୍କର ଏ ମହାମିଳନ।

ସଭାପତି,
ଉତ୍କଳ ସାହିତ୍ୟ ସମାଜ, କଟକ

# ଆମୁଖ

ଓଡ଼ିଶାର ବିଶିଷ୍ଟ ଜନନେତା, ମହାନ୍ ସ୍ୱାଧୀନତା ସଂଗ୍ରାମୀ, ସାରସ୍ୱତ ସାଧକ ତଥା ଓଡ଼ିଆଭାଷାକୁ ଋଦ୍ଧିମନ୍ତ କରିବାରେ ପ୍ରମୁଖ ସ୍ଥାନ ଗ୍ରହଣ କରିଥିବା ମହାମନୀଷୀ ପଣ୍ଡିତ ନୀଳକଣ୍ଠ ଦାସ ଓ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ମହିଳା ସତ୍ୟାଗ୍ରହର ନେତୃତ୍ୱ ନେଇଥିବା ଅନ୍ୟତମା ମହିୟସୀ ନାରୀନେତ୍ରୀ ଶ୍ରୀମତୀ ରାଧାମଣୀ ଦେବୀ(ଦାସ)ଙ୍କ କନିଷ୍ଠ ପୁତ୍ର ସାଧକ ପ୍ରଫେସର ଡାକ୍ତର ବିକ୍ରମ ଦାସଙ୍କ ଜନ୍ମ ୧୩ ଫେବୃଆରୀ ୧୯୨୧ । ପିତା, ମାତା ତଥା ଅଗ୍ରଜ ଶ୍ରୀ ଅଶୋକ ଦାସଙ୍କର ବୈପ୍ଳବିକ ଜୀବନ ସଂଗ୍ରାମ ଦ୍ୱାରା ସେ ବିଶେଷ ପ୍ରଭାବିତ ହୋଇଥିଲେ । ଛାତ୍ର ଜୀବନରୁ ହିଁ ତାଙ୍କର ବୈପ୍ଳବିକ ମନୋଭାବ ସ୍ପଷ୍ଟ ବାରି ହେଉଥିଲା ।

ଶ୍ରୀରାମଚନ୍ଦ୍ରପୁର ଶାସନରୁ ପ୍ରାଥମିକ ଶିକ୍ଷା ସମାପ୍ତ କରି ଶ୍ରୀ ଦାସ ସତ୍ୟବାଦୀ ଆଦର୍ଶ ବନବିଦ୍ୟାଳୟରେ ମାଇନର୍ ଶିକ୍ଷା ଶେଷ କରିଥିଲେ । ପରେ ଦାସ କଟକ ଆସି ରେଭେନ୍ସା ଉଚ୍ଚ ବିଦ୍ୟାଳୟ (କଲିଜିଏଟ୍ ସ୍କୁଲ)ରେ ନାମ ଲେଖାଇଥିଲେ । ସେ ଛାତ୍ର ସତ୍ୟାଗ୍ରହରେ ଯୋଗଦେଇ ୧୯୩୯ ମସିହାରେ ପ୍ରଥମେ କାରାବରଣ କରିଥିଲେ । ପ୍ରଥମେ କଟକ ଓ ପରେ ଅନୁଗୁଳ କାରାଗାରରେ ପ୍ରାୟ ଦେଢ଼ମାସ ବନ୍ଦୀ ଜୀବନ କଟାଇଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଫରଓ୍ୱାର୍ଡ ବ୍ଲକ୍ ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନବେଳେ ସେ ରେଭେନ୍ସା ମହାବିଦ୍ୟାଳୟର ପ୍ରଥମ ଛାତ୍ରାବାସକୁ ସ୍ୱାଧୀନ ଘୋଷଣା କରିବା ସହିତ କାର୍ଯ୍ୟାଳୟରେ ନିଆଁ ଲଗାଇବା ଆଦି କାର୍ଯ୍ୟରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ସେଥିପାଇଁ ପୁଲିସ୍ ଶ୍ରୀ ବିକ୍ରମ ଦାସଙ୍କୁ ଗିରଫ କରିବା ପାଇଁ ଖୋଜିବୁଲିଲା । ବହୁ ଉଦ୍ୟମ ସତ୍ତ୍ୱେ ପୁଲିସ୍ ତାଙ୍କୁ ଗିରଫ କରିବା ଯୋଜନାରେ ବିଫଳ ହେଲା । ସେ ଛଦ୍ମବେଶରେ କଲିକତା ଚାଲିଯାଇ ଆତ୍ମଗୋପନ କରିଥିଲେ । ପରେ କୌଶଳରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ନିଷ୍କ୍ରମଣ ପ୍ରମାଣପତ୍ର ନେଇ କଲିକତାର ବଙ୍ଗଭାଷୀ ମହାବିଦ୍ୟାଳୟରୁ ଆଇ.ଏସ୍‌ସି. ପାସ୍ କରିଥିଲେ ।

କଲିକତା ରହଣି ସମୟରେ ସେ ମଧ୍ୟ ତାଙ୍କର ଚରମପନ୍ଥୀ କାର୍ଯ୍ୟକଳାପ ଚାଲୁ ରଖିଥିଲେ । ମହାନ୍ ବଙ୍ଗୀୟ ବିପ୍ଳବୀ ଶ୍ରୀ ଅମରେନ୍ଦ୍ରନାଥ ଚାଟାର୍ଜୀ ପ୍ରଭୃତି ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କ ସଂସ୍ପର୍ଶରେ ସେ ଆସିଥିଲେ । ଜଣେ ଚରମପନ୍ଥୀ ଛାତ୍ରନେତା ଭାବରେ ସୁପରିଚିତ ଲାଭ କରିଥିବା ଶ୍ରୀ ବିକ୍ରମ ଦାସ ଛାତ୍ରାବସ୍ଥାରୁ ତାଙ୍କର ପିତାଙ୍କ ସହିତ ଭାରତର ପ୍ରମୁଖ

ସହର ବୁଲିବା ସହିତ ସ୍ୱାଧୀନତା ସଂଗ୍ରାମର ଅନେକ ବିଶିଷ୍ଟ ସଂଗ୍ରାମୀମାନଙ୍କ ସଂସ୍ପର୍ଶରେ ମଧ୍ୟ ଆସିଥିଲେ। ବମ୍ବେ (ବର୍ତ୍ତମାନର ମୁମ୍ବାଇ)ରେ ତାଙ୍କର ସାକ୍ଷାତ ହୋଇଥିଲା ମହାନ୍ ବିପ୍ଳବୀ ଦାମୋଦର ସାବର୍‌କରଙ୍କ ସହ। ମହାନ୍ ବିପ୍ଳବୀମାନଙ୍କ ସମ୍ପର୍କରେ ଆସି ସେମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଶ୍ରୀ ଦାସ ତାଙ୍କର ଛାତ୍ରାବସ୍ଥାରୁ ସଂଗ୍ରାମୀ ଜୀବନ ଚାଲୁରଖି ଅନେକବାର କାରାବରଣ କରିଥିଲେ। ପରେ ଓଡ଼ିଶା ଭେଷଜ ମହାବିଦ୍ୟାଳୟ (ବର୍ତ୍ତମାନର ଶ୍ରୀରାମଚନ୍ଦ୍ର ଭଞ୍ଜ ଭେଷଜ ମହାବିଦ୍ୟାଳୟ)ରୁ ଡାକ୍ତରୀ ପାସ୍ କଲା ପରେ ଆମେରିକାରୁ ପାଥୋଲୋଜି (ନିଦାନ) ବିଭାଗରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ। ପରବର୍ତ୍ତୀ ସମୟରେ ଡାକ୍ତର ବିକ୍ରମ ଦାସ ରାଜ୍ୟ ସରକାରଙ୍କ ଅଧୀନରେ ଡାକ୍ତର ଚାକିରି କରିଥିଲେ। ଓଡ଼ିଶାରେ ପାଥୋଲୋଜି(ନିଦାନ) ବିଭାଗ ପ୍ରତିଷ୍ଠା ଓ ମାଇକ୍ରୋବାଇଓଲୋଜି(ଅଣୁଜୀବ) ବିଭାଗର ପ୍ରତିଷ୍ଠା ଓ ବିକାଶ ପାଇଁ ଡାକ୍ତର ବିକ୍ରମ ଦାସଙ୍କ ଅବଦାନ ଅବିସ୍ମରଣୀୟ।

ଡାକ୍ତର ଶ୍ରୀଯୁକ୍ତ ବିକ୍ରମ ଦାସ ଏକାଧାରରେ ଜଣେ ମହାନ୍ ବିପ୍ଳବୀ, ସ୍ୱାଧୀନତା ସଂଗ୍ରାମୀ, ସୁଚିକିତ୍ସକ, କୃତବିଦ୍ୟ ଅଧ୍ୟାପକ ଓ ସାରସ୍ୱତ ସାଧକ। ଓଡ଼ିଶାର ବାଣୀଭଣ୍ଡାରକୁ ସେ ଦେଇଯାଇଛନ୍ତି ଅନେକ ସାରସ୍ୱତ କୃତି। ଉପନ୍ୟାସଠାରୁ କ୍ଷୁଦ୍ରଗଳ୍ପ, ଇତିହାସ ତଥ୍ୟଭିତ୍ତିକ ପ୍ରବନ୍ଧଠାରୁ ଜୀବନୀ, ଆତ୍ମଜୀବନୀଠାରୁ ଶିଶୁ-ସାହିତ୍ୟ ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ସର୍ଜନଶୀଳ ପ୍ରତିଭା ହୋଇଛି ପ୍ରତିପାଦିତ। ଇତିହାସ ପ୍ରତି ଶ୍ରଦ୍ଧା, ସମୟର ପରିବର୍ତ୍ତନ ପ୍ରତି ବିଶେଷ ଦୃଷ୍ଟି, ଅନ୍ୱେଷଣ ମାନସିକତାକୁ ନେଇ ତାଙ୍କ ସୃଷ୍ଟିଗୁଡ଼ିକ ପାଠକ ହୃଦୟକୁ ସ୍ପର୍ଶ କରେ। ଆମ ଇତିହାସକୁ ଆମ ନିକଟରେ ବେଶ୍ ଚମତ୍କାର ଢଙ୍ଗରେ ତୋଳିଧରିବା ମାଧ୍ୟମରେ ଏକ ସମୃଦ୍ଧ ଜାତିର ଐତିହ୍ୟକୁ ଉତ୍ତରପିଢ଼ି ନିକଟରେ ପହଞ୍ଚାଇଛନ୍ତି। ବରପୁତ୍ରମାନଙ୍କ ଜୀବନୀ ରଚନା କରି ଦାୟବଦ୍ଧ ଭୂମିକା ନିର୍ବାହ କରିଛନ୍ତି। ଏହି ମହନୀୟ ପ୍ରଚେଷ୍ଟା ତାଙ୍କୁ ସବୁଦିନ ସ୍ମରଣୀୟ କରିରଖିବ।

ଏହି ପ୍ରତିଭାଧାରୀଙ୍କ ସଂପର୍କରେ ପ୍ରସ୍ତୁତ ସଂକଳନ 'ସାରସ୍ୱତ ସାଧକ ଡାକ୍ତର ବିକ୍ରମ ଦାସ' ଆପଣମାନଙ୍କ ଶ୍ରଦ୍ଧା ଲାଭ କଲେ, ଆମ୍ଭର ଏ ଉଦ୍ୟମ ସାର୍ଥକ ହୋଇଛି ବୋଲି ମଣିବୁ। ଏହି ପୁସ୍ତକ ପ୍ରସ୍ତୁତି ପାଇଁ ସାରସ୍ୱତ ପୁରୁଷ ବିକ୍ରମ ଦାସଙ୍କ ସୁଯୋଗ୍ୟ ପୁତ୍ର ଡାକ୍ତର ସିଦ୍ଧାର୍ଥ ଦାସଙ୍କ ଉଦ୍ୟମକୁ ସ୍ୱୀକାର କରୁଛୁ। ଏହି ପୁସ୍ତକ ପ୍ରକାଶନ ପାଇଁ ସମସ୍ତ ସହଯୋଗ କରି ଉତ୍କଳ ସାହିତ୍ୟ ସମାଜକୁ ଏହାର ସତ୍ତ୍ୱାଧିକାର ପ୍ରଦାନ ପୂର୍ବକ ସେ ଏକ ଉତ୍ତମ ପରମ୍ପରା ସୃଷ୍ଟି କରିଛନ୍ତି। ସଂକଳନର ସମସ୍ତ ଲେଖକଲେଖିକାଙ୍କୁ କୃତଜ୍ଞତା ଅର୍ପଣ କରୁଛୁ।

**ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ**

**ଡାକ୍ତର ପ୍ରସନ୍ନ କୁମାର ରାଠୋର**

# ସୂଚୀ

# ମହାନ୍ ପରିବାରର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ

## ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ଡାକ୍ତର ବିକ୍ରମ ଦାସଙ୍କ ସହିତ ମୋର ବିଶେଷ ବ୍ୟକ୍ତିଗତ ସଂପର୍କ ନଥିଲା । ତାଙ୍କ ବଡ଼ ଭାଇ ଅଶୋକବାବୁ ମୋର ଜଣେ ହିତୈଷୀ ବନ୍ଧୁ ଥିଲେ ଓ ତାଙ୍କ ପିତା ସ୍ୱନାମଧନ୍ୟ ନୀଳକଣ୍ଠ ଦାସଙ୍କର ଆଶୀର୍ବାଦ ମୁଁ ଲାଭ କରିଥିଲି । ତାଙ୍କ ସହ ଭେଟିବାର ସୁଯୋଗ ମୋର ଘଟିନଥିଲା । ଡାକ୍ତର ବିକ୍ରମ ଦାସ ଅନେକାଂଶରେ ତାଙ୍କ ପୂଜ୍ୟ ପିତାଙ୍କର ସାହିତ୍ୟିକ କଳା ଉତ୍ତରାଧିକାରୀ ସୂତ୍ରେ ଲାଭ କରିଥିଲେ । କବିତା ଲେଖିବାରେ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ଆତ୍ମଜୀବନୀ ରଚନା କରିବାରେ ସେ ଥିଲେ ସିଦ୍ଧହସ୍ତ । ଛାତ୍ର ଅବସ୍ଥାରେ ସେ ଛାତ୍ର ସଂଗଠନର ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୩୬ ମସିହାରେ ନିଖିଳ ଭାରତ ଛାତ୍ର ସଂଘ ବା ଅଲ୍ ଇଣ୍ଡିଆ ଷ୍ଟୁଡେଣ୍ଟସ୍ ଫେଡେରେସନ୍‌ର ଓଡ଼ିଶା ଶାଖା ଗଠିତ ହେବାବେଳେ ସେ ଜଣେ ସ୍କୁଲଛାତ୍ର ଭାବରେ ଯୋଗ ଦେଇଥିଲେ ଏବଂ ଏହି ସଂଗଠନର ଲକ୍ଷ୍ୟ ଥିଲା ଇଂରେଜ ସରକାରଙ୍କର ବିରୋଧରେ ଲଢ଼େଇ କରିବା ।

୧୯୩୯ ମସିହା କଟକ ମେଡିକାଲର ଛାତ୍ର ଥିଲାବେଳେ ସେ ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ । ୧୯୩୯ ମସିହାରେ ସୁଭାଷ ବୋଷ ଓଡ଼ିଶା ଆସିଥିଲେ ଓଡ଼ିଶାରେ ଫରୱାର୍ଡ ବ୍ଲକ୍‌ର ଏକ ଶାଖା ସ୍ଥାପନ କରିବା ପାଇଁ । ମ୍ୟୁନିସିପାଲିଟି ପଡ଼ିଆରେ ଯେଉଁ ବିରାଟ ସଭାର ଆୟୋଜନ କରାଯାଇଥିଲା ତା' ମଧ୍ୟରେ ଥିଲେ ବିକ୍ରମ ଦାସ ।

୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଯୋଗଦାନ ପାଇଁ ପୁଲିସ୍ ତାକୁ ଖୋଜି ପାଇପାରିନଥିଲା । ସେ କଲିକତାରେ ଆତ୍ମଗୋପନ କରି ଚରମପନ୍ଥୀମାନଙ୍କ ସହିତ ସଂପର୍କ ସ୍ଥାପନ କରିଥିଲେ । ତାଙ୍କର ଐତିହାସିକ ଉପନ୍ୟାସ 'ମଣିମାଡିହ'

ପୁସ୍ତକଟି ସତ୍ୟବାଦୀର ଶେଷ ରାଜା ପଦ୍ମନାଭ ଦେବଙ୍କର ଏକ ଦରଦୀ କାହାଣୀ, ଯେଉଁଥିରେ ଅବଶ୍ୟ ରାଜବଂଶର ବିଭିନ୍ନ ଉତ୍ତରାଧିକାରୀମାନଙ୍କର ନାମ ପରିବର୍ତ୍ତନ କରାଯାଇଛି। ସେଥିରେ ଗଜପତି ବଂଶର ଆତ୍ମତ୍ୟାଗ ଓ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତିର ଜ୍ୱଳନ୍ତ ଉଲ୍ଲେଖ ଦେଖିବାକୁ ମିଳେ। ଏହାଛଡ଼ା ଆଉ କେତେକ ଉପନ୍ୟାସ 'ଅଲିଭା ଇତିହାସ'(ସ୍ୱାଧୀନତା ସଂଗ୍ରାମର କେତେକ ମର୍ମସ୍ପର୍ଶୀ କାହାଣୀ), 'ବୃନ୍ଦଖୋଲର ମାୟା', 'ନିର୍ବାସିତ ଗଜପତି', ତାଙ୍କର କବିତା ପୁସ୍ତକ 'ଚଉରା-ଅଣି' ଓ ତାଙ୍କର ଆତ୍ମଜୀବନୀ ଆଦି ଓଡ଼ିଆ ସାହିତ୍ୟକୁ ଗୋଟିଏ ଗୋଟିଏ ଅମୂଲ୍ୟ ଦାନ।

ବ୍ୟକ୍ତିଗତ ଭାବେ ସେ ଥିଲେ ବନ୍ଧୁବତ୍ସଳ, ବିନୟୀ, କର୍ମଠ ଓ ସର୍ବଜନପ୍ରିୟ। ସେ ଥିଲେ ଏକ ମହାନ୍ ପରିବାରର ଜଣେ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ।

ମହାମହିମ ରାଜ୍ୟପାଳ,
ଆସାମ

# ମୋ ନନା ଡାକ୍ତର ବିକ୍ରମ ଦାସଙ୍କ ସାହିତ୍ୟସାଧନା

## ପ୍ରଫେସର (ଡାକ୍ତର) ସିଦ୍ଧାର୍ଥ ଦାସ

୧୯୨୧ ମସିହା ଶ୍ରୀପଞ୍ଚମୀ ଦିନ ବୀରପୁରୁଷୋତ୍ତମପୁର ଗ୍ରାମରେ ଅଜାଙ୍କ ଘରେ ଜନ୍ମ ନେଇଥିଲେ ବିକ୍ରମ । ସେତେବେଳକୁ ସାରାଦେଶରେ ଅସହଯୋଗ ଆନ୍ଦୋଳନ ଚାଲିଥାଏ । ପିତା ପଣ୍ଡିତ ନୀଳକଣ୍ଠ କଲିକତା ବିଶ୍ୱବିଦ୍ୟାଳୟର ପ୍ରଫେସର ପଦବୀରୁ ଇସ୍ତଫା ଦେଇ ସ୍ୱାଧୀନତା ସଂଗ୍ରାମର ମହାସ୍ରୋତରେ ସାମିଲ୍ ହୋଇଗଲେ । ବଡ଼ ଭାଇନା ଅଶୋକ ବୟସରେ ୯ବର୍ଷ ବଡ଼ ଓ ଏ ଦୁହିଁଙ୍କ ମଝି ଦୁଇଭଉଣୀ ବାସନ୍ତୀ ଓ ଭାରତୀ । ବିକ୍ରମଙ୍କଠୁ ସାନ ତିନି ଭଉଣୀ ହେଲେ, ଶାରଦା, ଇନ୍ଦିରା ଓ ରମା । ବୋଉ ରାଧାମଣିଙ୍କ ସାଙ୍ଗରେ ବାଲ୍ୟକାଳ କଟେ ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ । ସତରେ ଦେଖିଲେ ନନାଙ୍କ ବାଲ୍ୟକାଳ ଏକ ଅଭିଭାବକଶୂନ୍ୟ ପରିବେଶରେ ଜାତୀୟ ସ୍ୱାଧୀନତାର ରଣାଙ୍ଗନର ରଣଦୁନ୍ଦୁଭି ମଧ୍ୟରେ ବିତିଥିଲା । ଆଭିଜାତ୍ୟ, ଅନୁଭୂତି, ସାଥି ଓ ପ୍ରେରଣା ସବୁ ଗାଁ'ର ପରିବେଶ ମଧ୍ୟରେ ବାନ୍ଧି ହୋଇରହିଗଲା । ଏହା ତାଙ୍କ ଆତ୍ମଜୀବନୀ 'ଜୀବନର ଛାପ'ରେ ସେ ସୁନ୍ଦରଭାବେ ଲେଖିଛନ୍ତି ।

ପାଠପଢ଼ା ଆରମ୍ଭ ହୁଏ ଗାଁ'ର ଅବଧାନଙ୍କ ପାଖରେ । ବହୁ ବାଧାବିଘ୍ନ ଦେଇ ଆଗେଇ ଯାଏ ଗାଁ'ରୁ କଟକ ସହରକୁ ଓ ପୁଣି ଫେରିଆସେ ସାକ୍ଷୀଗୋପାଳଙ୍କ ନିକଟକୁ । ଗାଁ'ର ପ୍ରାଥମିକ ବିଦ୍ୟାଳୟରୁ ସେ ଯାଆନ୍ତି କଟକର ରେଭେନ୍ସା କଲିଜିଏଟ୍ ବିଦ୍ୟାଳୟକୁ । ସେଠାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଛାତ୍ର ଆନ୍ଦୋଳନରେ ଆଗୁଆ ହୋଇ ଦେଶଦ୍ରୋହୀ ରୂପେ ଗଣାହୋଇ ପ୍ରଥମ ଦଫାର ବନ୍ଦୀ ହୁଅନ୍ତି ଅନୁଗୁଳ କାରାଗାରରେ । ଅଧ୍ୟୟନ, ଜାତୀୟତାବାଦ ଓ ସ୍ୱାଧୀନତା ସଂଗ୍ରାମର ବଳୟ ମଧ୍ୟରୁ ସେ ଆଦରିନିଅନ୍ତି ପର ଦୁଇଟିକୁ । ଅସୁସ୍ଥ ବନ୍ଦୀ ଭାବେ ଅନୁଗୁଳ କାରାଗାରରୁ ମୁକ୍ତି ପାଇ ସେ ନିଜ ଗାଁ'କୁ

ଫେରନ୍ତି । କିଛିଦିନ ପିତାଙ୍କ ସହିତ ଦିଲ୍ଲୀରେ ରହି ଚିକିତ୍ସିତ ହୁଅନ୍ତି । ସେଠାରୁ ଫେରି ସେ ସତ୍ୟବାଦୀର ବନବିଦ୍ୟାଳୟରେ ଅଧ୍ୟୟନ କରନ୍ତି । ଉଚ୍ଚଶିକ୍ଷା ଲାଭପାଇଁ ଆସି ନାମ ଲେଖାନ୍ତି ରେଭେନ୍‌ସା ମହାବିଦ୍ୟାଳୟରେ । ଅଧାବାଟ ଗଲାପରେ ସ୍ୱାଧୀନତା ସଂଗ୍ରାମରେ ମାତି ଦେଶଦ୍ରୋହୀର ମୁକୁଟ ପିନ୍ଧି ମହାବିଦ୍ୟାଳୟରୁ ବିତାଡ଼ିତ ହୁଅନ୍ତି । ମହାନଦୀ ତଟରୁ ଯାଇ ସ୍ପର୍ଶ କରନ୍ତି ପୁଣ୍ୟତୋୟା ଗଙ୍ଗାର ପ୍ରବହମାନଧାରା ହୁଗୁଳି ନଦୀ କୂଳରେ ମହାନଗରୀ କଲିକତାରେ । କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗବାସୀ କଲେଜରୁ ଆଇ.ଏସ୍‌ସି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି । ଜୀବନର ଏହି ସର୍ପିଳ ପଥ ଅତିକ୍ରମ କରୁକରୁ ହଜିଯାଏ ଜୀବନର ଶୈଶବ। ଧୀରେ ଧୀରେ ଜୀବନ ଗଡ଼ିଚାଲେ ପହଞ୍ଚିଯାଏ ପୌଢ଼ର ଦ୍ୱାରଦେଶରେ । ତଥାପି ସାହିତ୍ୟର ଅନୁରାଗ ଓ ସାହିତ୍ୟ ଚର୍ଚ୍ଚାର ଆନନ୍ଦରେ ସେ ସଦାସର୍ବଦା ଆସକ୍ତ ଥାଆନ୍ତି । ଜୀବନର ଝଡ଼ଝଞ୍ଜା ଓ ଉତ୍ଥାନପତନ ମଧ୍ୟରେ ହଜିଗଲା ଅନେକ ଶିକ୍ଷାବର୍ଷ ଓ ବାଲ୍ୟଚପଳତା। କିନ୍ତୁ କ୍ରମଶଃ ବିକ୍ରମଙ୍କର ସାହିତ୍ୟସାଧନା ପ୍ରସ୍ଫୁଟିତ ହେଉଥାଏ, ଛୋଟବଡ଼ କବିତା ଓ ପ୍ରବନ୍ଧ ମାଧ୍ୟମରେ ଏବଂ ତତ୍କାଳୀନ ସାହିତ୍ୟ ପତ୍ରିକା 'ନବଭାରତ'ର ସ୍ତମ୍ଭରେ ।

ସାହିତ୍ୟପ୍ରୀତି ତାଙ୍କର ଆତ୍ମଜ ଓ ସେ ତାକୁ ସବୁବେଳେ ନିଜ ଜୀବନ ସହ ବାନ୍ଧି ରଖିଥିଲେ । ପିଲାବେଳେ ସେ ପିତାଙ୍କ ସହିତ ବହୁବାର ଦିଲ୍ଲୀ ଓ ସିମ୍‌ଲା ଯିବାର ସୁଯୋଗ ପାଇଥିଲେ । ପିତା ପଣ୍ଡିତ ନୀଳକଣ୍ଠ ଦାସ ଦୁଇଦଶନ୍ଧିରୁ ଅଧିକ ସମୟ ପରାଧୀନ ଭାରତର ତତ୍କାଳୀନ ପ୍ରଶାସନରେ ନିର୍ବାଚିତ ସାଂସଦ ଥିଲେ । ସେ ସମୟରେ ବ୍ରିଟିଶ ଭାରତର ସେଣ୍ଟ୍ରାଲ ଲେଜିସଲେଟିଭ ଆସେମ୍ବ୍ଲି(ସଂସଦ) ଖରାଦିନେ ସିମ୍‌ଲାରେ ଓ ଅନ୍ୟ ଋତୁରେ ଦିଲ୍ଲୀରେ ବସୁଥିଲା । ଏକ ଭ୍ରମଣକାରୀ ଭାବେ ସେ ଆଗ୍ରା ଯାଇ ବିଶ୍ୱବିଖ୍ୟାତ ସ୍ଥାପତ୍ୟ 'ତାଜମହଲ' ଦେଖିଥିଲେ । ତାଜମହଲର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ବିକ୍ରମ ଲେଖିଥିଲେ-

"ସାହାଜାହାନ ସାହାଜାହାନ କି ବିଚିତ୍ର ବିନ୍ଧାଣୀ
ଜଗତବୁକୁରେ ଲେଖିଯାଇଛ ତାଜ୍ ତୁମର ରାଣୀ ।"

ଏହି ଦୁଇପଦ ଲେଖା ଭିତରେ ସ୍ପଷ୍ଟ ଫୁଟିଉଠେ ତାଙ୍କ ଭିତରେ ଥିବା ସାହିତ୍ୟ ଅନୁରାଗ ଓ ରୋମାଣ୍ଟିସିଜିମ୍ । ସେ ସେହି ବିଶାଳ ଶଙ୍ଖମର୍ମର ଶିଳାର ସ୍ଥାପତ୍ୟକୁ ଏକ ବାହୁବଳୀ ମୋଗଲ ସମ୍ରାଟର ଗର୍ବ, ଅହଂକାର ବା ଧୃଷ୍ଟତାର ପ୍ରତୀକ ରୂପେ ଦେଖିନାହାନ୍ତି, ଦେଖିଛନ୍ତି ଏକ ପତ୍ନୀହରା ଦରଦୀ ରାଜାକୁ ଯେ ତା'ର ପ୍ରେୟସୀର ମୃତ୍ୟୁରେ ପ୍ରିୟମାଣ ହୋଇ ପୃଥିବୀରେ ରଖିବାକୁ ଚାହିଁଛି ଦାମ୍ପତ୍ୟ ପ୍ରେମର ଅମର ନିଦର୍ଶନକୁ, ଯାହା ଯୁଗଯୁଗ ଧରି ସମାଜପାଇଁ ଏକ ଶୃଙ୍ଖଳିତ ଦାମ୍ପତ୍ୟ ପ୍ରେମର ନିଦର୍ଶନ ହୋଇ ରହିଥିବ । ଏହିପରି

ଛୋଟବଡ କବିତା ମାଧ୍ୟମରେ ବିକ୍ରମଙ୍କର ସାହିତ୍ୟପ୍ରତି ଅନୁରାଗ ପରିଲକ୍ଷିତ ହୁଏ, ତାଙ୍କର ସଂଘର୍ଷମୟ ଛାତ୍ରଜୀବନ ଭିତରେ । ସମୟ ଗଡ଼ିଚାଲେ। ଉଚ୍ଚଶିକ୍ଷା ନିଅନ୍ତି ଭେଷଜ ବିଦ୍ୟାରେ ଏବଂ ଏହାପର ଅଧିକ ଶିକ୍ଷା ପାଇଁ ଯାଆନ୍ତି ପୃଥିବୀର ସର୍ବୋଚ୍ଚ ବିଜ୍ଞାନଉତ୍କର୍ଷ ଦେଶ ଯୁକ୍ତରାଷ୍ଟ୍ର ଆମେରିକାକୁ । ସେଠାରୁ ନିଦାନ ବିଭାଗର ମାଷ୍ଟର୍ସ ଉପାଧି ଲାଭ କରି ଫେରିଆସନ୍ତି ନିଜ ରାଜ୍ୟ ଓ ଦେଶକୁ । ଏକ ମୁକ୍ତ ଆକାଶର ବିହଙ୍ଗ, ସ୍ୱାଧୀନତା ସଂଗ୍ରାମର ସୈନିକ, ସାହିତ୍ୟାନୁରାଗୀ ମାନବ, ବାନ୍ଧିହୋଇ ଯାଏ ଜୀବନଯାତ୍ରାର ବନ୍ଧନ ଭିତରେ । ଆମେରିକାରୁ ଫେରିଲାବେଳକୁ ସେ ଅଢେଇବର୍ଷର କୁନିଝିଅର ପିତା । ମନେପଡ଼େ ଉତ୍କଳମଣିଙ୍କର ସେହି ପଙ୍କ୍ତି.....

"ରହିଣ ଜଞ୍ଜାଳ ବିଷମ ଜଗତେ
ସଂସାରେ ସୋଦର ବାନ୍ଧବ ସଂଗତେ
ଇଚ୍ଛାମତେ କାହୁଁ ଚଳିବ ବା ଜନ
ସମାଜେ ନିଜର ନୁହେଁ ନିଜ ମନ ।"

ସେ ଓଡିଶା ସରକାରଙ୍କ ଅଧୀନରେ ୧୯୫୪ରୁ ୧୯୭୯ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ପରିବାର ପ୍ରତି ଦାୟିତ୍ୱ ଓ ପେଶା ପ୍ରତି ନିଷ୍ଠା, ନିଦାନ ବିଭାଗ ଉନ୍ନତି ପାଇଁ ଏକନିଷ୍ଠ ଉଦ୍ୟମ ଓ ସରକାରୀ ଚାକିରୀରେ ମର୍ଯ୍ୟାଦାଯୁକ୍ତ ଦାୟିତ୍ୱର ଚାପ ହେତୁ ସେ କିଛି କାଳ ସାହିତ୍ୟ ସାଧନାରୁ ଦୂରେଇ ରହିଥିଲେ । ତଥାପି ସମ୍ପୂର୍ଣ୍ଣଭାବେ ସେ ତାଙ୍କର ଆତ୍ମଜ ସାହିତ୍ୟସାଧନାରୁ ନିବୃତ୍ତ ହୋଇପାରିନଥିଲେ । ପିଲାଦିନେ ଓ ପରବର୍ତ୍ତୀକାଳରେ ମୁଁ ଦେଖିଛି, ସେ ଓଡିଆ ସାହିତ୍ୟର ବରେଣ୍ୟ ବ୍ୟକ୍ତିତ୍ୱଙ୍କ ସହିତ ବାରମ୍ବାର ସଂଶ୍ଳିଷ୍ଟ ହେବା । ସେମାନଙ୍କ ସହିତ ସେ ସାହିତ୍ୟ ର କାବ୍ୟିକ ଆନନ୍ଦ ଉପଭୋଗ କରନ୍ତି ଏକ ମୁଗ୍ଧ ସାହିତ୍ୟରସିକ ଭାବେ ଅନେକ ତାଙ୍କଠାରୁ ବୟସ୍କ ଓ ସମ୍ମାନରେ ବଡ଼ । କେତେକ ତାଙ୍କର ସମସାମୟିକ ଓ କେହି କେହି ତାଙ୍କଠାରୁ ବୟସରେ ସାନ । ସେହି ବ୍ୟକ୍ତିତ୍ୱମାନେ ହେଲେ ପଦ୍ମଭୂଷଣ କାଳିନ୍ଦୀଚରଣ ପାଣିଗ୍ରାହୀ, ପଦ୍ମଭୂଷଣ ରାଧାନାଥ ରଥ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ଶ୍ରୀ ରାଧାମୋହନ ଗଡ଼ନାୟକ, ଶ୍ରୀ ମନମୋହନ ମିଶ୍ର, 'ନିଆଁଖୁଣ୍ଟା'ପ୍ରସିଦ୍ଧ ଗୋଦାବରୀଶ ମହାପାତ୍ର, ଡକ୍ଟର କୁଞ୍ଜବିହାରୀ ଦାଶ, ଶ୍ରୀ ଫତୁରାନନ୍ଦ, ଶ୍ରୀ ବିଚିତ୍ରାନନ୍ଦ କର ପ୍ରଭୃତି । ତାଙ୍କ ଜୀବନର ଏହି ଅଧ୍ୟାୟ ତାଙ୍କର ସହକର୍ମୀ ଓ ବୃତ୍ତିଗତ ବନ୍ଧୁମାନଙ୍କୁ ଅଜଣା ଥିଲା । ନିଜର ସାହିତ୍ୟ ସାଧନାକୁ ସେ ଦୈନନ୍ଦିନ ଜାବନ ସହିତ ମିଶାଇ ନଥିଲେ । ଚାକିରି ଜୀବନରେ ମଧ୍ୟ ସେ ଛଦ୍ମନାମରେ 'ନିଆଁଖୁଣ୍ଟା'ରେ ଅନେକ ବ୍ୟଙ୍ଗାତ୍ମକ କବିତା ପ୍ରକାଶ କରିଥିଲେ ।

ସେ ଦୃଷ୍ଟିରୁ ସେ ଜଣେ ନିର୍ଭୀକ ଜାତୀୟତାବାଦୀ, ସାହିତ୍ୟ ଅନୁରାଗୀ ମଣିଷ ଥିଲେ । ଚାକିରିର ପ୍ରଥମାର୍ଦ୍ଧରେ ସେ ପିଲାମାନଙ୍କ ପାଇଁ ସ୍ୱାସ୍ଥ୍ୟଗୀତର ଏକ ପୁସ୍ତକ ରଚନା କରିଥିଲେ । ଏହାକୁ ଷାଠିଏ ଦଶନ୍ଧିର ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋରର ସ୍ୱର୍ଗତ ସତ୍ୟାନନ୍ଦ ମିଶ୍ର ପ୍ରକାଶ କରିଥିଲେ । ସେଥିରୁ ଏକ ପଙ୍‌କ୍ତି ମୋର ମନେପଡୁଛି

"ଢୋଲୁ ମାର୍କଣ୍ଡିଆ ବଡ଼ ଉଦଣ୍ଡିଆ
ମା ଦେଲେ ଭାତ ବାଢ଼ି
ଏଇଟା ଅଳପ ସେଇଟା ତ ବେଶି
କହି ତଳେ ଯାଏ ଗଡ଼ି ।"

ସାବଲୀଳ ଭାଷାରେ ସେ ପିଲାମାନଙ୍କ ପାଇଁ ସ୍ୱାସ୍ଥ୍ୟରକ୍ଷା ଓ ଉତ୍ତମ ଶରୀର ଗଠନ ପାଇଁ ଉଦ୍ଦିଷ୍ଟ ଅନେକ କବିତାକୁ ସେଥିରେ ସଙ୍କଳିତ କରିଥିଲେ । ପରେ ସେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟ, ବ୍ରହ୍ମପୁରର ନିଦାନ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଥିଲାବେଳେ 'ଦାସବ୍ରଦର୍ସ' ଦ୍ୱାରା ପ୍ରକାଶ ପାଇଥିଲା ତାଙ୍କର ପ୍ରଥମ ଗଳ୍ପ ସଙ୍କଳନ 'ସାତ ତିରିକି ସତର' । ଏହାପରେ ସ୍ରୋତସ୍ୱିନୀ ନଦୀ ପରି ପ୍ରକାଶିତ ହୋଇଚାଲିଲା ତାଙ୍କ ରଚନାବଳୀ । ତାଙ୍କ ରଚିତ ପ୍ରବନ୍ଧ, ଭ୍ରମଣ କାହାଣୀ, ଉପନ୍ୟାସ, ଗଦ୍ୟରଚନା, ଜୀବନକାହାଣୀ, ଶିଶୁ ଓ ପ୍ରୌଢ଼ସାହିତ୍ୟ ଇତ୍ୟାଦି ।

ଲେଖାର ଢଙ୍ଗ ତାଙ୍କର ନିଜସ୍ୱ ଥିଲା । ସାଧାରଣ ମଣିଷର କଥୋପକଥନ ଶୈଳୀରେ ସେ ଲେଖୁଥିଲେ, ସାହିତ୍ୟ ମନର କଳ୍ପନାକୁ ବାସ୍ତବରୂପ ଦେଉଥିଲେ ତାଙ୍କର ସୃଷ୍ଟ ଚରିତ୍ରମାନଙ୍କ ମାଧ୍ୟମରେ । ଅଙ୍ଗେ ନିଭାଇଥିବା କଥାଠାରୁ ଆରମ୍ଭ କରି, କିମ୍ବଦନ୍ତୀ, ଇତିହାସ, ଲୋକଗୀତି ପ୍ରଭୃତିକୁ ଆଧାର କରି ସେ ସୃଷ୍ଟି କରୁଥିଲେ ସାହିତ୍ୟ । ବୟସର ଅଗ୍ରଗତି ସହିତ ତାଳଦେଇ ତାଙ୍କର ସାହିତ୍ୟ ସାଧନା ଅଧିକରୁ ଅଧିକ ଶାଣିତ ହେଉଥିଲା । ଅଶୀବର୍ଷ ବୟସରେ ମଧ୍ୟ ରାତି ଗୋଟାଏ ପର୍ଯ୍ୟନ୍ତ ସେ ପଢୁଥିଲେ ଓ ଲେଖୁଥିଲେ । ଚିନ୍ତାଧାରା, ଶବ୍ଦସୃଜନ ଓ ଶବ୍ଦ ସଂଯୋଜନା ତାଙ୍କର ନିଜସ୍ୱ ଥିଲା । ସେ କାହାରିକୁ ଅନୁକରଣ କରୁନଥିଲେ ।

ସେ ଏକମୁହାଁ ନଥିଲେ । ସମସାମୟିକ ଜୀବନର ଗତିଶୀଳ ପ୍ରବାହର ଚିରନ୍ତନ ସ୍ରୋତର ଭାବଧାରାରେ ଋଦ୍ଧିମନ୍ତ ହୋଇଥିଲା ତାଙ୍କର ସାହିତ୍ୟ ସୃଷ୍ଟି । ଗଳ୍ପ, କବିତା, ପ୍ରବନ୍ଧ, ଉପନ୍ୟାସ ସେ ଲେଖିଚାଲିଲେ । ନିଦାନ ଓ ଅଣୁଜୀବ ବିଜ୍ଞାନର ପ୍ରଫେସର ହେବାପରେ ମଧ୍ୟ ସାହିତ୍ୟ ଅନୁରାଗୀ ପ୍ରଫେସର ବିକ୍ରମ ଦାସ ଥିଲେ ଏକ ଦରଦୀ ମଣିଷ । ମଣିଷକୁ ଭଲ ପାଉଥିବା ସାହିତ୍ୟିକ ଓ ସର୍ବୋପରି ମୋର ଏକାନ୍ତ ପ୍ରିୟ ଓ

ଆଦର୍ଶ ବ୍ୟକ୍ତିତ୍ୱ ଥିଲେ 'ମୋ ନନା' । ନିଜ ଜୀବନକୁ ଅତି ସୁନ୍ଦର ଭାବେ ସେ ପରପିଢ଼ି ପାଇଁ ଲେଖିଯାଇଛନ୍ତି, ତାଙ୍କର ଆତ୍ମଜୀବନୀ ପୁସ୍ତକ 'ଜୀବନର ଛାପ'ରେ। ଏହା ମୁଦ୍ରିତ ହେଲା ୨୦୦୫ରେ । ଏହା ପୂର୍ବରୁ ସେ ପ୍ରାୟ ୫୦ ଖଣ୍ଡ ବହି ରଚନା କରି ଓଡିଆ ସାହିତ୍ୟର ଅମୂଲ୍ୟ ଭଣ୍ଡାରର ରଚନାବଳୀର ସଂଖ୍ୟାରେ ଯୋଗକରି ଯାଇଛନ୍ତି। ଏବେ ମଧ୍ୟ ଆଉ କେତେଗୁଡିଏ ପାଣ୍ଡୁଲିପି ଛପା ନ ହୋଇ ପଡ଼ିରହିଛି । ହୁଏତ ଭବିଷ୍ୟତରେ ଏହା ପାଠକମାନଙ୍କ ପାଖରେ ପହଞ୍ଚିପାରେ ।

ବହୁ କମ୍ ବ୍ୟକ୍ତି ଯଥା ବ୍ୟାସକବି ଫକୀରମୋହନ ପରିଣତ ବୟସରେ ସାହିତ୍ୟ ସାଧନା କରି ଯଶସ୍ୱୀ ହୋଇଥିଲେ । କତିପୟ ବ୍ୟକ୍ତି ଅନ୍ୟ ବୃତ୍ତିର ହୋଇ ମଧ୍ୟ ସାହିତ୍ୟ ପ୍ରତି ସେମାନଙ୍କର କାଳଜୟୀ ଅବଦାନ ରହିଅଛି । ମୋ ନନା ଜଣେ ଚିକିତ୍ସକ ହୋଇ ମଧ୍ୟ ନିଜ ପେଶା ପ୍ରତି ଅବହେଳା ନ କରି ସାହିତ୍ୟ ସାଧନା କରିଥିଲେ । ପେଶା ଯାହା ହେଉ ନା କାହିଁକି, ବୟସ ଯେତେହେଉ ନା କାହିଁକି, ସାହିତ୍ୟ ସାଧନା ପାଇଁ ଜଣେ ଅନୁରାଗୀ ପାଇଁ କୌଣସି ବାଧାବନ୍ଧନ ରହିନଥାଏ । ଏହା ହିଁ ମୋ ନନା ତାଙ୍କର ସାହିତ୍ୟ ସାଧନା ଜରିଆରେ ଉଦାହରଣ ଦେଇପାରିଛନ୍ତି । କୌଣସି ପୁରସ୍କାର ପାଇଁ ସେ ଲବି କରିନାହାନ୍ତି ବା ଗଣମାଧମରେ ନିଜର ପ୍ରଚାର ନ କରି ସେ ନିରୋଳା ସାହିତ୍ୟ ସାଧନା କରିଛନ୍ତି ।

ମୁଁ ଜଣେ ସାହିତ୍ୟିକ ନୁହେଁ, ମାତ୍ର ମୁଁ ନନାଙ୍କୁ ଯେପରି ଦେଖିଛି, ଯେମିତି ଜାଣିଛି ସେତିକି ମୋ ଭାଷାରେ ଓଡିଶାର ବୃହତ୍ତର ପାଠକ ସମାଜ ଆଗରେ ତାଙ୍କର ସାହିତ୍ୟ ସାଧନା ବିଷୟରେ ଲେଖିବାକୁ ଚେଷ୍ଟା କରିଅଛି। ଓଡିଆ ସାହିତ୍ୟ ପ୍ରତି ମୋ ନନାଙ୍କର ଉତ୍ସର୍ଗୀକୃତ ଅମୂଲ୍ୟ ଅବଦାନ ଓ ତାଙ୍କର ଲେଖନୀନିଃସୃତ ସାହିତ୍ୟ ପ୍ରତି ସମ୍ମାନ ଜଣାଇ ମୋ ଲେଖାକୁ ଏଇଠି ସମାପ୍ତ କରୁଅଛି ।

**ବିଭାଗୀୟ ମୁଖ୍ୟ, ସ୍ନାତକୋତ୍ତର ଭେଷଜ ବିଭାଗ**
**ଶ୍ରୀରାମଚନ୍ଦ୍ର ଭଞ୍ଜ ଭେଷଜ ମହାବିଦ୍ୟାଳୟ, କଟକ**
**'ଭେଷଜ ଉପଦେଷ୍ଟା'**
**ମାନ୍ୟବର ଓଡ଼ିଶା ମାନବିକ ଅଧିକାର ଆୟୋଗ, ଭୁବନେଶ୍ୱର**

# ବିକ୍ରମ ଭାଇନା
# ବିବେକ ବିବର୍ତ୍ତନର ପଦଚିହ୍ନ

## ଡାକ୍ତର ନିମାଇଁ ଚରଣ ପଣ୍ଡା

ବିକ୍ରମ ଭାଇନାଙ୍କର ବାଲ୍ୟକାଳ, କିଶୋର ଓ ପ୍ରଥମ ଯୌବନ, ପ୍ରତ୍ୟକ୍ଷ ରାଜନୈତିକ ସଂଗ୍ରାମରେ ଗଢ଼ିଉଠିଥିଲା । ପିଲାଦିନେ ମହାତ୍ମାଗାନ୍ଧିଙ୍କ ସଂସ୍ପର୍ଶରେ ଆସି ଅନୁପ୍ରାଣିତ ହୋଇଥିଲେ ଏବଂ ପରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଅନୁଗାମୀ ହୋଇଥିଲେ ।

ସେ ଭାରତଛାଡ଼ ଆନ୍ଦୋଳନରେ ୧୯୪୨ରୁ ୧୯୪୪ ପର୍ଯ୍ୟନ୍ତ ଭାଗ ନେଇଥିଲେ ଓ ପୁଲିସ୍‌ଠାରୁ ଦୂରେଇ ରହିବା ନିମନ୍ତେ ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରିଥିଲେ । ଏହି ଅବସ୍ଥାରେ ସେ ତାଙ୍କ ଗାଁ'କୁ ଆସିଥିଲେ । ସେଠାରେ କେତେଜଣ ବନ୍ଧୁବାନ୍ଧବଙ୍କ ମନ୍ତବ୍ୟ ତାଙ୍କୁ ବହୁତ ବାଧିଥିଲା ଓ ସେ ପୁନରାୟ ପାଠପଢ଼ା ଆରମ୍ଭ କରିବାକୁ ସଂକଳ୍ପବଦ୍ଧ ହେଲେ । ସେ ସତ୍ୟବାଦୀ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ସାକ୍ଷୀଗୋପାଳରୁ ୧୯୪୦-୪୧ରେ ମାଟ୍ରିକ୍ୟୁଲେସନ ପାସ୍ କରିଥିଲେ ।

କିନ୍ତୁ ତାଙ୍କର ଜାତୀୟ ଆନ୍ଦୋଳନରେ ଭାଗନେଇଥିବା ହେତୁ ରେଭେନ୍ସା କଲେଜରେ ପାଠ ପଢ଼ିବା ସମ୍ଭବପର ହେବନାହିଁ ବୋଲି ଚିନ୍ତା କରି ସେ କଲିକତା ନଗରୀକୁ ଯାତ୍ରା କଲେ । କିନ୍ତୁ ବିଭିନ୍ନ ଅସୁବିଧା ଯୋଗୁଁ ସେ କୌଣସି କଲେଜରେ ନାମ ଲେଖାଇ ପାରିଲେନାହିଁ । ସେ ଗାଁ'କୁ ମଧ୍ୟ ଫେରିବାକୁ ପ୍ରୟାସ କଲେ ନାହିଁ । ଏହିଭଳି ପରିସ୍ଥିତିରେ ଏକ ଅଲୌକିକ ଘଟଣା ତାଙ୍କ ଜୀବନପଥକୁ ପରିବର୍ତ୍ତନ କରିଦେଲା । ସେ ଆସାମ ଯିବା ଉଦ୍ଦେଶ୍ୟରେ ରେଳଷ୍ଟେସନକୁ ଯିବା ବାଟରେ ବଙ୍ଗବାସୀ କଲେଜ କୋଠାକୁ ଦେଖିଲେ । ଏହି କଲେଜ ବିଷୟରେ ସେ ଜାଣିଥିଲେ । ସେ ଫାଟକ ଭିତରକୁ ଯାଇ ଉପର ମହଲାକୁ ଗଲେ, ସେଠାରେ ଜଣେ ଭଦ୍ରଲୋକଙ୍କୁ ଭେଟିଲେ । ଭଦ୍ରଲୋକ ଜଣକ ସେଠାରେ ପିଅନ ହିସାବରେ କାମ କରୁଥିଲେ । ସେ ବିକ୍ରମବାବୁଙ୍କୁ

ଓଡ଼ିଆ ବୋଲି ଜାଣି ଅତ୍ୟନ୍ତ ଆନନ୍ଦିତ ହୋଇ, ତାଙ୍କଠାରୁ ସବୁ ବୁଝିଲେ ଓ କଲେଜ ପ୍ରିନ୍ସିପାଲଙ୍କ ସହିତ ସାକ୍ଷାତ କରାଇଦେଲେ। ପ୍ରିନ୍ସିପାଲ ସବୁ ବୁଝିଲେ ଓ ତାଙ୍କୁ ଆଇ.ଏସ୍‌ସି କ୍ଲାସ୍‌ରେ ଆଡ୍‌ମିଶନ୍ କରାଇଦେଲେ।

ସେ ସବୁବେଳେ ଭବିଷ୍ୟତରେ ଏହି ଓଡ଼ିଆ ଭଦ୍ରଲୋକଙ୍କୁ ତାରିଫ୍ କରନ୍ତି।

ତା'ପରେ ସେ ଜୀବନରେ ପଛକୁ ଚାହିଁନାହାନ୍ତି। ଅନ୍ୟପକ୍ଷରେ ସେ ସଫଳତାର ସୋପାନ ଆରୋହଣ କରି ଆସ୍ତେ ଆସ୍ତେ ଅତି ଉଚ୍ଚ ପଦପଦବୀ ଲାଭ କରିଥିଲେ। ସର୍ବୋପରି ସାହିତ୍ୟର ସେବକ ହୋଇ ବହୁ ପୁସ୍ତକ ରଚନା କରିଛନ୍ତି।

ସେ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗବାସୀ କଲେଜରୁ ଆଇ.ଏସ୍‌ସି ଫାଷ୍ଟ ଡିଭିଜନରେ ପାସ୍ କରି ଓଡିଶା ମେଡିକାଲ୍ କଲେଜ, କଟକଠାରେ ଯୋଗଦାନ କରିଥିଲେ। ସେ ୧୯୪୫ଠାରୁ ୧୯୫୦ ପର୍ଯ୍ୟନ୍ତ ଏମ୍.ବି.ବି.ଏସ୍ ପଢ଼ି ପାସ କରିଥିଲେ। ନିଜ କୃତିତ୍ୱ ଯୋଗୁ ହାଉସ୍ ଫିଜିସିଆନ୍ ପଦ ପାଇଁ ଯୋଗ୍ୟ ବିବେଚିତ ହେଉଥିଲେ। ସେତେବେଳେ ଏମ୍.ବି.ବି.ଏସ୍ ପରେ ଇଣ୍ଟର୍ନସିପ୍(ହାଉସସର୍ଜନ) ନଥିଲା। କେତେକ ମେଧାବୀ ଛାତ୍ର ନିଜର କୃତିତ୍ୱ ଯୋଗୁଁ ସୀମିତ ହାଉସ୍ ଫିଜିସିଆନ୍ ପଦରେ ଯୋଗ ଦେଉଥିଲେ। ୧୯୫୨ ମସିହାରେ ସେ ଆମେରିକା(ୟୁ.ଏସ୍.ଏ) ଯାତ୍ରା କରିଥିଲେ। ସେଠାରେ Pathology, Baeteriology ଓ Clinical Pathologyରେ Birmingham Medical School at Bermigham under University of Toscolusa (ବର୍ତ୍ତମାନ ଏହା University of Albamaରେ ରହିଅଛି)ରୁ ୧୯୫୪ ମସିହାରେ ଏମ୍.ଏସ୍ ଡିଗ୍ରୀ ଲାଭ କରିଥିଲେ ଓ ଭାରତ ଫେରି ଆସିଥିଲେ।

ପ୍ରଥମେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, କଟକଠାରେ ପାଥୋଲଜି ଡିପାର୍ଟମେଣ୍ଟରେ ଯୋଗଦାନ କରିଥିଲେ। କିଛି ଦିନ କାର୍ଯ୍ୟ କଲାପରେ ୧୯୬୮ଠାରୁ ୧୯୭୫ ପର୍ଯ୍ୟନ୍ତ ମହରାଜ କୃଷ୍ଣଚନ୍ଦ୍ର ଗଜପତି ମେଡିକାଲ କଲେଜଠାରେ ପ୍ରଫେସର୍ ଓ ବିଭାଗୀୟ ମୁଖ୍ୟ ହିସାବରେ ଯୋଗଦାନ କରି ସେ ବିଭାଗକୁ ପ୍ରତିଷ୍ଠିତ କରିଥିଲେ।

ସେ ୧୯୭୫ ମସିହାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ, କଟକଠାରେ ପ୍ରଫେସର୍ ଓ ବିଭାଗୀୟ ମୁଖ୍ୟ ହୋଇ ଯୋଗଦାନ କରିଥିଲେ। ୧୯୭୬ ମସିହାରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ, କଟକରେ ମାଇକ୍ରୋବାଇଓଲୋଜି ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ହୋଇଥିଲେ। ସେହି ପଦରେ ରହି ସେ ୧୯୭୯ ମସିହାରେ କାର୍ଯ୍ୟରୁ ଅବସର ଗ୍ରହଣ କରିଥିଲେ।

ଜଣେ ପ୍ରବୀଣ ଦେଶସେବକ, ପରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇ ଡାକ୍ତର, ବୈଜ୍ଞାନିକ ବରିଷ୍ଠ ଶିକ୍ଷକ ହେବା କମ୍ ଗୌରବର କଥା ନୁହେଁ। ବିକ୍ରମ ଭାଇନା ସେ ସବୁର ଅଧିକାରୀ।

ତାଙ୍କର ଚାକିରିରୁ ଅବସର ନେବା ପରେ ଆରମ୍ଭ ହୁଏ ଜଣେ ଲେଖକର ଜୀବନ, ସଂପର୍କ ସାହିତ୍ୟକ ହିସାବରେ। ମୁଁ ୧୯୫୭ ମସିହାରେ ଏମ୍‌ବିବିଏସ୍ ପାସ୍ କରି ହାଉସ୍‌ମ୍ୟାନ୍‌ସିପ୍ ଶେଷ କରି ଏମ୍‌ବିବିଏସ୍ ଡିଗ୍ରୀ ଲାଭ କରିଥିଲି ଓ ସେହି ବର୍ଷ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର Physiology Department ରେ ଶିକ୍ଷକ ହୋଇ ଯୋଗଦାନ କରିଥିଲି। ସେତେବେଳେ ବିକ୍ରମ ଭାଇନା ଆମେରିକାରୁ ଫେରି ପାଥୋଲୋଜି ବିଭାଗରେ ଯୋଗଦାନ କରିଥିଲେ।

ଭେଡ଼ା ସ୍ୱାଧୀନତା ସଂଗ୍ରାମୀ ଚୌଧୁରୀ ଧୀରେନ୍ଦ୍ର ନାଥ ମିଶ୍ରଙ୍କର ଜ୍ୟେଷ୍ଠାକନ୍ୟାଙ୍କ ସହ ମୋର ବିଭାଘର ହୋଇଥିଲା। ମୋ ପତ୍ନୀଙ୍କର ଦଦେଇ ଝିଅ ଭଉଣୀ ଚାରୁନାନୀଙ୍କ ସହିତ ଅଶୋକ ଭାଇନାଙ୍କର ବିଭାଘର ହୋଇଥିଲା। ଅଶୋକ ଭାଇନା ବିକ୍ରମ ଭାଇନାଙ୍କ ବଡ଼ଭାଇ। ତେଣୁ ଶ୍ରୀରାମଚନ୍ଦ୍ର ମେଡ଼ିକାଲ କଲେଜରେ ଥିବା ସମୟରେ ବିକ୍ରମ ଭାଇନାଙ୍କ ସହିତ ଘନିଷ୍ଠତା ଗଢ଼ିଉଠିଥିଲା। ଆମର ପରସ୍ପର ଘରକୁ ଯିବାଆସିବା ସୁଯୋଗ ସୃଷ୍ଟି ହୋଇଥିଲା।

୧୯୭୯ ମସିହାରେ ବିକ୍ରମ ଭାଇନା ଚାକିରିରୁ ଅବସର ପରେ ପ୍ରାୟ କଟକରେ ରହୁଥିଲେ ଓ ସାହିତ୍ୟଲେଖାରେ ଅନେକ ସମୟ ଅତିବାହିତ କରୁଥିଲେ । ମୁଁ ଯେତେବେଳେ ବିକ୍ରମ ଭାଇନାଙ୍କ ଘରକୁ ଯାଉଥିଲି ସାହିତ୍ୟ ବିଷୟ ଆଲୋଚନା ହୁଏ। ସେ ଯେଉଁ ନୂଆବହି ଲେଖିଥାଆନ୍ତି ତାହା ଉପରେ ଆଲୋଚନା ହେଉଥିଲା। ଏହି ବହିମାନଙ୍କ ମଧ୍ୟରେ 'ନିର୍ବାସିତ ଗଜପତି' ପୁସ୍ତକ ବିଷୟ ମୋର ମନେ ଅଛି। ଏହା ୧୯୮୮ ମସିହାରେ ପ୍ରକାଶିତ ହୋଇଥିଲା। ମୁଁ ସେତେବେଳକୁ ଡିଏମ୍‌ଇଟି ଥାଏ । ଭୁବନେଶ୍ୱରଠାରେ ରହୁଥିଲି। ଥରେ କଟକ ଆସିଥିଲି ଓ ତାଙ୍କ ଘରକୁ ଯାଇଥିଲି। ସେ ଏ ବହିଟି ମୋତେ ଦେଖାଇ ତା ଉପରେ ଆଲୋଚନା କଲେ। ମୁଁ ବିଷୟବସ୍ତୁକୁ ଏକାଗ୍ରତା ସହ ଶୁଣୁଥିଲି। ପୁସ୍ତକଟି ମୁଖ୍ୟତଃ ଐତିହାସିକ ଭିତ୍ତିରେ ଲେଖା ହୋଇଥିଲେ ମଧ୍ୟ ତାଙ୍କର ନିଜସ୍ୱ ଔପନ୍ୟାସର ରୂପନେଇଛି। ଗଜପତି ଦିବ୍ୟସିଂହ ଦେବ ୨୩.୨.୧୮୭୮ରେ ଜଣେ ବୈଷ୍ଣବଙ୍କୁ ମାରିଦେଇଥିବା ଅଭିଯୋଗରେ ଗିରଫ ହୋଇ ହାଜତ୍ ଯାଆନ୍ତି। ନ୍ୟାୟାଳୟରେ ଦଣ୍ଡିତ ହୋଇ କଳାପାଣି(ଆଣ୍ଡାମାନ ନିକୋବର)ଠାରେ ରୁହନ୍ତି । ଯକ୍ଷ୍ମାରୋଗରେ ୧୮୮୭ ଅଗଷ୍ଟ ୨୮ ତାରିଖରେ ତାଙ୍କର ମୃତ୍ୟୁ ହୋଇଛି ବୋଲି ସମ୍ବାଦ ପ୍ରଚାରିତ ହୁଏ। କିନ୍ତୁ ବିକ୍ରମବାବୁ ଲୋକକଥା ବିଶ୍ୱାସ ମତେ ତାଙ୍କୁ ଓଡ଼ିଶାକୁ ଆଣିଛନ୍ତି, ସେ ରଥଯାତ୍ରା ଦେଖିଛନ୍ତି। ରାଜମାତା ସୂର୍ଯ୍ୟମଣି ପାଟ୍ଟମହାଦେଈଙ୍କ ସହିତ ସାକ୍ଷାତ୍ କରି ସନ୍ନ୍ୟାସୀବେଶୀ ଦିବ୍ୟସିଂହ ଅନ୍ତର୍ଦ୍ଧାନ ହେବା ସହିତ ଉପନ୍ୟାସ ଶେଷ ପର୍ଯ୍ୟାୟରେ ଉପନୀତ ହୋଇଛି...।

**ବକ୍ସିବଜାର ରୋଡ, କଟକ-୩**

# ଡାକ୍ତର ବିକ୍ରମ ଦାସଙ୍କ ସାରସ୍ୱତ ସାଧନା

## ଡକ୍ଟର କୁମୁଦିନୀ ମିଶ୍ର

ଡାକ୍ତର ବିକ୍ରମ ଦାସ ଓଡ଼ିଶାର ଜଣେ ସ୍ୱନାମଧନ୍ୟ ଡାକ୍ତର, ପାଥୋଲଜି ପ୍ରଫେସର। ଯୁକ୍ତରାଷ୍ଟ୍ର ଆମେରିକାରୁ ସେ ପାଥୋଲଜି ବିଜ୍ଞାନରେ ସ୍ନାତକୋତ୍ତର ଉପାଧି ଲାଭ କରିବା ସହ ନିଦାନଶାସ୍ତ୍ର ଶିକ୍ଷା କ୍ଷେତ୍ରରେ ତାଙ୍କ ଅବଦାନ ଲାଗି Indian College of Pathologist ତରଫରୁ Founder Fellow ( F.I.C.P.) ଉପାଧିରେ ଭୂଷିତ ହୋଇଥିଲେ।

ବିକ୍ରମ ଦାସଙ୍କ ଜୀବନୀ ଅନୁଧାନ କଲେ ଜଣାଯାଏ, ସବୁଦିଗରୁ ପରିପୂର୍ଣ୍ଣ ଥିଲା ତାଙ୍କ ଜୀବନ। ବାଗ୍‌ଦେବୀଙ୍କ ବରପୁତ୍ରରୂପେ ସେ ଖ୍ରୀ : ୧୯୨୧ ଫେବୃଆରୀ ୧୩ ତାରିଖ ସରସ୍ୱତୀ ପୂଜା ତିଥିରେ ହିଁ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପରିବାର ଥିଲା ଓଡ଼ିଶାର ଏକ ଅଗ୍ରଗଣ୍ୟ ସଂଭ୍ରାନ୍ତ ପରିବାର। ପିତା ତାଙ୍କର ଓଡ଼ିଶା ପ୍ରଦେଶର ଅନ୍ୟତମ ନିର୍ମାତା, ସ୍ୱାଧୀନତା ସଂଗ୍ରାମର ପଥପ୍ରଦର୍ଶକ, ସତ୍ୟବାଦୀ ନାଳନ୍ଦାର ଜ୍ଞାନଗୁରୁ ମହାମନୀଷୀ ପଦ୍ମଭୂଷଣ ପଣ୍ଡିତ ନୀଳକଣ୍ଠ ଦାସ, ମାତା ତାଙ୍କର ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ନାରୀ ଶିକ୍ଷାର ପ୍ରବର୍ତ୍ତିକା ରାଧାମଣି ଦେବୀ। ତାଙ୍କ ବଡ଼ଭାଇ ସ୍ୱାଧୀନତା ସଂଗ୍ରାମର ବିଦ୍ରୋହୀ ଯୁବନେତା, ଓଡ଼ିଶାର ଖ୍ୟାତନାମା ଆଡଭୋକେଟ୍ ଜେନେରାଲ ଅଶୋକ ଦାସ।

ଆଦର୍ଶ ପରିବାରର ଆଦର୍ଶ ସନ୍ତାନ ଭାବେ ବିକ୍ରମ ଦାସ ମଧ ବହୁ କୃତିତ୍ୱ ଅର୍ଜନ କରିଥିଲେ। ଜଣେ ବିପ୍ଳବୀ ଛାତ୍ରନେତା ଭାବରେ, ଜଣେ କୃତବିଦ୍ୟ ଡାକ୍ତର ଭାବରେ, ଜଣେ ସଫଳ ସାହିତ୍ୟ ସ୍ରଷ୍ଟା ଭାବରେ ସର୍ବୋପରି ଜଣେ ଭଲ ମଣିଷ ଭାବରେ ସେ ବହୁ ପ୍ରତିଷ୍ଠା ଓ ସମ୍ମାନର ଅଧିକାରୀ ହୋଇଥିଲେ।

ପେଷାରେ ଡାକ୍ତର ଥିଲେ ହେଁ ସାହିତ୍ୟନିଶା ବିକ୍ରମ ଦାସଙ୍କ ବ୍ୟକ୍ତି ଚେତନାକୁ ଅହରହ ଉତ୍ତେଜିତ କରୁଥିଲା। ଛାତ୍ରାବସ୍ଥାରେ ହିଁ ସେ କବିତା ଲେଖିବା ଆରମ୍ଭ କରି ଦେଇଥିଲେ। ତାଙ୍କର କେତୋଟି କବିତା ଓ ବ୍ୟଙ୍ଗ ରଚନା ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ

ପାଇଥିଲା । ଡାକ୍ତରୀ ପାସ୍ କରିବା ପରେ ସେ 'ଶରୀର ବିଜ୍ଞାନ', 'ସ୍ୱାସ୍ଥ୍ୟ ବିଜ୍ଞାନ', 'ରୋଗରୁ ରକ୍ଷା କରିବାର ଶକ୍ତି' ପରି ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧୀୟ କେତୋଟି ପୁସ୍ତକ ରଚନା କରିଥିଲେ ।

ଆମେରିକାରୁ ଉଚ୍ଚ ଶିକ୍ଷା ଲାଭ କରି ଆସି ନିଦାନ(Pathology) ବିଭାଗରେ ଅଧ୍ୟାପନା କରିବା ସମୟରେ ଚିକିତ୍ସା ବିଜ୍ଞାନର ଶୁଷ୍କ ବାତାବରଣ ଭିତରେ ତାଙ୍କ ସାହିତ୍ୟିକ ପ୍ରତିଭା ମଳିନ ପଡ଼ି ଆସୁଥିଲା । ଏହି ସମୟରେ ତାଙ୍କର ବ୍ରହ୍ମପୁର ମେଡ଼ିକାଲ କଲେଜକୁ ବଦଳି ହୋଇଗଲା । ସେଠାରେ ସେ ଲୋକରତ୍ନ କୁଞ୍ଜବିହାରୀ ଦାସ ଏବଂ ଛନ୍ଦରସିକ କବି ରାଧାମୋହନ ଗଡ଼ନାୟକଙ୍କ ପରି ଦୁଇଜଣ ବିଶିଷ୍ଟ ସାହିତ୍ୟିକଙ୍କ ଘନିଷ୍ଠ ସମ୍ପର୍କରେ ଆସିଲେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର, ଗବେଷକ ବେଣୀମାଧବ ପାଢ଼ୀ, ପ୍ରଫେସର କାହ୍ନୁ ଚରଣ ମିଶ୍ର ପ୍ରମୁଖଙ୍କ ସମ୍ପର୍କରେ ମଧ୍ୟ ଆସିଲେ । ଏମାନଙ୍କ ସହ ସାହିତ୍ୟ ଚର୍ଚ୍ଚା କରୁ କରୁ ସେ ନିଜେ କିଛି ସୃଷ୍ଟି କରିବା ଲାଗି ଉତ୍ସାହିତ ହେଲେ । ଏହି ଉତ୍ସାହ ତାଙ୍କର ଦ୍ୱିଗୁଣିତ ହେଲା ଯେତେବେଳେ ସେ ଖ୍ରୀ ୧୯୭୫ରେ କଟକ ମେଡିକାଲ କଲେଜରେ ଜୀବାଣୁ ବିଭାଗର ପ୍ରଫେସର ଭାବେ ଯୋଗ ଦେଲେ । ସାହିତ୍ୟ ଓ ସଂସ୍କୃତିର ପୀଠସ୍ଥଳ କଟକରେ ତାଙ୍କ ସାହିତ୍ୟ ଚର୍ଚ୍ଚାର ପରିସର ବ୍ୟାପକ ହେଲା । ତାଙ୍କ ଲେଖନୀରୁ ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରକାଶ ଲାଭ କରିଥିବା କବିତା, ଗଳ୍ପ, ବ୍ୟଙ୍ଗ, ରଚନା ସବୁ ବିଭିନ୍ନ ସମୟରେ 'ସହକାର', 'ସୌରଭ', 'ଶର୍ମିଷ୍ଠା', 'ନବଲିପି', 'ନବଜୀବନ' ପରି ପତ୍ରିକାରେ ସ୍ଥାନ ପାଇଲା । ସରକାରୀ ଚାକିରୀ କରୁଥିବାରୁ ତାଙ୍କର କେତୋଟି ବ୍ୟଙ୍ଗାତ୍ମକ ରଚନା 'ନିଆଁଖୁଣ୍ଟା' ପତ୍ରିକାରେ ଡଃ. ବି. ଦାସଶର୍ମା ଛଦ୍ମନାମରେ ପ୍ରକାଶ ପାଇଥିଲା । ଖ୍ରୀ ୧୯୭୬ରେ ତାଙ୍କ ରଚିତ ପ୍ରଥମ ଗଳ୍ପ ସଂକଳନ 'ସାତ ତିରିକି ସତର' ବ୍ରହ୍ମପୁରର ଦାସ ବ୍ରଦର୍ସଙ୍କ ଦ୍ୱାରା ଲୋକାର୍ପିତ ହେଲା । ଏହି ପୁସ୍ତକରେ ସନ୍ନିହିତ ଗଳ୍ପଗୁଡ଼ିକ ହେଉଛି 'ସାତ ତିରିକି ସତର', 'ହୁକୁମରେ ବିଶ୍ୱାସ', "ଗାଁ ମଜଲିସ୍', "ଅପର୍ତ୍ତିର ଅପ୍ରୀତି', 'ଭାଇବୋହୂଟି ବେକରେ ବନ୍ଧା', 'ଆମେରିକାରେ ମାଙ୍କଡ଼ାମି', 'ବିଖ୍ୟାତ ଆନନ୍ଦ ଗୁଣ୍ଡି' ଓ 'ଅଦ୍ଭୁତ ବାବା' ।

ଖ୍ରୀ ୧୯୭୯ରେ ସରକାରୀ ଚାକିରୀରୁ ଅବସର ନେବା ପରେ ବିକ୍ରମ ଦାସଙ୍କ ସାହିତ୍ୟ ସାଧନାର ପରିସର ବହୁ ବ୍ୟାପକ ହେଲା । ଖ୍ରୀ ୧୯୭୬ରୁ ଖ୍ରୀ. ୨୦୦୫ ଏହି ତିରିଶ ବର୍ଷ ମଧ୍ୟରେ ସେ ପ୍ରାୟ ପଚାଶ ଖଣ୍ଡ ପୁସ୍ତକ ରଚନା କରି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସମୃଦ୍ଧ କରି ପାରିଛନ୍ତି । ତାଙ୍କ ସୃଷ୍ଟି କର୍ମ ମଧ୍ୟରେ ରହିଛି – ଉପନ୍ୟାସ, ଗଳ୍ପ ସଂକଳନ, କବିତା ସଂକଳନ, ରମ୍ୟରଚନା, ଭ୍ରମଣ କାହାଣୀ, ଜୀବନୀ, ଆତ୍ମଜୀବନୀ, ଶିଶୁ ଓ ପ୍ରୌଢ଼ ଶିକ୍ଷାର ଉପଯୋଗୀ ପୁସ୍ତକ ।

ବିକ୍ରମ ଦାସଙ୍କ ରଚନାଗୁଡ଼ିକରେ ତାଙ୍କ କଥକୀୟ ଦୃଷ୍ଟିଭଙ୍ଗୀ ପ୍ରତି ପାଠକ ସ୍ୱତଃ ଆକର୍ଷିତ ହୋଇଥାଏ। ସେ ଗଳ୍ପ ଉପନ୍ୟାସ ଲେଖନ୍ତୁ ବା ପ୍ରବନ୍ଧ-ରମ୍ୟରଚନା ଲେଖନ୍ତୁ; ଜୀବନୀ, ଆତ୍ମଜୀବନୀ ଲେଖନ୍ତୁ ବା ଭ୍ରମଣ କାହାଣୀ ଲେଖନ୍ତୁ - ତାହା ପାଠ କଲେ ମନେ ହୁଏ, ପାଠକମାନଙ୍କୁ ଶ୍ରୋତା କରି ତାଙ୍କ ଆଗରେ ନିଜର ଅନୁଭୂତି ସବୁ ସେ କାହାଣୀ ପରି କହି ଚାଲିଛନ୍ତି। ତାଙ୍କ ରଚନାବଳୀ ଯେ ପଢ଼ିଛି ଏବଂ ଯିଏ ତାଙ୍କ ସମ୍ପର୍କରେ ଆସିଛି ସେ ଅକ୍ଳେଶରେ ଜାଣି ପାରିଥିବ ତାଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟ କିପରି ଅଙ୍ଗାଅଙ୍ଗୀ ଭାବେ ସମ୍ପୃକ୍ତ।

ପ୍ରକୃତରେ ଡାକ୍ତର ବିକ୍ରମ ଦାସ ଯେଉଁଠିକୁ ଯାଉଥିଲେ ସେଠାରେ ଗୋଟିଏ ବନ୍ଧୁତ୍ୱର ଆସର ସୃଷ୍ଟି କରିଦେଉଥିଲେ। ସମସ୍ତଙ୍କ ସହ ଆଳାପ ଆଲୋଚନା ମାଧ୍ୟମରେ ସେ ସ୍ମୃତିରେ ସାଇତି ରଖିଥିବା ମଜାଳିଆ କଥାର ପେଡ଼ି ଖୋଲି ଦେଉଥିଲେ। ପରିବାର ସହ ସେ ଗ୍ରାମକୁ ଯିବାବେଳେ ଗାଁ'ର ପିଲାମାନେ ବିକ୍ରମ ବାପା ଆସିଲେଣି କହି ତାଙ୍କୁ ଘେରି ଯାଆନ୍ତି, ତାଙ୍କଠାରୁ ମଜା ମଜା କଥା ଶୁଣିବା ପାଇଁ । ଛୋଟ ପିଲାଙ୍କ ଭିତରେ ହାସ୍ୟରସ ସୃଷ୍ଟି କରିବାରେ ଏବଂ ବୟସ୍କ ଲୋକଙ୍କ ପାଖରେ ବ୍ୟଙ୍ଗାତ୍ମକ ଟୀକାଟିପ୍ପଣୀ ପୁଣି ଦେବାରେ ସେ ଖୁବ୍ ସିଦ୍ଧହସ୍ତ ଥିଲେ।

ଡକ୍ଟର ଦାସଙ୍କ ବ୍ୟକ୍ତିତ୍ୱର ଏହି ସରସତା ତାଙ୍କ ସାହିତ୍ୟ ସୃଷ୍ଟିକୁ କିପରି ସରସ ସୁନ୍ଦର କରିପାରିଛି ତାହାର ଯଥାର୍ଥ ଉଦାହରଣ ହେଉଛି - 'ସାତ ତିରିକି ସତର', 'ଅଖଇରିଆକଡ଼ା', 'ରସଗୋଲା ବାହାଘର', 'ଟିଣିଟିଣିଆ ଭୂତ', 'ଗୋଳମାଳିଆ ପେଟ' ଆଦି ପୁସ୍ତକ। ଏହି ପୁସ୍ତକଗୁଡ଼ିକରୁ ଲେଖକଙ୍କ ରସିକ ମାନସିକତାର ପରିଚୟ ମିଳେ। ଖ୍ରୀ ୧୯୮୧ରେ ପ୍ରକାଶ ପାଇଥିବା ତାଙ୍କର ଦ୍ୱିତୀୟ ଗଳ୍ପ ସଂକଳନ 'ଅଖଇରିଆକଡ଼ା'ରେ ଅପେକ୍ଷାକୃତ ଆଠଗୋଟି ଗଳ୍ପ ସ୍ଥାନ ପାଇଛି, ସେ ଗୁଡ଼ିକ ହେଲା- 'ପ୍ରେମ ପରୀକ୍ଷା', 'ସନ୍ଦେହ ମୋଚନ', 'ଦୋଷ କାହାର', 'ଇତିହାସ', 'ବାଲିଭୂତ', 'ବିଜୁଳି ଝଲକ', 'ରେଜେଷ୍ଟ୍ରି' ଓ 'ଅଖଇରିଆକଡ଼ା', ବିଷୟବସ୍ତୁ ଦୃଷ୍ଟିରୁ ତାଙ୍କ ଗଳ୍ପଗୁଡ଼ିକର ବୈଚିତ୍ର୍ୟ - ସାମାଜିକ, ଐତିହାସିକ, ମନସ୍ତାତ୍ତ୍ୱିକ, ପୌରାଣିକ, କିମ୍ବଦନ୍ତୀଭିତ୍ତିକ, ବ୍ୟଙ୍ଗାତ୍ମକ ଭାବରେ ଦର୍ଶାଇ ଦିଆଯାଇପାରେ। ପ୍ରତ୍ୟେକଟି ଗଳ୍ପରେ ତାଙ୍କ ସରସ ମାନସିକତାର ପରିଚୟ ମିଳେ।

'ସାତତିରିକି ସତର' ଗଳ୍ପ ସଂକଳନର ଆଠଟି ଯାକ ଗଳ୍ପ ସତ୍ୟ ଘଟଣା ସମ୍ବଳିତ। ସେ ନିଜେ ପ୍ରତ୍ୟକ୍ଷ କରିଥିବା ଘଟଣାଗୁଡ଼ିକୁ ସ୍ମୃତିରୁ ସାଉଁଟି ଆଣି କଳ୍ପନାର ପୁଟ ଦେଇ ରସାଳ କରି ରୂପାୟନ କରିଛନ୍ତି। ଏହି ପୁସ୍ତକ ସମ୍ପର୍କରେ ମତଦେଇ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାସ କହନ୍ତି - 'ଜୀବନର ଆଲେଖ୍ୟ ଅଙ୍କନରେ ଏହି ସଂଚୟନ ଏକ ଦୃଢ଼

ପଦକ୍ଷେପ,ସ୍ୱାତନ୍ତ୍ୟ ଚିହ୍ନିତ । ଏହା ଅନୁଭୂତିରେ ଯେପରି ଜୀବନ୍ତ, ହାସ୍ୟରସରେ ସେପରି ଉଜ୍ଜ୍ୱଳ ଓ ବ୍ୟଙ୍ଗରେ ସେପରି ଶାଣିତ । ବିକ୍ରମ ଯେ ସୁରସିକ ଏହା ପ୍ରମାଣ ପଦେ ପଦେ ।'

ଅନୁଭୂତି ଓ ଅଭିଜ୍ଞତାର ଗଭୀରତା ହେଉଛି ବିକ୍ରମ ଦାସଙ୍କ ସାହିତ୍ୟ ସୃଷ୍ଟିର ଅନ୍ୟତମ ବୈଶିଷ୍ଟ୍ୟ । ଏ ଅନୁଭୂତି ସେ କିଛିଟା ସାଉଁଟିଛନ୍ତି ଦେଶ ଓ ଜାତିର ଜାଗ୍ରତ ପ୍ରହରୀ ପଣ୍ଡିତ ନୀଳକଣ୍ଠଙ୍କ ପୁତ୍ରଭାବେ ଏବଂ କିଛିଟା ସଂଗ୍ରହ କରିଛନ୍ତି ନିଜର ଘଟଣା ବହୁଳ ଜୀବନରୁ । ଦେଶର ଭବିଷ୍ୟତ ନାଗରିକଙ୍କୁ ଗଢ଼ିବା ପାଇଁ ସତ୍ୟବାଦୀ ବନବିଦ୍ୟାଳୟର ଅଧକ୍ଷ ତଥା କୁଳଗୁରୁ ନୀଳକଣ୍ଠଙ୍କ ତ୍ୟାଗ ଓ ସାଧନା ତାଙ୍କ ସମ୍ମୁଖରେ ଏକ ଉଚ୍ଚ ଆଦର୍ଶର ସ୍ତମ୍ଭ ନିର୍ମାଣ କରିଛି । ଆମ ସମାଜର ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବା ପାଇଁ ସଂଗ୍ରାମୀ ପିତାଙ୍କ ଦୃଢ଼ ନିଷ୍ଠିତ ବ୍ୟକ୍ତିତ୍ୱକୁ ସେ ପରଖିଛନ୍ତି । ଶିକ୍ଷା ଓ ସଂସ୍କୃତି, ରାଜନୀତି ଓ ସମାଜନୀତି, ଭାଷା ଓ ସାହିତ୍ୟ – ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଶାକୁ ଉନ୍ନତ କରି ଦେଖିବା ପାଇଁ ପିତାଙ୍କ ସଂକଳ୍ପକୁ ସେ ଆକଳନ କରିଛନ୍ତି, ପିତାଙ୍କ ସଂସ୍ପର୍ଶରେ ଆସିଥିବା ଦେଶର ବହୁ ସ୍ୱାଧୀନତା ସଂଗ୍ରାମୀ ତଥା ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ଜୀବନାଦର୍ଶ ସମ୍ପର୍କରେ ସେ ଅବଗତ ହୋଇଛନ୍ତି । ଏ ସବୁ ପ୍ରତ୍ୟକ୍ଷ ଅନୁଭୂତିରୁ ଉପାଦାନ ସାଉଁଟି ସେ ଲେଖିଛନ୍ତି, ' ମୋ ନନାଙ୍କ ଦେଶ', 'ସଂଗ୍ରାମୀଗୁରୁ', 'ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ', 'ଓଡ଼ିଆ ବଜାରର ଅଗ୍ନିଶିଖା ସୁଭାଷ', 'ଆଦି ଜ୍ୟୋତି ହରିହର', 'ଚିତ୍ରେ ମହାମନୀଷୀ ନୀଳକଣ୍ଠ' ପରି ଗ୍ରନ୍ଥମାନ । ଏସବୁ ଗ୍ରନ୍ଥରେ ଆମ ଦେଶରେ ନବଯୁଗର ବାର୍ତ୍ତାବହରୂପେ ପ୍ରତିଷ୍ଠା ଅର୍ଜନ କରିଥିବା ମହାମନୀଷୀମାନଙ୍କ ଜୀବନୀକୁ ଲେଖକ ବନ୍ଧୁମାନଙ୍କ ଗହଣରେ ବସି ଗପ କଲାପରି ବର୍ଣ୍ଣନା କରିଛନ୍ତି । ପାଠକଗଣ ଏ ପୁସ୍ତକଗୁଡ଼ିକୁ କାହାଣୀ ପରି ଉପଭୋଗ କରିଥାଆନ୍ତି । ଥରେ ପାଠ କରିବାକୁ ଆରମ୍ଭ କଲେ ଶେଷ ନ କରି ରହିପାରିନ୍ତି ନାହିଁ ।

ସେଥିପାଇଁ ବିକ୍ରମ ଦାସଙ୍କ ରଚିତ 'ମୋ ନନାଙ୍କ ଦେଶ' ପାଠ କରି ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ମନ୍ତବ୍ୟ ଦେଇଛନ୍ତି – 'ସେ ନନାଙ୍କ ଭିତରେ ଦେଶକୁ ଓ ଦେଶ ଭିତରେ ନନାଙ୍କୁ ଦେଖି ଲେଖିଛନ୍ତି ଏ ଗ୍ରନ୍ଥ । × × ପାଠକକୁ 'ମୋ ନନାଙ୍କ ଦେଶ' ବୁଲାଇ ସେ ଏମିତି ନୟାନ୍ତ କରି ପକାଇଛନ୍ତି ସେ ବିଚରା ଲେଖାକୁ ଛାଡ଼ି ଆଉ କୁଆଡ଼ିକି ଚାହିଁପାରେନି ଭୋକଶୋଷ ଭୁଲିଗଲା ପରି ଲାଗେ ।'

ପଣ୍ଡିତ ନୀଳକଣ୍ଠଙ୍କ ଜୀବନର ଗତିଶୀଳତା ସହ ପାଦମିଳାଇ ତାଙ୍କ ଜୀବନରେ ଘଟି ଯାଇଥିବା ବହୁ ଘଟଣା ସେ ଭେଟିଥିବା ବହୁ ବିଶିଷ୍ଟ ବ୍ୟକ୍ତି, ସେ ସମ୍ମୁଖୀନ ହୋଇଥିବା ବହୁ ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତିକୁ ଲେଖକ ଜଣେ କୁଶଳୀ ବିନ୍ଧାଣୀ ପରି ଆଲୋଚ୍ୟ ଗ୍ରନ୍ଥରେ ସରସ ସୁନ୍ଦର ଭାବେ ଖଞ୍ଜି ଦେଇଛନ୍ତି ଯାହା ପାଠ କରି ଡକ୍ଟର ସଦାଶିବ ମିଶ୍ର

ମନ୍ତବ୍ୟ ଦେଇଛନ୍ତି, "ମୋ ନନାଙ୍କ ଦେଶ କାହାଣୀ ନୁହେଁ, ଉପନ୍ୟାସ ନୁହେଁ, ମାତ୍ର କାହାଣୀ ପରି ଉପନ୍ୟାସ ପରି ଉପଭୋଗ୍ୟ"। ଗ୍ରନ୍ଥଟି ନୀଳକଣ୍ଠଙ୍କ ଜନ୍ମଶତବାର୍ଷିକୀ ଖ୍ରୀ ୧୯୮୩ରେ ପ୍ରକାଶ ପାଇଥିଲା। ଆଲୋଚ୍ୟ ଗ୍ରନ୍ଥରେ ଲେଖକ ତାଙ୍କ ନନାଙ୍କ ଆତ୍ମଜୀବନୀରେ ସ୍ଥାନ ପାଇନଥିବା ଅନେକ ତଥ୍ୟ ଉପସ୍ଥାପନ କରିଛନ୍ତି। ତନ୍ମଧ୍ୟରୁ ଦୁଇ ଚାରି ଗୋଟି ଉଦାହରଣ ଦିଆଯାଇପାରେ।

କେନ୍ଦ୍ର ଆସେମ୍ବ୍ଲିରେ ନୀଳକଣ୍ଠଙ୍କ ଭୂମିକାର ଗୁରୁତ୍ୱ ଦର୍ଶାଇ ସେ ଲେଖିଛନ୍ତି- "ସେ କେନ୍ଦ୍ର ଆସେମ୍ବ୍ଲି ବା ବଡ଼ଲାଟ ସଭାରେ ପ୍ରାୟ କୋଡ଼ିଏ ବର୍ଷ କାଳ ସଦସ୍ୟ ଥାଇ ପ୍ରାୟ ସମସ୍ତ ବିଷୟର ଆଲୋଚନାରେ ଭାଗ ନେଉଥିଲେ। × × ସେ ଅନେକ ସମୟରେ ସରକାରଙ୍କୁ କଟୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ବହୁ ଅସୁବିଧାରେ ପକାଉଥିଲେ। ତାଙ୍କ ତଥ୍ୟ ସମ୍ବଳିତ ଅକାଟ୍ୟ ଯୁକ୍ତି ସବୁକୁ ଇଂରେଜ ସରକାର ପ୍ରତିରୋଧ କରି ପାରୁନଥିଲେ। × × ସରକାରଙ୍କ 'ଚା' ବ୍ୟବସାୟ ନୀତି ଉପରେ ଆଠଘଣ୍ଟା ଓ ଲୁଣ ବ୍ୟବସାୟ ନୀତି ଉପରେ ଏକାଦିକ୍ରମେ ଦଶ ଘଣ୍ଟାକାଳ ସାର ଗର୍ଭକ ଭାଷଣ ଦେଇ ସେ ରେକର୍ଡ ସୃଷ୍ଟି କରିଥିଲେ।" ( ପୃଷ୍ଠା - ୮୮)

ଜାତୀୟସ୍ତରରେ ଏତେବଡ଼ ନେତା ଥିଲେ ହେଁ ତାଙ୍କ ନନାଙ୍କର ନିଜ ଗ୍ରାମବାସୀଙ୍କ ସହ କିପରି ଘନିଷ୍ଠତା ଥିଲା ତାହା ଦର୍ଶାଇ ବିକ୍ରମ ଦାସ କହନ୍ତି - "ନନା ଲୋକଙ୍କ ସଙ୍ଗେ ମିଶି ଗ୍ରାମ୍ୟ ସମାଜର ସମ୍ପୂର୍ଣ୍ଣ ଚିତ୍ର ଆଖି ଆଗରେ ରଖି, ସାଧାରଣ ଲୋକଙ୍କ ଚାଲିଚଳନ, ହାବଭାବ, ଦୁଃଖ ସୁଖ ସଙ୍ଗେ ସମ୍ପର୍କ ରଖି ଥାଆନ୍ତି। ଖାଲି ସେତିକି ନୁହେଁ, ସବୁ ଗ୍ରାମର ଇତିହାସ, ଲୋକଗୀତି ଓ ଗ୍ରାମ୍ୟ କବିଙ୍କ କବିତା ସବୁ ସଂଗ୍ରହ କରୁଥାଆନ୍ତି, କେଉଁ ଗ୍ରାମର କୌଣସି ଲୋକ କଥା ପଡ଼ିଲେ ସେ ତା'ର ଚଉଦ ପୁରୁଷ କଥା ଗାଇ ଯାଆନ୍ତି।" ( ପୃଷ୍ଠା - ୧୪୮-୧୪୯)

ଗ୍ରାମବାସୀଙ୍କ ସହ ଏପରି ଘନିଷ୍ଠ ସମ୍ପର୍କ ରଖିଥିଲେ ମଧ୍ୟ ଗ୍ରାମ୍ୟ ସମାଜରେ ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ତୀବ୍ର ପ୍ରତିବାଦର ସ୍ୱର ଉଠାଇବା ଲାଗି ନୀଳକଣ୍ଠ କୁଣ୍ଠାବୋଧ କରୁନଥିଲେ। ଏ ସମ୍ପର୍କରେ ବିକ୍ରମ ଦାସ ମତ ଦିଅନ୍ତି - "ନନା କେବଳ କୁସଂସ୍କାର ବିରୁଦ୍ଧରେ ସ୍ୱର ଉଠାଇ ନଥିଲେ ନିଜକୁ ଏବଂ ନିଜ ପରିବାରକୁ ଏସବୁରୁ ଦୂରେଇ ରଖୁଥିଲେ। ତାଙ୍କ ଭାଷାରେ - "ହରିଜନ ଠାରୁ ଅନ୍ୟଧର୍ମୀ ଏପରିକି ମୁସଲମାନ ପର୍ଯ୍ୟନ୍ତ ଯିଏ ଆମ ଘରକୁ ଆସୁଥିଲେ ଆମ ଶାସନୀ ବ୍ରାହ୍ମଣ ଘରେ ମଧ୍ୟ ସେମାନେ ଥିଲେ ଅତିଥି। ସେମାନଙ୍କ ଅଇଁଠା ବାସନ ବୋଉ ପ୍ରଭୃତି ଅକୁଣ୍ଠିତ ଚିତ୍ତରେ ନିଜ ହାତରେ ମାଜି ପରିଷ୍କାର କରୁଥିଲେ। ଆମ ଘରେ ସବୁ ଜାତିର ଲୋକ ଏକାଠି ବସି ଆହାର କରିବା ଅତି ସାଧାରଣ ଥିଲା।" (ପୃଷ୍ଠା - ୧୮୨)

ଏହାପରେ ସେ ନୀଳକଣ୍ଠ ବୈପ୍ଳବିକ ରାଜନୀତି ସମ୍ପର୍କରେ ଅନେକ କଥା କହିଛନ୍ତି। ତାଙ୍କ ନନାଙ୍କ ବିପ୍ଳବୀ ନେତା ସୁଭାଷଚନ୍ଦ୍ରଙ୍କୁ ସହଯୋଗ କରିବା ସମ୍ବନ୍ଧରେ ବିକ୍ରମ ଦାସ ଲେଖିଛନ୍ତି- "ସୁଭାଷ ଚନ୍ଦ୍ରଙ୍କ ବୈପ୍ଳବିକ ପନ୍ଥାକୁ କେନ୍ଦ୍ର ନେତୃତ୍ୱକୁ ଡରି ସବୁ ପ୍ରାଦେଶିକ କମିଟି ବିରୋଧ କଲେ ମଧ୍ୟ ନନା ସୁଭାଷଙ୍କ ପନ୍ଥାକୁ ସ୍ୱାଗତ କରି ତାଙ୍କ ସପକ୍ଷରେ ମତ ଦେଇଥିଲେ। ସୁଭାଷ କଂଗ୍ରେସର ସଭାପତି ପଦରୁ ଓହରିଗଲେ ମଧ୍ୟ ନନା ଉତ୍କଳ କଂଗ୍ରେସର ସଭାପତି ଥାଇ ତାଙ୍କୁ ଜଣେ ପୂର୍ବତନ ସଭାପତିର ସମ୍ମାନ ଦେଇ ଓଡ଼ିଶାକୁ ଡକାଇ ଆଣି ବିରାଟ ଅଭ୍ୟର୍ଥନାର ଯୋଗାଡ଼ କଲେ। × × ତାଙ୍କର ବୈପ୍ଳବିକ ବାର୍ତ୍ତା, ଲୋକଙ୍କୁ ଶୁଣାଇଲେ। ( ୨୧୪ ପୃଷ୍ଠା ଦ୍ରଷ୍ଟବ୍ୟ)

ସୁଭାଷ ଚନ୍ଦ୍ରଙ୍କ ସହ ନୀଳକଣ୍ଠଙ୍କ ବୈପ୍ଳବିକ ଚିନ୍ତାଧାରାର ସମତାକୁ କେନ୍ଦ୍ର କରି ଡଃ. ଦାସ ସ୍ୱତନ୍ତ୍ର ଭାବେ ଲେଖିଛନ୍ତି - "ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ" ଏ ପୁସ୍ତକଟି ନୀଳକଣ୍ଠ ସ୍ମୃତି ସମିତି ଦ୍ୱାରା ଖ୍ରୀ ୧୯୯୩ରେ ପ୍ରକାଶ ପାଇଛି। ଏଥିରେ ନୀଳକଣ୍ଠ କିପରି ସୁଭାଷ ପନ୍ଥୀ ହେଲେ ଏବଂ ଓଡ଼ିଶାରେ ଫରୱାର୍ଡ଼ ବ୍ଲକ ଶାଖା ଗଠନର ନେତୃତ୍ୱ ନେଲେ ତାହାର ସବିଶେଷ ଆଲୋଚନା କରାଯାଇଛି, ଲେଖକ ପୁଣି 'ଓଡ଼ିଆ ବଜାରର ଅଗ୍ନିଶିଖା ନେତାଜୀ ସୁଭାଷ' ଶୀର୍ଷକ ପୁସ୍ତକ ଲେଖି ସୁଭାଷଙ୍କ ଜନ୍ମଭୂମି ଓଡ଼ିଶା ଓ ଓଡ଼ିଶାର ନେତାମାନଙ୍କ ସହ ତାଙ୍କ ପରିଚିତ ସମ୍ପର୍କରେ ବିଭିନ୍ନ ତଥ୍ୟ ଉପସ୍ଥାପନ କରିଛନ୍ତି।

ନୀଳକଣ୍ଠଙ୍କ ଜୀବନୀ ଓ ସାଧନା ଉପରେ ବିକ୍ରମ ଦାସଙ୍କ ଅନ୍ୟତମ ଗ୍ରନ୍ଥ ହେଉଛି 'ପଣ୍ଡିତ ନୀଳକଣ୍ଠ ଦାସ'। ଏ ପୁସ୍ତକରେ ଓଡ଼ିଶାର ଜୀବନ୍ତ ଜ୍ଞାନକୋଷ ରୂପେ ପରିଚିତ ନୀଳକଣ୍ଠଙ୍କ ଜୀବନ ପ୍ରବାହକୁ ବିଭିନ୍ନ ଫଟୋଚିତ୍ର ସହ ପାଠକଙ୍କ ସମ୍ମୁଖରେ ଉପସ୍ଥାପନ କରାଯାଇଛି।

ଡଃ. ଦାସଙ୍କ ରଚିତ ଅନ୍ୟଦୁଇଟି ଜୀବନୀ ଗ୍ରନ୍ଥ ପୁସ୍ତିକା ହେଉଛି, 'ଆଦି ଜ୍ୟୋତି ପଣ୍ଡିତ ହରିହର ଦାସ ଶର୍ମା' ଓ 'ସଂଗ୍ରାମୀ ଗୁରୁ'। ପ୍ରଥମ ପୁସ୍ତିକାରେ ଓଡ଼ିଶାରେ ଶିକ୍ଷା ଓ ସଂସ୍କାରର ପ୍ରସାର ଘଟାଇ ଓଡ଼ିଶାବାସୀଙ୍କୁ ଜ୍ଞାନର ଆଲୋକ ଦର୍ଶାଇଥିବା ପଣ୍ଡିତ ହରିହରଙ୍କ ଜୀବନର ଅଲିଭା କାହାଣୀ ବର୍ଣ୍ଣିତ ହେବାବେଳେ, ଦ୍ୱିତୀୟ ପୁସ୍ତିକାରେ ସତ୍ୟବାଦୀର ପଞ୍ଚସଖା - ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ କୃପାସିନ୍ଧୁଙ୍କ ତ୍ୟାଗପୂତ ଜୀବନ କଥା ବର୍ଣ୍ଣନା କରାଯାଇଛି। ସେ ପୁଣି ସ୍ୱାଧୀନ ଭାରତର ରାଜନୀତି ସହ ସମ୍ପୃକ୍ତ ବିଚାରପତି ଏମ୍. ସି. ଚଗଲାଙ୍କ ଜୀବନୀକୁ ଆଧାର କରି ଲେଖିଛନ୍ତି- "ସ୍ୱାଧୀନଚେତା ବିଚାରପତି ଚଗଲା"। ଏ ସବୁ ଜୀବନୀ ଶିଶୁମାନଙ୍କ ପଠନ ଉପଯୋଗୀ।

ସତ୍ୟବାଦୀ ବନ ବିଦ୍ୟାଳୟର ଭିତ୍ତି, ସ୍ଥିତି, ଗତି ଓ ପରିଣତିକୁ ଆଧାର କରି ଡକ୍ଟର ଦାସ ଲେଖିଛନ୍ତି ଏକ ଗବେଷଣଧର୍ମୀ ପୁସ୍ତକ 'ଯୁଗାନ୍ତକାରୀ ସତ୍ୟବାଦୀ ଗୁରୁକୁଳ'। ଗ୍ରନ୍ଥଟି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଖ୍ରୀ ୨୦୦୦ରେ ପ୍ରକାଶ ପାଇଛି। ପ୍ରାଚୀନ ଗୁରୁକୁଳ ଛାଞ୍ଚରେ ଗଢ଼ା ଯାଇଥିବା ଏହି ବିଦ୍ୟାଳୟ ଗଠନର ପୃଷ୍ଠଭୂମିରେ ଲେଖକ ଓଡ଼ିଶାର ଶିକ୍ଷାକ୍ଷେତ୍ରରେ ନବଯୁଗର ପ୍ରବର୍ତ୍ତକ ଆଦି ଗୁରୁ ହରିହର ଦାଶଙ୍କ ଅବଦାନ ଦର୍ଶାଇଛନ୍ତି। ଦେଶରେ ଶିକ୍ଷାର ପ୍ରସାର ଘଟାଇ ଲୋକଙ୍କ ଆଖି ଖୋଲାଇ ସେମାନଙ୍କୁ କ୍ଷମତାଶାଳୀ ଇଂରେଜ ଶାସକଙ୍କ ବିରୁଦ୍ଧରେ ସଂଗଠିତ କରିବା ପଣ୍ଡିତ ହରିହର ଦାଶଶର୍ମାଙ୍କ ପ୍ରଧାନ ଲକ୍ଷ୍ୟ ଥିଲା। ତେଣୁ ସେ ନିଜ ଖର୍ଚ୍ଚରେ, ନିଜ ଉଦ୍ୟମରେ, ନିଜ ଗ୍ରାମ ଶ୍ରୀରାମଚନ୍ଦ୍ରପୁରରେ ଏକ ଭର୍ଣ୍ଣାକୁଲାର ସ୍କୁଲ ଖ୍ରୀ ୧୮୬୫ରେ ପ୍ରତିଷ୍ଠା କରିଥିଲେ। ପୁରୀରେ ସଂସ୍କୃତ ମହାବିଦ୍ୟାଳୟଟି ମଧ୍ୟ ତାଙ୍କରି ପ୍ରଚେଷ୍ଟାର ଫଳ। ଏଇ ଦୁଇ ଶିକ୍ଷାନୁଷ୍ଠାନ ପାଇଁ ଅର୍ଥ ଯୋଗାଡ଼ କରିବାକୁ ତାଙ୍କୁ ବିଭିନ୍ନ ସ୍ଥାନରେ ବେଦାନ୍ତ ଉପରେ ଭାଷଣ ଦେବାକୁ ପଡୁଥିଲା। ଏହି ଦେଶ ହିତୈଷୀ, ମହାନ୍ ବିଦ୍ୱାନ, ଶିକ୍ଷାବିତ୍, ସମାଜ ସଂସ୍କାରକ ଓ ସମାଜ ସେବକ ପଣ୍ଡିତ ହରିହରଙ୍କ ମୃତ୍ୟୁ ମାତ୍ର ୩୨ ବର୍ଷ ବୟସରେ ଖ୍ରୀ ୧୮୭୪ରେ (ଗୋପବନ୍ଧୁଙ୍କ ଜନ୍ମର ତିନି ବର୍ଷ ପୂର୍ବରୁ) ହୋଇଥିଲେ ହେଁ ତାଙ୍କର ଆଦର୍ଶମୟ ବ୍ୟକ୍ତିତ୍ୱ ଦ୍ୱାରା ଗୋପବନ୍ଧୁ ଅଭିଭୂତ ହୋଇଥିଲେ। ଡାକ୍ତର ବିକ୍ରମ ଦାସ ଯଥାର୍ଥରେ ଲେଖିଛନ୍ତି- "ଗୋପବନ୍ଧୁ, ପଣ୍ଡିତ ହରିହରଙ୍କ ଆଦର୍ଶର ପବିତ୍ର ପ୍ଳାବନରେ ନିଜକୁ ଭସାଇ ନେଇଥିଲେ। ପଣ୍ଡିତ ହରିହରଙ୍କ ଜନ୍ମପୀଠ ଶ୍ରୀରାମଚନ୍ଦ୍ରପୁରକୁ ଏକ ପବିତ୍ରସ୍ଥାନ ମନେ କରି ପ୍ରତିବର୍ଷ ହରିହରଙ୍କ ଜନ୍ମତିଥି କୁମାର ପୂର୍ଣ୍ଣମୀ ଦିନ ସେଠାକୁ ଯାଇ ସେହି ଅମ୍ଳାନ ପ୍ରତିଭାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଜଣାଇ ବାଷ୍ପ ଗଦ୍‌ଗଦ୍ କଣ୍ଠରେ ଭାଷଣ ଦେଇ ଲୋକଙ୍କୁ ଉଦ୍‌ବୁଦ୍ଧ କରୁଥିଲେ"। (ଯୁଗାନ୍ତକାରୀ ସତ୍ୟବାଦୀ ଗୁରୁକୁଳ ପୃ-୧୮)

ଖ୍ରୀ ୧୮୬୫ରୁ ଖ୍ରୀ ୧୯୦୯ ପର୍ଯ୍ୟନ୍ତ ସୁଚାରୁରୂପେ ପରିଚାଳିତ ଶ୍ରୀରାମଚନ୍ଦ୍ରପୁରର ଭର୍ଣ୍ଣାକୁଲାର୍ ସ୍କୁଲଟି ସରକାରଙ୍କ ନୂଆ ଶିକ୍ଷାନୀତିରେ ମିଡିଲ୍ ଇଂରାଜୀ ସ୍କୁଲ୍‌ରେ ପରିଣତ ହେଲା। ସେଇ ସୁଯୋଗ ନେଇ ଗୋପବନ୍ଧୁ ପଣ୍ଡିତ ହରିହରଙ୍କ ଶୁଭଜନ୍ମତିଥି ଖ୍ରୀ ୧୯୦୯, ଅକ୍ଟୋବର ମାସ ୧୨ ତାରିଖ ଦିନ ସେଇ ସ୍କୁଲଟିକୁ ସତ୍ୟବାଦୀର ବକୁଳବନ ପରିସରକୁ ଉଠାଇ ଆଣିଲେ। ତାହାହିଁ ହେଲା ଗୋପବନ୍ଧୁଙ୍କ ପରିକଳ୍ପିତ ଗୁରୁକୁଳ – ସତ୍ୟବାଦୀ ବନ ବିଦ୍ୟାଳୟ।

ଓଡ଼ିଶାର ଏହି ଆବାସିକ ବନ ବିଦ୍ୟାଳୟଟି ସମ୍ପର୍କରେ ବିକ୍ରମ ଦାସଙ୍କ ବାଲ୍ୟକାଳରୁ ବହୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଅନୁଭୂତି ରହିଥିଲା। ଖ୍ରୀ ୧୯୧୧ରେ ଏହି ବିଦ୍ୟାଳୟ

ହାଇସ୍କୁଲରେ ପରିଣତ ହେଲା ଏବଂ ତାଙ୍କ ପିତା ପଣ୍ଡିତ ନୀଳକଣ୍ଠ ଏହାର ପ୍ରଥମ ଅଧକ୍ଷ ହେଲେ। ତାଙ୍କର ଅଧକ୍ଷତା ସମୟରେ ସ୍କୁଲଟି ଉନ୍ନତିର ଚରମ ସୀମାରେ ଉପନୀତ ହୋଇ 'ଓଡ଼ିଶାର ନାଳନ୍ଦା' ଭାବେ ପରିଚିତ ହେଲା। ତେଣୁ ଏହି ସ୍କୁଲ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ପରିବେଷଣ କରିବାକୁ ଲେଖକଙ୍କୁ ବିଶେଷ କଷ୍ଟ କରିବାକୁ ପଡ଼ିନାହିଁ।

ଖ୍ରୀ ୧୯୧୮ରେ ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠାତା ତଥା ସ୍କୁଲ ପରିଚାଳନା କମିଟିର ସମ୍ପାଦକ ପଣ୍ଡିତ ଗୋପବନ୍ଧୁ ସ୍କୁଲ ସମ୍ବନ୍ଧରେ ଯେଉଁ ରିପୋର୍ଟଟି ଇଂରାଜୀ ଭାଷାରେ ପ୍ରସ୍ତୁତ କରିଥିଲେ ଲେଖକ ତାର ଓଡ଼ିଆ ଅନୁବାଦ ଆଲୋଚ୍ୟ ଗ୍ରନ୍ଥରେ ସଂଯୋଜିତ କରିବାସହ ଏହି ବିଦ୍ୟାଳୟର ଶିକ୍ଷାଦାନ ପ୍ରଣାଳୀ, ଶିକ୍ଷକମାନଙ୍କ ପରିଚିତି, ଗୁରୁ-ଶିଷ୍ୟଙ୍କ ସମ୍ପର୍କ ଓ ବନ୍ୟା, ମରୁଡ଼ି, ହଇଜାରେ ଦୁର୍ଦ୍ଦଶା ଭୋଗୁଥିବା ଲୋକ ତଥା ରୋଗୀମାନଙ୍କ ସେବାରେ ସେମାନଙ୍କ ଯୋଗଦାନ, ଅନୁଷ୍ଠାନର ଗତି ଏବଂ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ପରେ ଏହାର ପରିଣତ ସମ୍ପର୍କରେ ବହୁ ତଥ୍ୟ ଉପସ୍ଥାପନ କରି ଗ୍ରନ୍ଥଟିକୁ ଗବେଷଣାଧର୍ମୀ କରିପାରିଛନ୍ତି।

ଡାକ୍ତର ବିକ୍ରମ ଦାସଙ୍କ ଅନ୍ୟ ଏକ ଗବେଷଣା ଧର୍ମୀ ଇଂରାଜୀ ପୁସ୍ତକ ହେଉଛି - "Domains of Lord Jagannath", ଯାହାକି ନୂଆଦିଲ୍ଲୀର B.R. Publication ଦ୍ୱାରା ପ୍ରକାଶିତ। ପିତା ନୀଳକଣ୍ଠଙ୍କ ଜଗନ୍ନାଥ ଧର୍ମ ଓ ସଂସ୍କୃତି ଚର୍ଚ୍ଚାର ଅଭିନବ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ ସେ ଏଇ ଗ୍ରନ୍ଥଟି ରଚନା କରିଛନ୍ତି। ଏ ଗ୍ରନ୍ଥଟିର ମୁଖବନ୍ଧ ଲେଖିଛନ୍ତି କବି ସଚ୍ଚିଦାନନ୍ଦ ରାଉତରାୟ ଏବଂ ଉପଦ୍‌ଘାତ ଲେଖିଛନ୍ତି ଗବେଷକ ସତ୍ୟନାରାୟଣ ରାଜଗୁରୁ, ପୁରୀ ଗଜପତି ରାଜାମାନଙ୍କ ଯଶକୀର୍ତ୍ତନରେ ପୁସ୍ତକଟି ମୁଖରିତ। ଗବେଷକ ରାଜଗୁରୁ ଯଥାର୍ଥରେ ଲେଖିଛନ୍ତି "This book is a unique work in the field of cultural history relating to Lord Jagannath and the Thakur Rajas of Puri."

ଡଃ. ବିକ୍ରମ ଦାସ ତାଙ୍କର ପିତା ପଣ୍ଡିତ ନୀଳକଣ୍ଠଙ୍କ ପରି ଏକ ବହୁବ୍ୟାପକ ଜୀବନ-ପରିଧିରେ ବିଚରଣ କରି ନଥିଲେ ମଧ୍ୟ ତାଙ୍କ ଜୀବନର ଅନୁଭୂତି ଓ ଅନ୍ୱେଷଣର ଛାପ କିଛି କମ୍ ନୁହେଁ। ଖ୍ରୀ ୧୯୩୯ରେ ଓଡ଼ିଶାରେ ପ୍ରଥମ ଛାତ୍ର ସତ୍ୟାଗ୍ରହ ବେଳେ ସେ ସତ୍ୟାଗ୍ରହୀ ଭାବରେ କାରାବରଣ କରିଛନ୍ତି। ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଜାତୀୟ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଛନ୍ତି ଓ ତାଙ୍କ ଓଡ଼ିଶାର ଯାତ୍ରାରେ ଭାଗ ନେଇ ତାଙ୍କ ମତର ପ୍ରଚାର କରିଛନ୍ତି। କଟକରେ I.Sc. ପଢୁଥିବା ସମୟରେ ଖ୍ରୀ ୧୯୪୨ 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗଦେଇ ବ୍ରିଟିଶ୍ ସରକାରଙ୍କ ଦମନଲୀଳାର ଶିକାର ହୋଇଛନ୍ତି। ଖ୍ରୀ ୧୯୪୫ର ଦ୍ୱିତୀୟ ବିଶ୍ୱଯୁଦ୍ଧ

ତାଙ୍କ ଯୁବଚେତନାକୁ ଆନ୍ଦୋଳିତ କରିଛି । ସୁଭାଷଚନ୍ଦ୍ରଙ୍କ ଆଜାଦ୍ ହିନ୍ଦ୍ ବାହିନୀ ପରାସ୍ତ ହୋଇ 'ଆଜାଦ ହିନ୍ଦ ଫୌଜ'ର ଯୁଦ୍ଧବନ୍ଦୀ ହୋଇଥିବା ସେନାପତିମାନଙ୍କ ବିଚାର ଦିଲ୍ଲୀରେ ଚାଲିବା ସମୟରେ ସେ ଅନ୍ୟ ସୁଭାଷ ପନ୍ଥୀଙ୍କ ସହ ମିଶି "ଆଜାଦ ହିନ୍ଦ ଫୌଜ' ସାହାଯ୍ୟ ପାଣ୍ଠି ଖୋଲିଛନ୍ତି । ଏ ସବୁ ଘଟଣା ସହ ସେ ସମ୍ପୃକ୍ତ ଥିବାରୁ ତାଙ୍କର ପାଠ ପଢ଼ା ବାରମ୍ବାର ବ୍ୟାହତ ହୋଇଛି । ଏ ସମ୍ପର୍କରେ ସେ ତାଙ୍କ ଆତ୍ମଜୀବନୀ 'ଜୀବନର ଛାପ' ଗ୍ରନ୍ଥରେ କହନ୍ତି - "ଖ୍ରୀ ୧୯୩୯ରୁ ୧୯୪୫ ପର୍ଯ୍ୟନ୍ତ ମୋର ବାରବୁଲା ରାଜନୀତିକ ସଂଗ୍ରାମୀ ଜୀବନରେ ଗୋଟିଏ ସ୍ଥାନରେ ସ୍ଥିର ରହି ବର୍ଷକରୁ ଅଧିକ ବିଦ୍ୟାଧ୍ୟୟନ କରିବା ସମ୍ଭବ ହୋଇପାରି ନଥିଲା ।" ( ପୃଷ୍ଠା - ୧୫୭)

ଖ୍ରୀ ୧୯୪୫ ଜୁଲାଇରେ ମେଡ଼ିକାଲ କଲେଜରେ ନାମ ଲେଖାଇବା ପରେ ତାଙ୍କ ଶୁଭେଚ୍ଛୁ ଶିକ୍ଷକମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ରାଜନୀତିରୁ ଦୂରେଇ ଯାଇ ଚିକିତ୍ସା ମାଧ୍ୟମରେ ଦେଶସେବା କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ । ରାଜନୀତିରୁ ଦୂରେଇ ଯିବା ସମ୍ପର୍କରେ ମଧ୍ୟ ସେ ଦୁଇଟିକାରଣ ଦର୍ଶାଇଛନ୍ତି - "ଭାରତର ରାଜନୀତି ପଙ୍କିଳ ହୋଇ ଆସୁଥିବା ମୁଁ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ଏକ ପ୍ରକାର ପରିସମାପ୍ତି ଘଟିଥିବାର ମୋର ଧାରଣା ହୋଇଥିଲା । ( ପୃଷ୍ଠା - ୧୫୮)

ଖ୍ରୀ ୧୯୪୭ ମସିହାଟି ଡଃ. ଦାସଙ୍କ ପାଇଁ ଏକ ଘଟଣାବହୁଳ ବର୍ଷ ଥିଲା । ସେହି ବର୍ଷ ମେ ମାସରେ ସେ M.B.B.S. ପରୀକ୍ଷାରେ ପାସ୍ କରି ରୋଗୀ ଚିକିତ୍ସା ତାଲିମ୍ କ୍ଲାସରେ ଯୋଗ ଦେଲେ । ଜୁନ୍ ମାସରେ ତାଙ୍କର ବୈବାହିକ ଜୀବନ ଆରମ୍ଭ ହେଲା ଏବଂ ଅଗଷ୍ଟ ମାସରେ ଭାରତ ସ୍ୱାଧୀନ ହେଲା । ୧୯୩୬ ମସିହାରେ ବିଛିନ୍ନାଞ୍ଚଳକୁ ଛାଡ଼ି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାବେଳେ ଓଡ଼ିଶାବାସୀଙ୍କ ଆନନ୍ଦରେ ଯେପରି ଦୁଃଖ ମିଶି ଯାଇଥିଲା । ଖଣ୍ଡିତ ହିନ୍ଦୁସ୍ତାନର ମୁକ୍ତିରେ ସେହିପରି ଆନନ୍ଦ ସହ ନୈରାଶ୍ୟର ଭାବ ତାଙ୍କ ମନରେ ସୃଷ୍ଟି ହୋଇଥିବାର ସେ ଦର୍ଶାଇଛନ୍ତି । ପୁଣି ଦେଶ ସ୍ୱାଧୀନ ହେବା ପରେ ସୁବିଧାବାଦୀ କ୍ଷମତା ଲିପ୍ସୁ ନେତାମାନେ ଖଦଡ଼ ପିନ୍ଧି ଦେଶକୁ ଶୋଷଣ କରିବା ଦେଖି ସେ ପିଲା ଦିନରୁ ସ୍ୱାଧୀନତା ସୈନିକର ପୋଷାକ ରୂପେ ପିନ୍ଧି ଆସୁଥିବା ଖଦଡ଼କୁ ପରିତ୍ୟାଗ କରିଛନ୍ତି ।

ଡଃ. ଦାସଙ୍କ ବୈବାହିକ ଜୀବନର ଅନୁଭୂତି ଖୁବ୍ ସୁଖପ୍ରଦ ଥିଲା । ତାଙ୍କର ପତ୍ନୀ ବାସନ୍ତୀଦେବୀ ରାଜନୈତିକ ଆଦର୍ଶରେ ଗଢ଼ି ଉଠିଥିବା ଏକ ସଂସ୍କୃତିସମ୍ପନ୍ନ ପରିବାରରୁ ଆସିଥିବାରୁ ଡଃ. ଦାସଙ୍କ ଘରର ଚଳଣି ସହିତ ନିଜକୁ ବେଶ୍ ଖାପ ଖୁଆଇ ପାରିଥିଲେ । ତେଣୁ ଲେଖକ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି - "ଉତ୍‌ଥାନପତନ ଭିତରେ ଗତି କରୁଥିବା ମୋର ଜୀବନ ସହିତ ତାଳ ଦେଇ ଚାଲିବା ପାଇଁ ମୋର ପିତା ଯେ ମୋ ପାଇଁ ଏକ ଉପଯୁକ୍ତ ଜୀବନସାଥି ବାଛିଥିଲେ ସେଥିପାଇଁ ମୁଁ ଚିରକୃତଜ୍ଞ । (ପୃଷ୍ଠା - ୧୯୧)

ଏହିପରି ନିଜ ଜୀବନରେ ବହୁ ଅନୁଭୂତି ସେ କାହାଣୀ କହିବା ପରି 'ଜୀବନର ଛାପ'ରେ ବର୍ଣ୍ଣନା କରିଯାଇଛନ୍ତି । ମେଡ଼ିକାଲ ପଢ଼ିବା ସମୟର ଅଭିଜ୍ଞତା ମାଧ୍ୟମରେ ସେ ସମୟର ଶିକ୍ଷା ବ୍ୟବସ୍ଥାରେ ଥିବା ଅଭାବ ଓ ଅସୁବିଧା ସମ୍ପର୍କରେ ମଧ୍ୟ ସେ ପାଠକଙ୍କୁ ସୂଚାଇ ଦେଇଛନ୍ତି । ସେହିପରି ଉଚ୍ଚ ଶିକ୍ଷା ପାଇଁ ଆମେରିକା ଯାଇ ସେଠାରେ ସେ ଅନେକ ପରିବାର ସହ ମିଶି ସେମାନଙ୍କ ସାମାଜିକ ବିଚାରଧାରା ଓ ଚାଲି ଚଳନ ସମ୍ପର୍କରେ ଯେଉଁ ଅଭିଜ୍ଞତା ହାସଲ କରିଥିଲେ ତାହା ତାଙ୍କ ଆତ୍ମଜୀବନୀରେ ସ୍ଥାନିତ ହୋଇଛି । ତାଙ୍କ ରୋଗୀ ଚିକିତ୍ସା ସମ୍ବନ୍ଧୀୟ ବହୁ ଅନୁଭୂତିର କଥା ମଧ୍ୟ ଆଲୋଚ୍ୟ ଗ୍ରନ୍ଥରେ ବର୍ଣ୍ଣିତ । ଶେଷରେ ବହୁ ପ୍ରତିଷ୍ଠିତ ସାହିତ୍ୟ ସ୍ରଷ୍ଟା ମାନଙ୍କ ସାନ୍ନିଧ୍ୟରେ ଆସି ତାଙ୍କ ସାହିତ୍ୟସାଧନା କିପରି ପରିପୁଷ୍ଟ ହୋଇଛି, ତାହାର ଦୃଷ୍ଟାନ୍ତ ଦେଇ ଗ୍ରନ୍ଥଟି ଶେଷ କରିଛନ୍ତି ।

ବାଲ୍ୟକାଳରୁ ବିକ୍ରମ ଦାସଙ୍କର ପ୍ରତ୍ୟେକ ବିଷୟରେ ଅନୁସନ୍ଧାନ କରିବାର ପ୍ରବୃତ୍ତି ରହିଥିଲା । ପରବର୍ତ୍ତୀ କାଳରେ ସେହି ପ୍ରବୃତ୍ତି ତାଙ୍କୁ ବିଭିନ୍ନ ତଥ୍ୟ ଅନୁସନ୍ଧାନ କରି ଇତିହାସ ଓ କିମ୍ବଦନ୍ତୀ ସମ୍ବଳିତ ଉପନ୍ୟାସମାନ ରଚନା କରିବା ପାଇଁ ପ୍ରେରଣା ଯୋଗାଇଥିଲା । ପିଲାଦିନେ ସେ ଯେଉଁ ମଣିମାଙ୍କ ଉଆସର ପାଚେରୀ ଭିତରେ ଖେଳୁଥିଲେ, ପଚାଶ ବର୍ଷ ପରେ ଜନମାନବ ଶୂନ୍ୟ ସେହି ଉଆସର ଡିହରେ ଗୋରୁ ଚରୁଥିବା ଦେଖି ସେ ତାଙ୍କ ବାଲ୍ୟସ୍ମୃତିକୁ ସାଉଁଟିଛନ୍ତି । ସେହି ସ୍ମୃତିରେ ପ୍ରତୀତିକୁ ମିଶାଇ ସେ ସାକ୍ଷୀଗୋପାଳଙ୍କ ଚନ୍ଦନ ପୋଖରୀ ନିକଟରେ ଥିବା ପୁରୀ ଗଜପତି ମହାରାଜା ତୃତୀୟ ରାମଚନ୍ଦ୍ର ଦେବଙ୍କ ବଂଶର ଦାୟାଦ ମଣିମା ପଦ୍ମନାଭ ଦେବ ଓ ତାଙ୍କ ଉଆସ ସମ୍ବନ୍ଧରେ ବହୁତଥ୍ୟ ସଂଗ୍ରହ କରି ତାଙ୍କର ପ୍ରଥମ ଉପନ୍ୟାସ - "ମଣିମାଡିହ' ଲେଖିଛନ୍ତି । ଖ୍ରୀ ୧୯୮୧ରେ ଗ୍ରନ୍ଥମନ୍ଦିର ଦ୍ୱାରା ଉପନ୍ୟାସ ପ୍ରକାଶ ପାଇବା ପରେ ପାଠକ ମହଲରେ ଖୁବ୍ ଆଦୃତି ଲାଭ କରିଛି ।

ଆଲୋଚ୍ୟ ଉପନ୍ୟାସର ବିଷୟବସ୍ତୁ ମଣିମାଙ୍କ ଚାରିତ୍ରିକ ମହତ୍ତ୍ୱକୁ କେନ୍ଦ୍ର କରି ଗଢ଼ି ଉଠିଛି । ଗଜପତି ରାମଚନ୍ଦ୍ର ଦେବ (୩ୟ)ଙ୍କ କନିଷ୍ଠ ପୁତ୍ର କଣାସ ଅଞ୍ଚଳର ସାମନ୍ତରାଜା ଥିଲେ । ସେ ଥିଲେ ସାକ୍ଷୀଗୋପାଳ ମନ୍ଦିରର ପ୍ରତିଷ୍ଠାତା । ସେ ଓ ତାଙ୍କର ରାଣୀ ଗୋପାଳ ଜିଉଙ୍କ ପରମ ଭକ୍ତ ଥିଲେ । ମହାରାଣୀ ନିଃସନ୍ତାନ ଥିବାରୁ ତାଙ୍କର ଜଣେ ସହଚରୀ (ସାନରାଣୀ) ମନୋହାରିଣୀଙ୍କ ଜଠରରୁ ଜନ୍ମଲାଭ କରିଥିବା ମଣିମା ପଦ୍ମନାଭ ଦେବ ଥିଲେ ଗଜପତି ବଂଶର କଣାସ ଶାଖାର ଶେଷ ରାଜା । ପିତାଙ୍କ ତିରୋଧାନ ପରେ ମଣିମା ମଧ୍ୟ ଗୋପାଳଙ୍କ ସେବାରେ ନିଜ ସମ୍ପତ୍ତି ମନ୍ଦିରକୁ ଉତ୍ସର୍ଗ କରିଥିଲେ । ଲୋକେ ତାଙ୍କୁ ମଣିମା ବୋଲି ଡାକି ରାଜା ସାହେବ ପଦବୀରେ ଭୂଷିତ କରିଥିଲେ ।

ଏହି ଉପନ୍ୟାସରେ ସାକ୍ଷୀଗୋପାଳ ମନ୍ଦିର ସମ୍ପର୍କରେ ବହୁ ତଥ୍ୟ ଓ ତତ୍ତ୍ୱ ଉପସ୍ଥାପିତ ହୋଇଅଛି । ସାକ୍ଷୀଗୋପାଳ ପ୍ରଥମେ 'କନ୍ତଳବାଇ'ଠାରେ ଥିଲେ । ରାମଚନ୍ଦ୍ର ଦେବ (୩ୟ)

ନିଜ ପୁତ୍ର ତଥା କଣାସର ସାମନ୍ତରାଜାଙ୍କ ଅନୁରୋଧ କ୍ରମେ ଗୋପାଳଙ୍କୁ ପୁରୀ ମନ୍ଦିରରେ ରଖିବା ପାଇଁ ନିର୍ଦ୍ଦେଶ ଦେଲେ। ଖ୍ରୀ ୧୮୫୭ରେ ରାମଚନ୍ଦ୍ର ଦେବଙ୍କ ଦେହାନ୍ତ ପରେ କଣାସ ରାଜା ସିଦ୍ଧ ବକୁଳ ବନରେ ମନ୍ଦିର ନିର୍ମାଣ କରି ଖ୍ରୀ ୧୮୬୨ରେ ଗୋପାଳ ଜିଉଙ୍କୁ ବିଜେ କରାଇ ମନ୍ଦିର ପ୍ରତିଷ୍ଠା କଲେ।

ପୁଣି ରଣପୁରର ଭକ୍ତ-ରାଜା ଶ୍ରୀ ରାଧାଙ୍କ ପିତଳ ମୂର୍ତ୍ତି ଗଢ଼ା ଯିବା ପାଇଁ ତେର ହଜାର ରାମାଭିଷେକ ସ୍ୱର୍ଣ୍ଣ ମହୁଡ଼ ଓ ନଅଶହ ବିଶା ପିତଳ ଦେଇଥିଲେ।

ଏ ଉପନ୍ୟାସ ଅତି ସହଜ ଓ ସରଳ ଭାଷାରେ ଲେଖକ ଯେପରି ଗ୍ରାମ୍ୟ ଜୀବନର ନିଖୁଣ ଚିତ୍ର ଉପସ୍ଥାପନ କରିଛନ୍ତି ତାହା ପାଠ କଲେ ତାଙ୍କ ରଚନାଶୈଳୀରେ କଥା ସମ୍ରାଟ ଫକୀରମୋହନଙ୍କ ପ୍ରଭାବ ସ୍ୱତଃ ବାରି ହୋଇଯାଏ। ତେଣୁ ଏହି ପୁସ୍ତକ ସମ୍ପର୍କରେ ସୂଚନା ଦେଇ ବିଶିଷ୍ଟ ଔପନ୍ୟାସିକ କାହ୍ନୁ ଚରଣ କହିଛନ୍ତି - "ମଣିମାଡିହ ଉପନ୍ୟାସ ପଢ଼ିବାବେଳେ ମୋର ମନେ ହେଉଥିଲା,ସତେକି ଓଡ଼ିଆ ଉପନ୍ୟାସର ଜନ୍ମଦାତା ବ୍ୟାସ କବି ଫକୀର ମୋହନଙ୍କ ଅପ୍ରକାଶିତ ଆଉ ଗୋଟିଏ ଉପନ୍ୟାସ ପଢୁଛି କି ?"

ଖ୍ରୀ ୧୯୮୫ରେ ପ୍ରକାଶିତ ବିକ୍ରମ ଦାସଙ୍କ ଦ୍ୱିତୀୟ ଉପନ୍ୟାସ 'ବୁଦ୍ଧଖୋଲର ମାୟା' କଳିଙ୍ଗର ସାଧବ ପୁଅ ଓ ସୁଦୂର ଆମେରିକାରେ ରହିଥିବା ଓଡ଼ିଆ ସଂସ୍କୃତିର ପାଦ ଚିହ୍ନକୁ ଆଧାର କରି ରଚିତ। ଏଥିରେ ଚରିତ୍ର ଓ ଘଟଣାର ବୈଶିଷ୍ଟ୍ୟ ସଂସ୍ଥାପନ ରୀତି ମଧ୍ୟରେ ହାସ୍ୟରସ ସୃଷ୍ଟି କରିବାରେ ଔପନ୍ୟାସିକଙ୍କ ଦକ୍ଷତାର ପ୍ରଶଂସା କରି କଥାକାର ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି - "କେବଳ ମନୋରଞ୍ଜନ ନୁହେଁ, ଲୋକ ଶିକ୍ଷା ଓ ଲୋକ ଜାଗରଣ, ନିଜର ଐତିହ୍ୟ, ସଂସ୍କୃତି ସମ୍ପର୍କରେ ସଚେତନ ହେବା ପାଇଁ ଆହ୍ୱାନ ଡଃ. ଦାସଙ୍କ ରଚନାରେ ଅତି ସୋଚ୍ଚାର।"

'ନିର୍ବାସିତ ଗଜପତି' (ପ୍ରକାଶ କାଳ - ଖ୍ରୀ ୧୯୮୮)ରେ ଔପନ୍ୟାସିକ ଓଡ଼ିଶା ଇତିହାସର ଏକ ବେଦନାମୟ ଅଧ୍ୟାୟକୁ ଉନ୍ମୋଚନ କରିଛନ୍ତି। ଜଗନ୍ନାଥ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଭାବେ ପରିଚିତ ଗଜପତି ରାଜବଂଶର ଦାୟାଦ ତୃତୀୟ ଦିବ୍ୟସିଂହ ଦେବଙ୍କ ଉପରେ ଇଂରେଜ ସରକାର ଚକ୍ରାନ୍ତ କରି ଏକ ବ୍ରହ୍ମହତ୍ୟା ଦୋଷ ଲଦି ତାଙ୍କୁ କିପରି କଳାପାଣି (ଆଣ୍ଡମାନର କାରାଗାର) ପଠାଇ ଦେଇଥିଲେ ତାହା ବର୍ଣ୍ଣନା କରିବା ସହ ଲେଖକ ସେଇ ଅପବାଦରୁ ଗଜପତିଙ୍କୁ ମୁକ୍ତ କରି ଐତିହାସିକ ସତ୍ୟକୁ ଲୋକଲୋଚନକୁ ଆଣିବାକୁ ପ୍ରୟାସ କରିଛନ୍ତି। ଏହି ଗ୍ରନ୍ଥ ଉପରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ "ନିର୍ବାସିତ" ଉପନ୍ୟାସର ପ୍ରଭାବ ଲକ୍ଷ୍ୟ କରାଯାଇପାରେ। ତେବେ ନିଜସ୍ୱ ରଚନାଶୈଳୀରେ ଡଃ. ଦାସ ଉପନ୍ୟାସଟିକୁ ସରସ, ସୁନ୍ଦର ଓ ପ୍ରାଞ୍ଜଳ କରିପାରିଛନ୍ତି।

ଅତୀତରେ ଆମ ଗଜପତିମାନଙ୍କ ସଂଘର୍ଷମୟ ଜୀବନର କାହାଣୀ ବିକ୍ରମ ଦାସଙ୍କ ହୃଦୟକୁ ବାରମ୍ବାର ଆଲୋଡ଼ିତ କରିଛି । ତେଣୁ ଖ୍ରୀ ୧ ୯ ୯ ୩ରେ ପୁଣି ତାଙ୍କ ଲେଖନୀରୁ ପ୍ରକାଶ ପାଇଛି - 'ଆମ ଗଜପତି ଆମ ଗାଁ' । ଏ ପୁସ୍ତକଟିକୁ ଲେଖକ ରମ୍ୟରଚନାର ଅନ୍ତର୍ଭୁକ୍ତ କରିଛନ୍ତି । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ରାଜ ମହେନ୍ଦ୍ରୀ କାରାଗାରରୁ ମୁକ୍ତ ହୋଇ ବୀର ରାଜପୁରୁଷ ରମେଇ ରାଉତରା ଗଜପତି ରାମଚନ୍ଦ୍ର ନାମରେ ଅଭିଷିକ୍ତ ହୋଇଥିଲେ । ସେ ଜଗନ୍ନାଥଙ୍କ ନାମରେ ଧର୍ମ ଶାସନ ଚଳାଇବା ପାଇଁ ଜଗନ୍ନାଥ ମନ୍ଦିରର ମୁକ୍ତି ମଣ୍ଡପକୁ ସୁସଂଗଠିତ କରିଥିଲେ । ଏହି ମୁକ୍ତି ମଣ୍ଡପର ପଣ୍ଡିତ ମାନଙ୍କୁ ନିର୍ବାଚିତ କରି ପଠାଇବା ପାଇଁ ସେ ଷୋଳ ଗୋଟି ବ୍ରାହ୍ମଣ ଶାସନ ବସାଇଥିଲେ । ସେଥିମଧ୍ୟରୁ ବିକ୍ରମ ଦାସଙ୍କ ଗ୍ରାମ ଶ୍ରୀରାମଚନ୍ଦ୍ରପୁର ଥିଲା ଅନ୍ୟତମ । ଏ ଗ୍ରାମ ପୁରାତତ୍ତ୍ୱ ଦୃଷ୍ଟିରୁ ଯେତିକି ପ୍ରସିଦ୍ଧି ଲାଭ କରିଛି ତାହାଠାରୁ ଅଧିକ ଖ୍ୟାତି ଲାଭକରିଛି ଏହି ଗ୍ରାମରେ ଜନ୍ମ ହୋଇ ଦେଶ ଓ ସମାଜର ସେବା କରିଥିବା ମନୀଷୀମାନଙ୍କ ପାଇଁ । ଲେଖକ ତାଙ୍କ ଗ୍ରାମକୁ ପ୍ରାଣଠାରୁ ଅଧିକ ଭଲ ପାଉଥିବାରୁ 'ଆମ ଗଜପତି ଆମ ଗାଁ' ଉପନ୍ୟାସରେ ଶ୍ରୀରାମଚନ୍ଦ୍ରପୁରର ପ୍ରତିଷ୍ଠା, ଶତାବ୍ଦୀବ୍ୟାପୀ ତା'ର ଐତିହ୍ୟ ଓ ସେହି ଗ୍ରାମରୁ ଐତିହାସିକ ବ୍ୟକ୍ତିମାନଙ୍କ ଯୁଗାନ୍ତକାରୀ ଆଦର୍ଶର ଗାରିମା ବର୍ଣ୍ଣନା କରିଛନ୍ତି । ଗ୍ରାମର ଆଦିଜ୍ୟୋତି ପଣ୍ଡିତ ହରିହର ଦାଶଶର୍ମା, ଜ୍ଞାନଗୁରୁ ପଣ୍ଡିତ ନୀଳକଣ୍ଠ ଦାସ, ଅଜାତଶତ୍ରୁ ଜନନାୟକ ଆଚାର୍ଯ୍ୟ ହରିହର ଦାସ, ଉତ୍କଳ ସମ୍ମିଳନୀର ପ୍ରଚାରକ ଅନନ୍ତ ମିଶ୍ର, ଲୋକ ସେବକ ମଣ୍ଡଳର ଆଜୀବନ ସଦସ୍ୟ 'ସମାଜ' ଦୈନିକ ସମ୍ପାଦକ, ଓଡ଼ିଶାର ପୂର୍ବତନ ମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ଜୀବନର ବିଶିଷ୍ଟ ଘଟଣାବଳୀ ବର୍ଣ୍ଣନା କରି ଲେଖକ ପୁସ୍ତକଟିକୁ ଅନୁସନ୍ଧିତ୍ସୁ ପାଠକମାନଙ୍କ ପାଇଁ ତଥ୍ୟ ବହୁଳ କରିପାରିଛନ୍ତି । ଏହା ବ୍ୟତୀତ ନିଜ ଗ୍ରାମର ଦେବଦେବୀ, ବାର୍ଷିକ ପର୍ବପର୍ବାଣୀ, ଯାନିଯାତ୍ରା, ନାରୀ ଜାଗରଣ, ବିଶିଷ୍ଟ ପଣ୍ଡିତବର୍ଗ ଓ ଖ୍ୟାତି ଲାଭ କରିଥିବା ଶିକ୍ଷକ ଗୋଷ୍ଠୀଙ୍କୁ ଲୋକଲୋଚନକୁ ଆଣିବାକୁ ମଧ୍ୟ ଲେଖକ ଯଥାସାଧ୍ୟ ଉଦ୍ୟମ କରିଛନ୍ତି ।

ଖ୍ରୀ ୧ ୯ ୮ ୬ରେ ପ୍ରକାଶିତ 'ଅଲିଭା ଇତିହାସ' ଉପନ୍ୟାସଟି ଡାକ୍ତର ବିକ୍ରମ ଦାସଙ୍କର ଏକ ନୂତନ ପ୍ରତିଶ୍ରୁତିର ସ୍ୱାକ୍ଷର ବହନ କରିଛି । ଭାରତର ସ୍ୱାଧୀନତା ପାଇଁ ଯେଉଁ ସଂଗ୍ରାମୀମାନଙ୍କ ଅକ୍ଳାନ୍ତ ଉଦ୍ୟମ ଓ ଅତନ୍ଦ୍ର ସାଧନା ନେପଥ୍ୟରେ ରହିଯାଇଛି ସେମାନଙ୍କ ତ୍ୟାଗପୂତ ଜୀବନର ଚିତ୍ର ଏଥିରେ ରୂପାୟିତ । ଅହିଂସାବାଦୀ ସ୍ୱାଧୀନତା ସଂଗ୍ରାମୀ, ନିଃସ୍ୱାର୍ଥପର ସମାଜସେବୀ, ଆଦର୍ଶ ଶିକ୍ଷକ ଭିକାରୀ ବାବୁ ନିଜ ଜୀବନରେ ସବୁ ହରାଇବା ସତ୍ତ୍ୱେ ଜନସାଧାରଣଙ୍କ ଗହଣରେ ଆପଣା ସାଧନାର ସୌରଭ ବିତରଣ କରି ଚାଲିଛନ୍ତି । କାରାବାସ ସମୟରେ ନିଜ ପତ୍ନୀକୁ ହରାଇଛନ୍ତି, କନିଷ୍ଠ ପୁତ୍ର ସୂର୍ଯ୍ୟ କୁମାର ସେଇ କାରାଗାରରେ

ରୋଗ ଯନ୍ତ୍ରଣାରେ ପ୍ରାଣ ହରାଇଛି। ବଞ୍ଚିରହିଥିବା ଏକମାତ୍ର ପୁତ୍ର ନବକୁମାର ଦୁର୍ଗମ ଦୁରୂହ ନୂତନ ମାର୍ଗର ଅନ୍ୱେଷଣରେ ଚାଲିଛି। ପିତା ଭିକାରୀବାବୁ ଓ ପୁତ୍ର ନବକୁମାରଙ୍କ ମଧ୍ୟରେ ଲେଖକ ଯେଉଁ ଆଦର୍ଶଗତ ସଂକଟର ସମସ୍ୟା ସୃଷ୍ଟି କରିଛନ୍ତି ତାହା ହେଉଛି ପ୍ରତ୍ୟେକ ଗଣ ଆନ୍ଦୋଳନର ଦୁଇ ପିଢ଼ିଙ୍କ ମଧ୍ୟରେ ଥିବା ଜୀବନ ଦ୍ୱନ୍ଦ୍ୱର ସମସ୍ୟା।

'ଅଲିଭା ଇତିହାସ'ର ସତରଗୋଟି ଅଧ୍ୟାୟ ମଧ୍ୟରେ ବିଶାଳ, ସଂଖ୍ୟା ବହୁଳ, ବହୁ ବିଭିନ୍ନତା ଓ ଏକତାର ଗନ୍ତାଘର ଭାରତ ବର୍ଷର ପ୍ରାୟ ଷାଠିଏ ବର୍ଷର ସ୍ୱାଧୀନତା ଆନ୍ଦୋଳନର ଆଲେଖ୍ୟ ରୂପାୟିତ ହୋଇଛି। ଲେଖକଙ୍କ ବର୍ଣ୍ଣନାର ଚମତ୍କାରିତା ଉପନ୍ୟାସଟିକୁ ସରସ ସୁନ୍ଦର କରିପାରିଛି। 'କଳ୍ପବଟ ମୂଳେ ବସି ଚିର ଉପବାସୀ' ପରି ତତ୍କାଳୀନ ଭାରତର ଅବସ୍ଥା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି – "ସ୍ୱର୍ଣ୍ଣପ୍ରସୂ ଭାରତରେ ସବୁଥାଇ ଭାରତୀୟଙ୍କ ପାଇଁ କିଛି ନାହିଁ; ଖାଇବାକୁ ଦାନା ନାହିଁ, ପିନ୍ଧିବାକୁ କନା ନାହିଁ, ଇଂରେଜମାନେ ଭାରତରୁ କଞ୍ଚାମାଲ ବିଲାତକୁ ଘେନିଯାଇ ସେଥିରେ ତିଆରି ହେଉଥିବା ସରଞ୍ଜାମକୁ ପୁଣି ଭାରତ ଆଣି ଚଢ଼ାଦରରେ ବିକ୍ରି କରୁଛନ୍ତି।" (ଅଲିଭା ଇତିହାସ ପୃଷ୍ଠା- ୧୧୯)। ସେହି ସମୟର ମାଟିବଂଶ ଅବଧାନଙ୍କ ଚାହାଳି ଶିକ୍ଷା ପ୍ରଣାଳୀର ବର୍ଣ୍ଣନା କରି ଲେଖକ କହନ୍ତି – "ସେ କାଳର ଗୋଟିଏ ଚାହାଳି ନାନା ବିଷୟରେ ଶିକ୍ଷା ଦିଆଯାଉଥିବା ବହୁ ଶିକ୍ଷକ ବିଶିଷ୍ଟ ସ୍କୁଲ ପରି। ଜଣେ ଅବଧାନ ବା ଶିକ୍ଷକ ଏକାଧାରରେ ଗଣିତଜ୍ଞ, ସାହିତ୍ୟିକ, ଐତିହାସିକ ଓ ଅର୍ଥଶାସ୍ତ୍ରୀ ଭାବରେ ନିଜକୁ ଶିକ୍ଷିତ କରି ଛାତ୍ର ବା ଚାଟମାନଙ୍କୁ ଶିକ୍ଷା ଦିଅନ୍ତି। × × × ଅବଧାନଙ୍କର ସ୍କୁଲ ଘର ବା ମାସିକ ବେତନ କିଛି ନ ଥାଏ। ଗାଁ'ର ଆଖଡ଼ା ଘର, ଦେଉଳ ଚାଳିଆ କିମ୍ବା କାହା ଦାଣ୍ଡପିଣ୍ଡା ସ୍କୁଲ ଘରର କାମ କରେ। ଚାଟମାନେ ପାଳିକରି ଦିନକୁ ଗୋଟିଏ ବକ୍ତ ଖାଇବାକୁ ଦିଅନ୍ତି। (ପୃଷ୍ଠା-୧୦)

ସ୍ୱାଧୀନତା ସଂଗ୍ରାମକାଳରେ ଆମ ଦେଶର ସ୍କୁଲଛାତ୍ରମାନେ ହଜାର ହଜାର ସଂଖ୍ୟାରେ ବାନର ସେନା ଗଢ଼ି ସ୍କୁଲ ପଢ଼ା ତ୍ୟାଗ କରି କିପରି ଦେଶ କାର୍ଯ୍ୟରେ ମାତିଥିଲେ ତାହା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି- "ବାନରସେନା ମଦ ଗଞ୍ଜେଇ ଦୋକାନ ଆଗରେ ପକେଟିଂ କରୁଥିଲେ। ବିଦେଶୀ ଜିନିଷ ପୋଡ଼ି, ସେ ସବୁ ନ କିଣିବା ପାଇଁ ଲୋକଙ୍କୁ ଅନୁରୋଧ କରୁଥିଲେ। × × × ସହରରେ ପକେଟିଂ କରିବା ଛଡ଼ା ଗାଁ, ଗଣ୍ଡା, ସହର ମଫସଲ ଚାରିଆଡ଼େ ଜାତୀୟ ସଂଗୀତ ଗାଇ ବୁଲୁଥିଲେ।

*ଦେଶ ପଞ୍ଚାୟତ ଆଦେଶ ଦେଇଛି ଆଜି ଶୁଭଦିନ ଭାଇ।*
*ସ୍ୱାଧୀନତା ଯୁଦ୍ଧ ଆରମ୍ଭ ଆଜିଠୁ ଚାରିଆଡ଼େ ଦେଖ ଚାହିଁ।।"*

ଲେଖକ ନିଜେ 'ଆଜାଦ ହିନ୍ଦ୍ ଫୌଜ' ସହ ସାମିଲ ହୋଇଥିବାରୁ ଏହି ଫୌଜର କାର୍ଯ୍ୟ କଳାପ ସମ୍ପର୍କରେ ବିଶଦ ବିବାରଣୀ ଦେଇ ଲେଖିଛନ୍ତି – "ସାମରିକ ଶିକ୍ଷା

ଦେବା ଲାଗି 'ଆଜାଦ ହିନ୍ଦ୍ ଫୌଜ'ର ନଅ ଗୋଟି କେନ୍ଦ୍ର ଥିଲା। ସାମରିକ ଅଫସର୍‌ମାନଙ୍କୁ ତାଲିମ ଦେବା ଲାଗି ରେଙ୍ଗୁନ୍ ଓ ସିଙ୍ଗାପୁରରେ ଦୁଇଟି କେନ୍ଦ୍ର ମଧ୍ୟ ଗଢ଼ା ଯାଇଥିଲା। ଅଫିସର ଓ ନାୟକମାନେ ହିନ୍ଦୁସ୍ଥାନୀରେ ଶିକ୍ଷା ପାଉଥିଲେ। ସେଠାରେ ଜାତି ଓ ସଂପ୍ରଦାୟର ଭେଦ ଦେଖାଯାଉନଥିଲା। ଯୁଦ୍ଧରେ ହିନ୍ଦୁସ୍ଥାନୀରେ ଆଦେଶ ଦିଆ ଯାଉଥିଲା। ଯୁଦ୍ଧବନ୍ଦୀ ସୈନ୍ୟଙ୍କ ବ୍ୟତୀତ ବହୁ ସଂଖ୍ୟକ ପ୍ରବାସୀ ଭାରତୀୟଙ୍କୁ ତାଲିମ କରାଯାଉଥିଲା।" (ପୃଷ୍ଠା - ୧୪୦-୧୪୧)

ଓଡ଼ିଶା ଇତିହାସ ଓ ଐତିହ୍ୟକୁ ନେଇ ପୂର୍ବୋକ୍ତ ଉପନ୍ୟାସଗୁଡ଼ିକ ଲେଖିବା ପରେ ଡାକ୍ତର ବିକ୍ରମ ଦାସ ଆଉ କେତୋଟି ଲଘୁ ଉପନ୍ୟାସ ରଚନା କରିଛନ୍ତି, 'ମୁଁ ଦଶରଥ' ଓ 'ମୁଁ ବେଦବ୍ୟାସ' ପୁସ୍ତକ ଦ୍ୱୟରେ ସେ ଯଥାକ୍ରମେ 'ରାମାୟଣ' ଓ 'ମହାଭାରତ'ର ବିଷୟବସ୍ତୁକୁ ଆତ୍ମକଥନ ଶୈଳୀରେ ଉପସ୍ଥାପନ କରି ପୁରାଣ ଗ୍ରନ୍ଥକୁ ଉପନ୍ୟାସ ରୂପ ଦେବାରେ ସଫଳ ହୋଇଛନ୍ତି।

ଲେଖକଙ୍କ ପିତା ପଣ୍ଡିତ ନୀଳକଣ୍ଠ , ବଂଗୀୟଲେଖକ ଉପେନ୍ଦ୍ର କିଶୋରଙ୍କ 'ଛେଲେଦେର ରାମାୟଣ' ଓ 'ଛେଲେଦେର ମହାଭାରତ'କୁ ଅନୁସରଣ କରି ପିଲାଙ୍କ ପାଇଁ ସହଜବୋଧ୍ୟ ଗଦ୍ୟରେ 'ପିଲାଙ୍କ ରାମାୟଣ' ଓ 'ପିଲାଙ୍କ ମହାଭାରତ' ଲେଖି ଓଡ଼ିଆ ଶିଶୁ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିଥିଲେ। ପିତାଙ୍କ ଦ୍ୱାରା ପ୍ରଭାବିତ ହୋଇ ବିକ୍ରମ ଦାସ ମଧ୍ୟ ଭିନ୍ନ ଏକ ଗଦ୍ୟଶୈଳୀରେ ରାମାୟଣ ଓ ମହାଭାରତର କଥାବସ୍ତୁ 'ମୁଁ ଦଶରଥ' ଓ 'ମୁଁ ବେଦବ୍ୟାସ' ଗ୍ରନ୍ଥଦ୍ୱୟରେ ପରିବେଷଣ କରିଛନ୍ତି। "ରାମାୟଣ' ଓ 'ମହାଭାରତ' ପୁରାଣଦ୍ୱୟରେ ଦେବତାଙ୍କଠାରେ ମାନବିକତାର ଯେଉଁ ପରିପ୍ରକାଶ ଘଟିଛି ତାହାରି ବିଶ୍ଳେଷଣ କରି ଲେଖକ ଭିନ୍ନସ୍ୱାଦର ଉପନ୍ୟାସ ଦୁଇଟି ରଚନା କରିଛନ୍ତି।

ପୁରାଣରେ ମୁନି, ଋଷିଙ୍କ ମୁଖରେ କିମ୍ବା ଦେବଦେବୀଙ୍କ ମୁଖରେ ପ୍ରାରମ୍ଭରୁ ସୃଷ୍ଟି ତତ୍ତ୍ୱବ୍ୟାଖା କରାଯାଇଥାଏ। କିନ୍ତୁ ଆଲୋଚ୍ୟ ଉପନ୍ୟାସରେ ଚରିତ୍ର ମୁଖରେ ହିଁ ସୃଷ୍ଟି ତତ୍ତ୍ୱର କଥା କୁହାଯାଇଛି। ଯେପରି 'ମୁଁ ଦଶରଥ'ରେ ଦଶରଥ ନିଜେ କହୁଛନ୍ତି - "ଶୂନ୍ୟରେ ଉଡ଼ି ବୁଲୁଥିବା ନିରାକାର ବାଷ୍ପପିଣ୍ଡରୁ ହିଁ ପୃଥିବୀର ଉତ୍ପତ୍ତି। ଜୀବଜନ୍ତୁ ଉଦ୍ଭିଦ ଏପରିକି ଜୀବହୀନ ପଦାର୍ଥ ସୁଦ୍ଧା ସବୁ ସେହି ବାଷ୍ପପିଣ୍ଡରୁ ଜାତ। × × × ଥରକୁ ଥର ରୂପ ବଦଳାଇ ବିଭିନ୍ନ ରୂପ ନେବା ବା ସେହି ରୂପରେ ପୁଣି ଆବିର୍ଭାବ ହେବାହିଁ ଆତ୍ମାର ଗତି। ମୋର ଆତ୍ମା ଯୁଗ ଯୁଗ ଧରି ଉଡ଼ି ବୁଲୁଥିଲା। ଅଧିକାଂଶ ସମୟରେ ମୁଁ ଥିଲି ସ୍ୱର୍ଗୀୟ ମାର୍ଗରେ। ସେହି ମାର୍ଗରୁ ଓହ୍ଲାଇ ବହୁଥର ମୋର ଆତ୍ମା ମର୍ତ୍ତ୍ୟରେ ରୂପ ନେଇସାରି ପୁଣି ଫେରିଆସିଛି ମୋର ଶୂନ୍ୟସ୍ଥାନକୁ।"

'ମୁଁ ଦଶରଥ'ରେ ଏହିପରି ଭାବେ ଔପନ୍ୟାସିକ ଦଶରଥଙ୍କ ସ୍ମୃତିରୁ ସମଗ୍ର ରାମାୟଣର ବିଷୟକୁ ଅଠର ଗୋଟି ଅଧ୍ୟାୟରେ ପରିବେଷଣ କରିବା ପରେ ଶେଷରେ ଦଶରଥଙ୍କ ଆତ୍ମତୃପ୍ତି ଓ ମୁକ୍ତି ଆକାଂକ୍ଷାକୁ ତାଙ୍କରି ମୁଖରେ ବ୍ୟକ୍ତ କରାଇ ଉପନ୍ୟାସଟି ସମାପ୍ତ କରିଛନ୍ତି।

'ମୁଁ ବେଦବ୍ୟାସ'ରେ ଲେଖକ 'ମହାଭାରତ'ର ସ୍ରଷ୍ଟା ବେଦବ୍ୟାସଙ୍କୁ ଚରିତ୍ରଭୂତ କରାଇ ତାଙ୍କରି ମୁଖରେ 'ମହାଭାରତ'ର କଥାବସ୍ତୁକୁ ସାଂପ୍ରତିକ ସାମାଜିକ ଓ ରାଜନୈତିକ ପୃଷ୍ଠଭୂମିରେ ପରିପ୍ରେକ୍ଷୀରେ ବ୍ୟାଖା କରି ସଫଳ ହୋଇଛନ୍ତି।

ପୌରାଣିକ ଭିତ୍ତିଭୂମି ଉପରେ ଏକ ବାସ୍ତବଚିତ୍ର ଅଙ୍କନ କରି ବିକ୍ରମ ଦାସ ଲେଖିଛନ୍ତି, "ସ୍ୱପ୍ନର ପାଞ୍ଚାଳି" ଉପନ୍ୟାସ। ଏଥିରେ ସେ ଦ୍ରୌପଦୀଙ୍କ ବହୁପତି ବରଣ ସହ ସାଂପ୍ରତିକ ଭାରତୀୟ ସମାଜର ପ୍ରଚଳିତ ବହୁବିବାହ ପ୍ରଥାର ତୁଳନା କରି ଭାରତ ବିଭାଜନ ସମୟର ଏକ କରୁଣ ଚିତ୍ର ପ୍ରଦାନ କରିଛନ୍ତି। ତାଙ୍କର ଯୁକ୍ତିରେ 'ମହାଭାରତ' ବର୍ଣ୍ଣିତ ଯାବତୀୟ ସଂସ୍କୃତି ଓ ଆଚାର ବ୍ୟବହାର ଏବେ ବି ଭାରତର ବିଭିନ୍ନ ସ୍ଥାନରେ ରହିଛି। ହିମାଳୟ ବକ୍ଷରେ ବିରାଜ କରୁଥିବା କେତେକ ରାଜ୍ୟରେ ଏବେ ବି ଗୋଟିଏ ସ୍ତ୍ରୀର ବହୁ ସ୍ୱାମୀ ଗ୍ରହଣ କରିବା ପ୍ରଥା ରହିଛି। ଏଇ ଅଞ୍ଚଳରେ ବାସ କରୁଥିବା ଲୋକମାନେ "ଯେତେଭାଇ ସେତେ ଘର, ଯେତେ କନିଆଁ ସେତେ ବର"- ଉକ୍ତିରେ ବିଶ୍ୱାସ ରଖନ୍ତି ନାହିଁ। କାରଣ ସେମାନଙ୍କୁ ହିମାଳୟର ଗଡ଼ାଣିଆ ଅଞ୍ଚଳକୁ ସମତଳ କରି କାଟି ଛୋଟ ଛୋଟ ଚାଷ ଜମି ପ୍ରସ୍ତୁତ କରିବାକୁ ପଡ଼ିଥାଏ। ଗୋଟିଏ ପରିବାରର ସୀମିତ ଚାଷ ଜମି ଥାଏ। ଭାଇମାନେ ଅଲଗା ଅଲଗା ଘର କଲେ ଏଇ ଚାଷ ଜମି ବଣ୍ଟନରେ ବାଧା ଉପୁଜେ। ଗୋଟିଏ ପରିବାରର ସବୁ ଭାଇଙ୍କ ପାଇଁ ଗୋଟିଏ ମାତ୍ର ସ୍ତ୍ରୀ ରହିଲେ ଭାଇମାନେ ସବୁଦିନ ପାଇଁ ବାନ୍ଧି ହୋଇ ରହିବେ। ଏ କଥା ଉପନ୍ୟାସର ନାୟକ କାଶ୍ମୀରବାସୀ କେଶୋସିଂହର ମୁଖରେ ପ୍ରକାଶ ପାଇଛି- "ମୁଁ ବାହା ନ ହେଲେ କଅଣ ହେଲା ? ମୋ ବଡ଼ ଭାଇତ ବାହା ହୋଇଛନ୍ତି, ସେ ସ୍ତ୍ରୀଟି ଆମ ସବୁ ଭାଇଙ୍କର, ତା ପିଲା ସବୁ ଆମ ସମସ୍ତଙ୍କର", (ପୃଷ୍ଠା-୧୯)। ଉପନ୍ୟାସର ପଣ୍ଡିତ ମହାଶୟଙ୍କ ଭାଷାରେ- "ଆମ କେଶୋ ଜଣେ ଏ ଯୁଗର ପାଞ୍ଚାଳିଙ୍କ ପତି। ସେ ମଧ୍ୟମ ପାଣ୍ଡବ ଅର୍ଜୁନ।" (ପୃଷ୍ଠା -୨୦)

ଆଲୋଚ୍ୟ ଗ୍ରନ୍ଥରେ ଲେଖକ ଦ୍ରୌପଦୀଙ୍କ ବହୁପତି ବରଣକୁ ଏକ ସାମାନ୍ୟ ସ୍ୱାର୍ଥାନ୍ୱେଷୀ ସାମାଜିକ ବନ୍ଧନ ଭାବେ ଗ୍ରହଣ ନ କରି ଆଧ୍ୟାତ୍ମିକ ଜୀବନର ଆଧାର ଭାବେ ଗ୍ରହଣ କରିଛନ୍ତି। ତେଣୁ ସେ ପଣ୍ଡିତଙ୍କ ମୁଖରେ କୁହାଇଛନ୍ତି- "ପାଞ୍ଚାଳିଙ୍କୁ ପ୍ରକୃତି ସହିତ ତୁଳନା କରାଯାଇ ପାଞ୍ଚ ପାଣ୍ଡବଙ୍କୁ ପଞ୍ଚେନ୍ଦ୍ରିୟ ବା ପଞ୍ଚପୁରୁଷ ସଙ୍ଗେ ତୁଳନା କରାଯାଇଛି।

ସେମାନଙ୍କ ମିଳନରେ ପ୍ରକୃତି ଓ ପୁରୁଷର ମିଳନ ହୋଇ ପରସ୍ପର ଭିତରେ ସ୍ୱର୍ଗୀୟ ପ୍ରେମର ବନ୍ଧନ ସ୍ଥାପିତ ହୋଇ ପାରିଥିଲା।" ( ପୃଷ୍ଠା - ୨୪)

କଳିଯୁଗର ପାଞ୍ଚାଳି ଭାବେ ଲେଖକ କେଶୋ ସିଂ ଭାଇମାନଙ୍କ ପତ୍ନୀ ରମାର ଅସହାୟ ଅବସ୍ଥା ବର୍ଣ୍ଣନା କରିଛନ୍ତି। ସେ କିପରି ଦଙ୍ଗାରେ ତା'ର ସ୍ୱାମୀମାନଙ୍କୁ ହରାଇଛି, ତା'ର ଦୁଇ କନ୍ୟା ଓ ତିନି ପୁତ୍ର କିପରି ପାକିସ୍ତାନୀ ସୈନ୍ୟଙ୍କ ନାରକୀୟ ପାଶବିକତାର ଶିକାର ହୋଇଛନ୍ତି ତାହାର କରୁଣ ଚିତ୍ର ଉପନ୍ୟାସଟିରେ ପରିଲକ୍ଷିତ। ସ୍ୱାମୀହରା ଓ ସନ୍ତାନ ହରା ରମାର ଅବସ୍ଥା ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି - "କୁରୁକ୍ଷେତ୍ର ଯୁଦ୍ଧର ଶେଷ ଯାମିନୀରେ କୌରବ ପକ୍ଷର ଅଶ୍ୱତ୍‌ଥମା ପାଣ୍ଡବଙ୍କ ଶିବିର ଭିତରେ ପଶି ପାଞ୍ଚାଳିଙ୍କ ପାଞ୍ଚ ସନ୍ତାନଙ୍କୁ ସୁପ୍ତ ଅବସ୍ଥାରେ ହତ୍ୟା କଲା ଭଳି ତା'ର ସବୁ ସନ୍ତାନ ବଳି ପଡ଼ି ସାରିଥିଲେ। ସ୍ୱାମୀମାନେ ଫେରିବାକୁ ଅଭୟ ଦେବାର ଆଶା ଆଉ ନଥିଲା।" (ପୃଷ୍ଠା - ୧୭୯)।

ସର୍ବହରା ବେସାହାରା ରମା ଶେଷରେ ନିଜକୁ ରମାଜାନ୍ ବିବି ଭାବେ ପରିଚିତ କରାଇ ତାକୁ ଆଶ୍ରୟ ଦେଇଥିବା ୟୁସୁଫ୍‌କୁ ନିଜର ପଞ୍ଚମ ସ୍ୱାମୀ ରୂପେ ଗ୍ରହଣ କରିଛି। ବିଭାଜନ ସମୟରେ ପୋଲିସ ରେକର୍ଡ଼ରେ କେଶୋସିଂର ନାମ କାଜୋର ଖାଁ ହୋଇଯାଇଛି। ସେ ବିଭିନ୍ନ ସ୍ଥାନରେ ନିଜ ପତ୍ନୀ ରମାକୁ ଖୋଜୁ ଖୋଜୁ ଶେଷରେ ବନ୍ଧୁ ୟୁସୁଫ୍‌ର ପତ୍ନୀ ଭାବେ ତାକୁ ଦେଖି ହତବାକ୍ ହୋଇଯାଇଛି। ଏହିଠାରେ ଉପନ୍ୟାସଟି ଶେଷ ହୋଇଛି।

ଜଗନ୍ନାଥ ଧର୍ମ ଓ ଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର ପାଇଁ ପୁରୀର ଯାତ୍ରୀ ଗୁମାସ୍ତା ମାନଙ୍କ ସମର୍ପିତ ଜୀବନକୁ ଆଧାର କରି ଡାକ୍ତର ବିକ୍ରମ ଦାସ ଲେଖିଛନ୍ତି, "ଭଲେ ବିରାଜୋ ଜୀ" ଉପନ୍ୟାସ।

ବିଭିନ୍ନ ଧର୍ମରେ ଧର୍ମ ପ୍ରଚାରକମାନେ ଥିବା ପରି ଜଗନ୍ନାଥଙ୍କ ଯାତ୍ରୀ ଗୁମାସ୍ତାମାନେ ହେଉଛନ୍ତି ଜଗନ୍ନାଥ ଧର୍ମର ପ୍ରଚାରକ। ଦେହରେ ଧୋତି ଓ ଫତେଇ, ବାମ କାନ୍ଧ ଉପରେ ସତରଞ୍ଜି, ସତରଞ୍ଜି ଉପରେ ଦୁଇଟି ଥଳି ବନ୍ଧା ହୋଇଥିବା ଖାଡ଼ିଆ, ଡାହାଣ କାନ୍ଧ ଉପରେ ଗାମୁଛା, ମୁଣ୍ଡରେ ଚାଦରର ଠେକା- ଏହା ହେଉଛି ପୁରୀର ଯାତ୍ରୀ ଗୁମାସ୍ତାମାନଙ୍କ ସ୍ୱତନ୍ତ୍ର ବେଶ।

ଭାରତରେ ଇଂରେଜ ଶାସନ ଚାଲିଥିବା ସମୟରେ ଖ୍ରୀଷ୍ଟଧର୍ମ ପ୍ରଚାରକ ପାଦ୍ରୀମାନେ ବିଦେଶର ବଡ଼ ବଡ଼ ସଂସ୍ଥାମାନଙ୍କ ପୃଷ୍ଠପୋଷକତାରେ ଭାରତ ଆସି ବିଭିନ୍ନ ଉପାୟରେ ଭାରତବାସୀଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଉଥିଲେ। ସେମାନେ ଯେଉଁ ସ୍ଥାନକୁ ଯାଉଥିଲେ ସେ ସ୍ଥାନର ଭାଷା, ଇତିହାସ, ସଂସ୍କୃତି ବିଷୟରେ ଅଧ୍ୟୟନ କରୁଥିଲେ। ରଥଯାତ୍ରା ପ୍ରଭୃତି ଯାନିଯାତ୍ରା ସମୟରେ ଲୋକ ସମାଗମ ଦେଖି ଖ୍ରୀଷ୍ଟଧର୍ମ ପ୍ରଚାର ପୁସ୍ତକମାନ ବାଣ୍ଟୁଥିଲେ। ବିଭିନ୍ନ ସ୍ଥାନରେ ବିଦ୍ୟାଳୟ ଓ ସେବାସଂସ୍ଥାଦି ସ୍ଥାପନ ପୂର୍ବକ

ଆମ ଦେଶବାସୀଙ୍କୁ ସେମାନଙ୍କ ଧର୍ମ ପ୍ରତି ଆକୃଷ୍ଟ କରୁଥିଲେ। ଆମ ଲୋକମାନେ ସେମାନଙ୍କ କଥାରେ ଭଳି ଗଣ୍ଡିଏ ଭଲ ଖାଇ କେତେକ ବିଶେଷ ସୁବିଧା ପାଇଁ ପାଇଁ ହିନ୍ଦୁ ଧର୍ମ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣ କରୁଥିଲେ।

ଏହି ଧର୍ମାନ୍ତରଣୀକରଣକୁ ରୋକିବା ପାଇଁ ଶ୍ରୀ ଜଗନ୍ନାଥଙ୍କ ପଣ୍ଡାମାନେ ଯାତ୍ରୀ ଗୁମାସ୍ତାମାନଙ୍କୁ ଦେଶ ବିଦେଶର ବିଭିନ୍ନ ସ୍ଥାନକୁ ପଠାଉଥିଲେ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର କରିବା ପାଇଁ। ସେମାନେ ସେ ସ୍ଥାନ ମାନଙ୍କରେ ଜଗନ୍ନାଥ ଧର୍ମର ମହତ୍ତ୍ୱ ସମ୍ପର୍କରେ ବୁଝାଇ ସେମାନଙ୍କୁ ଜଗନ୍ନାଥ ଦର୍ଶନ ଲାଗି ନିମନ୍ତ୍ରଣ କରୁଥିଲେ ଏବଂ ସେମାନଙ୍କଠାରୁ ଠାକୁରଙ୍କ ଲାଗି ଦାନ ଗ୍ରହଣ କରୁଥିଲେ।

ସେ ସମୟରେ ଦେଶ ଭ୍ରମଣ ଲାଗି କୌଣସି ଯାନ ବାହନ ପ୍ରଚଳନ ନ ଥିବାରୁ ଯାତ୍ରୀ ଗୁମାସ୍ତାମାନଙ୍କୁ ଚାଲି ଚାଲି ଯିବାକୁ ପଡୁଥିଲା। କେବେ କେବେ ସେମାନେ ଡକାୟତ ବା ହିଂସ୍ରଜନ୍ତୁଙ୍କ ହାବୁଡ଼ରେ ପଡ଼ି ମୃତ୍ୟୁମୁଖରେ ପଡୁଥିଲେ ତ କେବେ ବିଦେଶକୁ ଯାଇ ଆଉ ଫେରୁ ନଥିଲେ। ଏ ସମ୍ପର୍କରେ ଔପନ୍ୟାସିକ ଲେଖିଛନ୍ତି- "ପୂର୍ବକାଳରେ ଏ ବ୍ୟବସାୟରେ ଯେଉଁମାନେ ଜଗନ୍ନାଥ ଧର୍ମ ପ୍ରଚାର କରି ପୁରୀକୁ ଯାତ୍ରୀ ଆଣିବାକୁ ଯାଉଥିଲେ, ସେଥିରୁ ଅନେକ ଆଉ ଦେଶକୁ ଫେରି ପାରୁନଥିଲେ। ତେଣୁ ଯେଉଁମାନେ ବାରବର୍ଷରୁ ବେଶୀକାଳ ବିଦେଶରେ ରହି ଆଉ ଦେଶକୁ ଫେରି ପାରୁନଥିଲେ, ସେମାନଙ୍କୁ ମୃତ ବୋଲି ଧରି ନେଇ ପଳାଶ ପତ୍ର ଦାହ କରି ସେମାନଙ୍କର ଶୁଦ୍ଧକ୍ରିୟା ସମ୍ପନ୍ନ କରାଯାଉଥିଲା।" ( ଭଲେ ବିରାଜୋ ଜୀ ପୃଷ୍ଠା -୩)

ଆଲୋଚ୍ୟ ଉପନ୍ୟାସରେ ଲେଖକ ବିକ୍ରମ ଦାସ ଭଲ ପାଠ ପଢ଼ି ସଂସ୍କୃତ ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭ କରିଥିବା ଚିନ୍ମୟ ମିଶ୍ର କିପରି ଘଟଣାଚକ୍ରରେ ପଡ଼ି ଯାତ୍ରୀ ବ୍ୟବସାୟରେ ଜଡ଼ିତ ହେଲେ, ପୁଣି ଡାକୁମାନଙ୍କ ଦ୍ୱାରା ଅପହୃତ ହୋଇ ଚଣ୍ଡିପାଠ କରୁ କରୁ କିପରି ପୁରାଣ ପଣ୍ଡିତ ଓ ସନ୍ୟାସୀଭାବେ ପରିଚିତ ହେଲେ, ଏବଂ ଶେଷରେ ସାଧୁ ରମ୍ୟାନନ୍ଦ ସନ୍ୟାସୀଙ୍କଠାରୁ ଜୀବନର ସାରସତା ବୁଝି ପୁଣି ଗୃହ ପ୍ରତ୍ୟାଗମନ କରି ଗାର୍ହସ୍ଥ୍ୟ ଜୀବନ ଅତିବାହିତ କଲେ ତାହାର ଏକ ଚମତ୍କାର ଆଲେଖ୍ୟ ପ୍ରଦାନ କରିଛନ୍ତି।

ବିକ୍ରମ ଦାସଙ୍କ ରଚିତ "ତିନି ପିଢ଼ିର ହୋଟେଲ" ଉପନ୍ୟାସଟି ସତ୍ୟ ଘଟଣା ଉପରେ ଆଧାରିତ। ଏଥିରେ କଲିକତାରେ ଥିବା ଓଡ଼ିଆମାନଙ୍କୁ କିପରି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଜୀବିକା ନିର୍ବାହ କରିବାକୁ ପଡ଼ିଥାଏ ତାହା ବର୍ଣ୍ଣିତ। ସେହିପରି ତାଙ୍କ ରଚିତ 'ଅକଲ ଗୁଡୁମ୍' ଉପନ୍ୟାସରେ ଆଧୁନିକ ମଣିଷର ଉଚ୍ଛୃଙ୍ଖଳତା ଓ ସମାଜ ଉପରେ ତାହାର କୁ ପ୍ରଭାବ ନିଖୁଣ ଚିତ୍ର ଦେଖିବାକୁ ମିଳେ।

ଡାକ୍ତର ବିକ୍ରମ ଦାସ ଦେଶ ବିଦେଶ ଭ୍ରମଣ କରି ଯେଉଁ ଅନୁଭୂତି ଓ ଅଭିଜ୍ଞତା ହାସଲ କରିଥିଲେ ତାହାକୁ ଆଧାର କରି ଲେଖିଛନ୍ତି, "ସେପଟ ଦୁନିଆଁ", "ଚିର ବସନ୍ତର ଦେଶ ମରିମସ୍" ଓ "ଲହୁ ଲୁହର କାଶ୍ମୀର" । ଭ୍ରମଣ ଜନିତ ଅଭିଜ୍ଞତା ସମ୍ପର୍କରେ ସେ କହନ୍ତି - "ସବୁ ଅଭିଜ୍ଞତା ଠାରୁ ଭ୍ରମଣ ଅଭିଜ୍ଞତା ସ୍ୱତନ୍ତ୍ର । 'ଯେ ଦେଶକୁ ଯାଇ ସେ ଫଳ ଖାଇ' । ବିଭିନ୍ନ ଦେଶର ଭିନ୍ନ ଭିନ୍ନ ଆଚାର ବ୍ୟବହାର ଚାଲି ଚଳଣ ସମ୍ପର୍କରେ ଆସିଲେ ଭିନ୍ନ ସ୍ୱାଦର ଅଭିଜ୍ଞତା ମିଳେ ।" 'ସେପଟ ଦୁନିଆ' ଗ୍ରନ୍ଥରେ ଲେଖକଙ୍କ ୟୁରୋପ ଓ ଆମେରିକ ଭ୍ରମଣଜନିତ ଅନୁଭୂତି ପ୍ରକାଶ ପାଇଛି । ସେ ଦେଶମାନଙ୍କର ଲୋକ ଚରିତ୍ର ସାମାଜିକ ସ୍ଥିତି ଓ ପାକୃତିକ ଦୃଶ୍ୟାବଳି ଏଥିରେ ନିଖୁଣ ଭାବେ ଚିତ୍ରିତ ହୋଇଛି । "ଚିର ବସନ୍ତର ଦେଶ ମରିସସ୍"ରେ ଦକ୍ଷିଣ ଗୋଲାର୍ଦ୍ଧର ସ୍ୱାଧୀନ ଦ୍ୱୀପ ମରିସସ୍ ସ୍ୱର୍ଗୀୟ ପ୍ରକୃତିର ସୁନ୍ଦର ବର୍ଣ୍ଣନା ରହିଛି । କ୍ଷୁଦ୍ର ଆୟତନ ବିଶିଷ୍ଟ ମରିସସ୍ ରାଜ୍ୟଟି ଭାରତ ମହାସାଗରର ଶେଷ ଭାଗରେ ମକର କ୍ରାନ୍ତି ଉପରେ ଅବସ୍ଥିତ । ସେ ଦେଶର ସମଶୀତୋଷ୍ଣ ଜଳବାୟୁ ସମ୍ପର୍କରେ ଲେଖକ କହନ୍ତି- "ସେ ଦେଶର ଉତ୍ତାପ ୨୫ ରୁ ୩୦ ଡିଗ୍ରୀ ଫାରେନ୍‌ହିଟ୍ ହୁଏ । ଦେଶର ସର୍ବଦା ସମୁଦ୍ର ବକ୍ଷରୁ ଆସୁଥିବା ମଳୟ ପବନ ବୋହୁଥାଏ, ଶୀତଦିନେ ପାଖ ସମୁଦ୍ରର ଉତ୍ତାପ ୨୨ ଡିଗ୍ରୀ ଓ ଖରାଦିନେ ୨୭ ଡିଗ୍ରୀ ଥାଏ । ଖରାଦିନେ ଉତ୍ତାପ ଟିକିଏ ବଢ଼ିବା ସଙ୍ଗେ ସଙ୍ଗେ ବର୍ଷା ହୋଇ ଜଳବାୟୁ ଥଣ୍ଡା ହୋଇଯାଏ । ତେଣୁ ମରିସସ୍‌କୁ "ଚିର ବସନ୍ତର ଦେଶ" ବୋଲି କୁହାଯାଏ । (ପୃଷ୍ଠା-୧୫)

ମରିସସ୍‌ରେ ଗ୍ରାଣ୍ଡବେ ନାମକ ସ୍ଥାନରେ ଅଣ୍ଡରୱାଟର ଲିମିଟେଡ୍ କମ୍ପାନୀ ଦ୍ୱାରା ପର୍ଯ୍ୟଟକ ମାନଙ୍କୁ ପାଣି ଭିତରକୁ ନେଇ ସମୁଦ୍ର ଚଟାଣରେ ଜୀବନ୍ତ ପ୍ରବାଳ, ବିଭିନ୍ନ ରଙ୍ଗ ଓ ପ୍ରଜାତିର ମାଛ ଓ ଜଳଜନ୍ତୁମାନଙ୍କୁ ଦେଖାଇବାର ବ୍ୟବସ୍ଥାକୁ ଲେଖକ ଭୂରି ଭୂରି ପ୍ରଶଂସା କରିଛନ୍ତି । ସେ ପୁଣି ଦକ୍ଷିଣ ଗୋଲାର୍ଦ୍ଧର ବୃହତ୍ତମ ବଟାନିକାଲ ଗାର୍ଡନ ଏବଂ ପର୍ବତ ଘେରା ବୃହତ୍ ପରୀ ତଳାଉର ଦୃଶ୍ୟାବଳି ଦେଖି ବିମୋହିତ ହୋଇଛନ୍ତି । ପରୀ ତଳାଉ ସମ୍ପର୍କରେ ସେ ଲେଖିଛନ୍ତି - "ତା'ର ନାମ ପରୀ ତଳାଉ, ସେଠାରେ ସ୍ୱର୍ଗରୁ ପରୀମାନେ ଆସି ଜଳକ୍ରୀଡ଼ା କରନ୍ତି । ଗଙ୍ଗାରୁ ପବିତ୍ର ଜଳ ଆସି ସେଠାରେ ମିଶିଥିବାରୁ ମରିସସ୍ ଲୋକେ ତାକୁ ଅତି ପବିତ୍ର ମନେ କରି ତା'ର ନାମ 'ଗଙ୍ଗାତଳାଉ' ରଖିଛନ୍ତି । (ପୃଷ୍ଠା - ୪୫)

ଇଂରାଜୀ ଭାଷାରେ ଏହି ପରୀ ତଳାଉର ନାମ ଗ୍ରାଣ୍ଡବେସିନ୍ । ୧୨୫୦ ଏକର ବ୍ୟାପି ମିଠାପାଣିର ହ୍ରଦଟି ଏକ ବିରାଟ ଜଳଭଣ୍ଡାର ରୂପେ ବ୍ୟବହାର କରାଯାଏ ।

ମରିସସ୍‌ରେ ବାସ କରୁଥିବା ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟଧର୍ମାବଲମ୍ବୀ ଭାରତବାସୀଙ୍କ ଐକ୍ୟ ବୋଧ ଓ ଜାତୀୟଭାବ ଦେଖି ଲେଖକ ମୁଗ୍ଧ ହୋଇ ଲେଖିଛନ୍ତି-

"ତେଣୁ ଏକ ସ୍ଥାନରେ ଗୀର୍ଜା, ମସଜିଦ୍ ଓ ମନ୍ଦିର ରହିବାର କୌଣସି ଅସୁବିଧା ହୁଏ ନାହିଁ। ସେହି କାରଣରୁ ମରିସସ୍‌ରେ ଭାରତୀୟ ଭାବ ଓ ଚଳଣି କେବଳ ବଞ୍ଚି ରହିନାହିଁ, ତାହା ସୁସ୍ଥ ଓ ସବଳ ରହି ଅଭିବୃଦ୍ଧି ସାଧନ କରିଛି।" (ପୃଷ୍ଠା - ୫୦)

'ଲହୁ ଲୁହର କାଶ୍ମୀର' - ବିକ୍ରମ ଦାସଙ୍କ ରଚିତ ଏ ଗ୍ରନ୍ଥଟିରେ ସମସ୍ୟା ବହୁଳ କାଶ୍ମୀରର ଇତିହାସ ସମ୍ବନ୍ଧରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପରିବେଷିତ ହୋଇଅଛି। କାଶ୍ମୀରର ଆଦିମ ଇତିହାସ ସମ୍ପର୍କରେ ଲେଖକ କହନ୍ତି- "ପ୍ରତ୍ନତାତ୍ତ୍ୱିକ ଖନନରୁ କାଶ୍ମୀର ଉପତ୍ୟକାରେ ଖ୍ରୀ:ପୂ: ଦୁଇ ହଜାର ବର୍ଷ ତଳର ସଭ୍ୟତାର ଆଭାସ ମିଳିଛି। 'ନାଗା', ବା ପତିତ ଆର୍ଯ୍ୟ ନାମକ ଏକ ଜାତି ପଶ୍ଚିମ ଅଞ୍ଚଳରୁ ଆସି ଏ ରାଜ୍ୟରେ ପୁରାତନ ଅଧିବାସୀ ଭାବେ ପ୍ରତିଷ୍ଠା ଲାଭ କରିଥିଲେ। ପରେପରେ ଯେଉଁ କେତେକ ଆଦିମ ଜାତି ସେଠାକୁ ଆସୁଥିଲେ, ସେମାନଙ୍କ ଭିତରେ ଖାସି, ଦର, ଡମ, ଭୁଟା, ନିଷାଦ, ତାନ୍ତ୍ରିଙ୍ଗ ପ୍ରଭୃତି ପ୍ରଧାନ। (ପୃଷ୍ଠା-୪)

ଏ ପୁସ୍ତକରେ ଲେଖକ ଖ୍ରୀ ୧୧୪୮ ରୁ ୧୧୫୦ ଭିତରେ କାଶ୍ମୀର କବି କାଲାହାନ୍ (କହ୍ଲଣ)ଙ୍କ ମହାକାବ୍ୟ 'ରାଜ ତରଙ୍ଗିଣୀ'ରେ ବର୍ଣ୍ଣିତ ୮ମ ଶତାବ୍ଦୀ ଠାରୁ ପୁରାତନ କାଶ୍ମୀରର ସାମାଜିକ ସ୍ଥିତି ଓ ଆର୍ଥିକ ପରିସ୍ଥିତି ସମ୍ପର୍କରେ ସୂଚନା ଦେଇଛନ୍ତି। କାଶ୍ମୀରରେ ରାଜତନ୍ତ୍ର ପ୍ରତିଷ୍ଠା, ଖ୍ରୀ ୧୯୩୮-୩୯ର ଜନ ଆନ୍ଦୋଳନ ଓ ନ୍ୟାସନାଲ କଂଗ୍ରେସ, ଭାରତ ସମ୍ବିଧାନର ୩୭୦ ଧାରା ଓ ୧୯୫୨ର ଦିଲ୍ଲୀ- ରାଜିନାମା, କାଶ୍ମୀର ସ୍ୱତନ୍ତ୍ର ସମ୍ବିଧାନରେ କାଶ୍ମୀରବାସୀ ଭାରତ ଓ କାଶ୍ମୀର ଦୁଇ ଦେଶର ନାଗରିକ ହେବାର ସୁବିଧା ଲାଭ କରିବା ଶେଖ ଅବଦୁଲ୍ଲାଙ୍କ ଭାରତ ବିରୋଧୀ ଷଡ଼ଯନ୍ତ୍ର ଏବଂ ୧୯୫୩ ମସିହାରେ ସେ ଗାଦିଚ୍ୟୁତ ହୋଇ ବକ୍ସି ଗୋଲାମ ମହମ୍ମଦ ପ୍ରଧାନ ମନ୍ତ୍ରୀ ହେବା। ଖ୍ରୀ: ୧୯୬୫ ମେ ମାସ ୩୦ ତାରିଖରେ କାଶ୍ମୀର ସମ୍ବିଧାନରେ ପରିବର୍ତ୍ତନ ଅଣାଯାଇ ସଦର୍-ଇ-ରିଆସତ୍ ପଦକୁ ରାଜ୍ୟପାଳ ଓ ପ୍ରଧାନମନ୍ତ୍ରୀ ପଦକୁ ମୁଖ୍ୟମନ୍ତ୍ରୀ ପଦରେ ବଦଳାଇ ଦିଆଯିବା ଆଦି ବହୁ ତଥ୍ୟ ଏ ପୁସ୍ତକରେ ଉପସ୍ଥାପନ କରାଯାଇଛି।

ଅବସର ସମୟରେ ଡାକ୍ତର ବିକ୍ରମ ଦାସ ଯେଉଁ ସବୁ କବିତା ଲେଖିଥିଲେ ତାହା ଏକତ୍ର ସଙ୍କଳିତ ହୋଇ 'ଚଉରାଅଶୀ କବିତା' ଶୀର୍ଷକ ପୁସ୍ତକରେ ଖ୍ରୀ: ୧୯୯୬ରେ ପ୍ରକାଶ ପାଇଛି। ଏହି କବିତା ପୁସ୍ତକର ମୁଖବନ୍ଧରେ ଜ୍ଞାନପୀଠ ପୁରସ୍କାର ବିଜେତା କବି ସଚ୍ଚିଦାନନ୍ଦ ରାଉତରାୟ କହନ୍ତି- "ବିକ୍ରମ ଦାସଙ୍କ କବିତା ଗୁଡ଼ିକ ମାନବଧର୍ମୀ ଓ ତାଙ୍କ ନୈତିକ ଦୃଷ୍ଟି କୋଣର ପରିପ୍ରକାଶ। × × × ଆମ ଦୂଷିତ ଓ ବାଧିତ ସମାଜର ଭ୍ରଷ୍ଟତା ଓ ଭଣ୍ଡାମି ତାଙ୍କ କବିତାର କାଠଗଡ଼ା ଭିତରେ ଭୟତ୍ରସ୍ତ ଆସାମୀ ପରି ଠିଆ ହୋଇଛନ୍ତି। ସେମାନଙ୍କ ବିଚାରକ ଏ ଦେଶର ଗଣ ଦେବତା। କବି ହିଁ ସେଠି ମୁଖ୍ୟ ଅଭିଯୋକ୍ତା।"

ଉଦାହରଣ ସ୍ୱରୂପ ତାଙ୍କ ରଚିତ ଗୋଟିଏ କବିତା ଠାରେ ଉଲ୍ଲେଖ କରାଯାଇପାରେ। କବିତାର ଶୀର୍ଷକ 'ଉଭା ହୁଅ ସବ୍ୟସାଚୀ'।

## ଉଭାହୁଅ ସବ୍ୟସାଚୀ

ପଥ ବନ୍ଧୁର ! ଘୋର ଅନ୍ଧାର
ପିଶାଚ କରଇ ନାଚ;
ନେତା 'ମହାକାଳ' ଜାତି ଦୁର୍ବଳ
ଶକୁନି ରଚଇ ହାସ।
ଅଣୁ ବୋମା ଫୁଟେ ପଶ୍ଚିମ ପଟେ
ପୂରୁବେ 'ଚୀନା'ର ଖେଳ;
ଅରୁଣାଞ୍ଚଳେ ପାଦ୍ରୀର ମେଳେ
ଶୁଭଇ ଅଶୁଭ ଗୋଳ।
କାହିଁ ସଂସ୍କୃତି କାହିଁ ଜାଗୃତି
ମୂଢ଼ ଦେଶ ନେତା ଆଜି;
ସତ୍ୟର ପନ୍ଥା ଘୃଣ୍ୟ ଏ ଦେଶେ
ପଡ଼ିଛି ଖେଳର ବାଜି।
ମନ୍ତ୍ରୀର ଦଳ ଅକ୍ଷମ ଖଳ
କ୍ଷମତା ନିଶାରେ ଭାସି;
ଉତ୍କଳ ବୁକେ ତାଣ୍ଡବ ରଚେ
ପଡ଼ୋଶୀ ଶୋଷକ ଆସି।
ଦେଶସନ୍ତାନ ଘରେ ହୀନିମାନ
ବାହାରେ ତା' ମାନ କାହିଁ;
ଦେଶେ ଦୁର୍ଭିକ୍ଷ ବେପାରୀ ଯକ୍ଷ
ମରେ ସେ ବିପଣି ଚାହିଁ।
ନିର୍ଭୀକ ବୀର କିମ୍ପାଇ ସ୍ଥିର
ରହିଛ କିଂପାଇ ଲୁଚି;
ଦୁର୍ଦ୍ଦିନବେଳେ ଘନ ଅନ୍ଧାରେ
ଉଭାହୁଅ ସବ୍ୟସାଚୀ।

**୪୩୬, ଶହୀଦନଗର, ଭୁବନେଶ୍ୱର**

# ଗୁରୁଣାଂ ଗୁରୁ

## ପ୍ରଫେସର (ଡାକ୍ତର) ନିରଞ୍ଜନ ତ୍ରିପାଠୀ

ଗୁରୁଣାଂ ଗୁରୁ ପ୍ରଫେସର ବିକ୍ରମ ଦାସ ଓଡ଼ିଶା ତଥା ଭାରତର ବୌଦ୍ଧିକ ଜଗତର ପ୍ରଣମ୍ୟ ପୁରୁଷ। ନିଜର ଆଜୀବନ ସାଧନା, ବିଦ୍‌ବତ୍ତା, ସ୍ୱାଭିମାନ, ସଦାଚାର, ଛାତ୍ରବତ୍ସଳତା, ଓଡ଼ିଆ ଭାଷା, ସାହିତ୍ୟ ଓ ଇତିହାସରେ ଏନ୍‌ସାଇକ୍ଲୋପିଡିକ୍ ମେମୋରି, ଡାକ୍ତରୀଶାସ୍ତ୍ର ବିଶେଷ କରି ନିଦାନ ବିଜ୍ଞାନ ଓ ଅଣୁଜୀବ ବିଜ୍ଞାନର ଜଟିଳ ତତ୍ତ୍ୱଗୁଡ଼ିକର ସରଳୀ ବାଖ୍ୟାକରଣ ଅଧ୍ୟୟନ, ଅଧ୍ୟାପନା ବ୍ୟକ୍ତି ସ୍ୱାଧୀନତା ପ୍ରତି ଉଚ୍ଚ ମୂଲ୍ୟବୋଧ, ସର୍ବୋପରି ଉଦାର ମାନବିକତା ଓ ସାଧାରଣ ଜୀବନ ଶୈଳୀ ତାଙ୍କୁ ଜନପ୍ରିୟତାର ଚରମ ସୋପାନରେ ପହଞ୍ଚାଇପାରିଛି।

ବିକ୍ରମ ଦାସ ମେଡିକାଲ୍ ଶିକ୍ଷା ଜଗତର ଅମ୍ଳାନ ଜ୍ୟୋତିଷ୍କ ଓ ଓଡ଼ିଆ ସାହିତ୍ୟ ଜଗତର ଅନନ୍ୟ ଋଷି। ଏହି ପ୍ରତିଭାଧର ସାଧକ ଅନ୍ୱେଷା, ଏଷଣା, ପ୍ରଜ୍ଞା ଓ ପ୍ରତିଭା ବଳରେ ନୂତନ ଭାବେ ପ୍ରତିଷ୍ଠିତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମେଡିକାଲ କଲେଜ ବ୍ରହ୍ମପୁରରେ ନିଦାନ ବିଭାଗର ମୁଖ୍ୟ ରୂପେ ଦେଶର ଅନ୍ୟତମ ଶ୍ରେଷ୍ଠ ନିଦାନ ମ୍ୟୁଜିୟମ୍ ପ୍ରତିଷ୍ଠା କରି ସେଥିରେ ଦେଶବିଦେଶର ବହୁ ବିରଳ ସ୍ପେସିମେନ୍ ଉପଲବ୍ଧ କରାଇବାରେ ସକ୍ଷମ ହୋଇଥିଲେ। ଫଳରେ ଇଣ୍ଡିୟାନ୍ ମେଡିକାଲ କାଉନ୍‌ସିଲ୍ ପ୍ରଥମ ପର୍ଯ୍ୟବେକ୍ଷଣରେ ବ୍ରହ୍ମପୁର ମେଡିକାଲ କଲେଜର ନିଦାନ(ପାଥୋଲୋଜି) ଏମ୍.ଡି.କୁ ସ୍ୱୀକୃତି ଦେଇଥିଲେ। ଡିପାର୍ଟମେଣ୍ଟର ଶୃଙ୍ଖଳା, ନୀତିନିଷ୍ଠା, ମେଧାର ସ୍ୱୀକୃତି, ଗବେଷଣା, କାର୍ଯ୍ୟଦକ୍ଷତା କନିଷ୍ଠ ଶିକ୍ଷକଙ୍କ ପ୍ରତି ଶ୍ରଦ୍ଧା ତାଙ୍କୁ ଜଣେ ଉତ୍ତମ ପ୍ରଶାସକ ପ୍ରଫେସର, ଶିକ୍ଷାବିତ୍, ଜଣେ ଗବେଷକ ଓ ଦିଗ୍‌ଦର୍ଶକ ରୂପେ ପ୍ରତିଷ୍ଠିତ କରିଥିଲା। ସାହିତ୍ୟିକ ବିକ୍ରମ ଦାସ ଓଡ଼ିଆ ଭାଷା ସାହିତ୍ୟର ଅନିର୍ବାଣ ଦୀପଶିଖା। ଉପନ୍ୟାସ, ଗଳ୍ପ, କବିତା, କାବ୍ୟ, ଭ୍ରମଣ କାହାଣୀ, ଜୀବନୀ ପୁସ୍ତକ, ଆତ୍ମଜୀବନୀ, ରମ୍ୟରଚନା, ଶିଶୁ ସାହିତ୍ୟ ଭଳି ସାହିତ୍ୟର ସମସ୍ତ ବିଭାଗରେ ପଚାଶରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଛନ୍ତି।

ସାହିତ୍ୟରେ ପୂର୍ବସୂରୀମାନଙ୍କୁ ସମ୍ମାନ, ମୂଲ୍ୟବୋଧ, ନୀତିଶିକ୍ଷା, ଇତିହାସର ନିଛକ ସତ୍ୟ ତଥା ସୁଖପାଠ୍ୟ, ସାବଲୀଳତା ତାଙ୍କ ରଚନା ଶୈଳୀ ସ୍ୱତନ୍ତ୍ରତା। ପୂର୍ବସୁରୀମାନଙ୍କର ସାହିତ୍ୟ ରଚନାକୁ ସେ କେବେ ଅବମୂଲ୍ୟାୟନ କରିନାହାନ୍ତି, ବରଂ ତାଙ୍କ ସାହିତ୍ୟରେ ଫକୀରମୋହନ ସେନାପତି, ନୀଳକଣ୍ଠ ଦାସ, ସୁରେନ୍ଦ୍ର ମହାନ୍ତି, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ସଚ୍ଚି ରାଉତରାୟ ଭଳି ଦିଗ୍‌ଗଜ ଓଡ଼ିଆ ସାହିତ୍ୟକାରମାନଙ୍କ ପ୍ରତି ଶ୍ରଦ୍ଧା, ଭକ୍ତି ଓ ପ୍ରଭାବ ପରିଲକ୍ଷିତ ହୁଏ। ତାଙ୍କର 'ମଣିମାଡିହ' ଉପନ୍ୟାସ ଏକ କାଳଜୟୀ ସୃଷ୍ଟି।

ଭାରତର ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିବା ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ପିତା। ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ, ଆଚାର୍ଯ୍ୟ ହରିହର ତାଙ୍କର ପ୍ରାଥମିକ ଶିକ୍ଷକ, ତାଙ୍କର ବାପାଙ୍କର ବନ୍ଧୁ, ସ୍ୱଜନ, ଆତ୍ମିକ ବନ୍ଧନରେ ପରିପୁଷ୍ଟ। ସତ୍ୟବାଦୀ ବନବିଦ୍ୟାଳୟରେ ତାଙ୍କର ପ୍ରାଥମିକ ଶିକ୍ଷା ତଥା ଏହି ଦେବପୁରୁଷମାନଙ୍କର ସାନ୍ନିଧ ଓ ସାହାଚର୍ଯ୍ୟର ପ୍ରଭାବ ତାଙ୍କର ସାରାଜୀବନକୁ ଆନ୍ଦୋଳିତ କରିଥିଲା। ସେ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲ ଶିକ୍ଷା ସମୟରେ ହିଁ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରି, ଶିକ୍ଷାରୁ ଦୀର୍ଘଦିନ ଧରି ବଞ୍ଚିତ ହୋଇଥିଲେ। ଦେଶର ସ୍ୱାଧୀନତା ହାସଲ ପରେ ଏହି ସ୍ୱାଭିମାନୀ ସ୍ୱାଧୀନତା ସଂଗ୍ରାମୀ ଦେଶର ଭ୍ରଷ୍ଟାଚାରକୁ ବିରୋଧ କରି ସ୍ୱାଧୀନତା ସଂଗ୍ରାମୀ ସମସ୍ତ ମାନ୍ୟତା, ତାମ୍ରପତ୍ର ଇତ୍ୟାଦି ପ୍ରତ୍ୟାଖ୍ୟାନ କରିଛନ୍ତି।

ସେ ଜଣେ ମଣିଷ ପରି ମଣିଷ। ଆଦର୍ଶ ଶିକ୍ଷକ, ଶିକ୍ଷାବିତ୍, ଲେଖକ, ସମାଜସେବୀ, ଉତ୍ତମ ପ୍ରଶାସକ, ଆମେରିକା ଫେରନ୍ତା ଉଚ୍ଚ ଶିକ୍ଷିତ, ଗାନ୍ଧୀବାଦୀ, ସମାଜ ସଂସ୍କାରକ ତଥା ସ୍ନେହୀ ସରଳ ମଣିଷ। ଗୁରୁଣାଂ ଗୁରୁ, ଆଚରଣସିଦ୍ଧ ବିକ୍ରମ ଦାସଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଜଣାଉଛି।

**ନିମସାହି, କଟକ**

# ଔପନ୍ୟାସିକ ବିକ୍ରମ ଦାସ

## ଡକ୍ଟର ସୁଲୋଚନା ଦାସ

ସୂକ୍ଷ୍ମଦୃଷ୍ଟିରେ ବିଚାର କଲେ, ଅଷ୍ଟମ ଓ ନବମ ଏହି ଦୁଇ ଦଶନ୍ଧି ସାହିତ୍ୟ ଇତିହାସ ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ କାଳ। କେବଳ ଭାରତବର୍ଷରେ ନୁହେଁ, ସମଗ୍ର ବିଶ୍ୱର ରାଜନୈତିକ ଭାବବଳୟ ଅତ୍ୟନ୍ତ ଜଟିଳ ହୋଇ ଉଠିଛି। ମାନବିକ ଆଦର୍ଶ, ପ୍ରତିଷ୍ଠିତ ମୂଲ୍ୟବୋଧ, ସାମୂହିକ ଭାବରେ ତୀବ୍ର ଅବିଶ୍ୱାସ ଓ ସଂଶୟ ଦେଖାଦେଇଛି। ବିଜ୍ଞାନର ଅଭୂତପୂର୍ବ ସଫଳତା, ନୂଆ ଭୋକ୍ତାବାଦର ଦ୍ରୁତପ୍ରସାର, ଅର୍ଥସର୍ବସ୍ୱ ଆନ୍ତର୍ଜାତୀୟ ରାଜନୀତି, ହିଂସା ଓ ଯୌନ ଚେତନାସମ୍ବଳ କାର୍ଯ୍ୟକଳାପ ସାଂପ୍ରତିକ କାଳରେ ସହସ୍ର ଶତାବ୍ଦୀର ଚିରନ୍ତନ ଓ ଶାଶ୍ୱତ ଆଧ୍ୟାତ୍ମିକ ଅଭୀପ୍ସା ପ୍ରତି ଏକ ନିଷ୍ଠୁର ଉପହାସ ପରି ପ୍ରତୀୟମାନ ହେଉଛି। ଆଧ୍ୟାତ୍ମିକ ମୂଲ୍ୟବୋଧ ପ୍ରତି ଏବଂବିଧ ଶଙ୍କା ମାନବ ସଂସ୍କୃତିକୁ ବିକଳବିଧୃତ କରିଛି- ଏହା କହିବା ବାହୁଲ୍ୟ। ପୂର୍ଣ୍ଣତାର ସାମୂହିକ ଭାବନାରୁ ଓହରି ଆସି ବ୍ୟକ୍ତିଚିତ୍ତ ଖଣ୍ଡିତ ଭାବଚେତନା ସର୍ବସ୍ୱ ହୋଇଉଠିଛି। ବ୍ୟକ୍ତିର ବୋଧସତ୍ତା ଆଜି ବିକଳାଙ୍ଗ। ଏପରି ଏକ ଦ୍ୱନ୍ଦ୍ୱାତ୍ମକ କ୍ରିୟାଶୀଳତାରୁ ନବଜନ୍ମ ଲାଭ କରିଥିବା ସାଂପ୍ରତିକ ମଣିଷଟି ତେଣୁ ଅଧିକ ଅବୋଧ୍ୟ, ଅସହାୟ, ନିଃସଙ୍ଗ, ବିଷାଦ ଜର୍ଜର ଓ ଏକାନ୍ତ ଭାବରେ ଏକ ବିଚ୍ଛିନ୍ନ ପ୍ରାଣୀବିଶେଷ।

ଭାରତବର୍ଷର ପରିସ୍ଥିତି ପୁଣି ଆନ୍ତର୍ଜାତୀୟ ପରିସ୍ଥିତିଠାରୁ ଆହୁରି ସଙ୍କଟମୟ। ଦୀର୍ଘଦିନର ପରାଧୀନତା ପରେ ମାତ୍ର ଚାରି/ପାଞ୍ଚ ଦଶକ ହେଲା, ଭାରତ ସ୍ୱାଧୀନତା ଲାଭ କରିଛି। ଏକ ପକ୍ଷରେ ବିଗତ ଅତୀତର ହଜାର ହଜାର ବର୍ଷର ସୁସମୃଦ୍ଧ ଐତିହ୍ୟ, ସଂସ୍କୃତି, ପରମ୍ପରା, ଅନ୍ୟ ପକ୍ଷରେ ଶହ ଶହ ବର୍ଷର ପରାଧୀନତାଜନିତ ଗ୍ଲାନି, ଆତ୍ମଦାହ ଓ ନିଜ ପ୍ରତି ଅନାସ୍ଥାଭାବ ଭାରତୀୟ ଜାତୀୟ ଚରିତ୍ରକୁ ଯେପରି ସ୍ଥାଣୁ କରିଦେଇଛି। ଏହି ନିରବଚ୍ଛିନ୍ନ ସଂଘାତରୁ ସୃଷ୍ଟ ଭାରତୀୟ ଜାତୀୟ ଚରିତ୍ରଟି ନିଜସ୍ୱ ସ୍ଥିତି ସମ୍ପର୍କରେ ଆଦୌ ସଚେତନ ଥିବାପରି ମନେହୁଏ ନାହିଁ।

ସାଂପ୍ରତିକ କାଳ ବହୁ ପରୀକ୍ଷା ନିରୀକ୍ଷାର କାଳ। ବ୍ୟକ୍ତିବିଶ୍ୱକୁ ଓ ବହିର୍ବିଶ୍ୱକୁ ପରୀକ୍ଷାନିରୀକ୍ଷା ନାମରେ ବହୁ ଚେତନା କବଳିତ କରିଛି। ନାନା ମତବାଦ ସୃଷ୍ଟି

ହୋଇଚାଲିଛି । ଏହି ପରିପ୍ରେକ୍ଷୀରେ ନୂଆହୋଇ ଗଢ଼ିଉଠିଥିବା ଭୋକ୍ତାବାଦ ମାନବ ସଭ୍ୟତାର ଗତି ନିୟାମକ କିପରି ହୋଇଉଠିଛି, ତାହା ବିଚାରଣୀୟ । ପ୍ରଚଳିତ ସବୁ ବିଶ୍ୱାସକୁ ପଛରେ ପକାଇ ଭୋକ୍ତାବାଦ ମନୁଷ୍ୟର ସୂକ୍ଷ୍ମ ଚିତ୍ତବୃତ୍ତିକୁ ଆଛନ୍ନ କରିନେଇଛି ଓ ତା'ର ଜୟଯାତ୍ରା ପ୍ରତିହତ ରହିଛି । ଏହାର ସ୍ୱରୂପଟି ପୁଣି ବେଶ୍ ଜଟିଳ ଓ ଅସ୍ପଷ୍ଟ । ଧର୍ମ, ଅର୍ଥ, କାମ, ମୋକ୍ଷ-ଚତୁଃବର୍ଗ ଫଳପ୍ରାପ୍ତି, ଏକଦା ମାନବ ଜୀବନଧାରାକୁ ନିୟନ୍ତ୍ରଣ କରୁଥିଲା ଓ ଉତ୍ତରିତ ଜୀବନ ପାଇଁ ପ୍ରୋତ୍ସାହିତ କରୁଥିଲା । ମୋକ୍ଷ ବା ସାଲଭେସନ୍ ବା ନିର୍ବାଣ ବା ଜୀବନମୁକ୍ତି ଥିଲା ଜୀବନ ଜିଜ୍ଞାସାର ସର୍ବଶ୍ରେଷ୍ଠ ସର୍ବଶେଷ ଅଭୀପ୍ସା । ମାତ୍ର ଭୋକ୍ତାବାଦ ହେଲା ଅର୍ଥସର୍ବସ୍ୱ । ଅର୍ଥରେ କ୍ରୟକାରୀ ଶକ୍ତି କାମ, ଧର୍ମ ଓ ମୋକ୍ଷକୁ ମଧ୍ୟ କ୍ରୟ କରି ନେଲା । ସେମାନଙ୍କର ଶାଶ୍ୱତ ଓ ଚିରନ୍ତନ ମୂଲ୍ୟବୋଧ ପ୍ରତି ଅନାସ୍ଥାଭାବ ଉପୁଜାଇବାକୁ ସକ୍ଷମ ହେଲା । ଭୋଗସର୍ବସ୍ୱ ଏହି ଭୋକ୍ତାବାଦର ଆୟୁଧ ହେଲା, ବିଜ୍ଞାନ ଓ ତାର ବିପୁଳ ସମ୍ଭୋଗ ସାମଗ୍ରୀ । ଅତୀତର ଯାବତୀୟ ବିଶ୍ୱାସ ଅଚିରେ ଧୂଳିସାତ୍ ହୋଇଗଲା । ଭୋକ୍ତାବାଦର ଅନ୍ତିମ ପର୍ବଟି ଯଦିଓ ଏକ ବିରାଟ ପ୍ରଶ୍ନବାଚୀ, ତଥାପି ତା'ର ପ୍ରଭାବରୁ ମନୁଷ୍ୟ ସଭ୍ୟତା ଓ ସଂସ୍କୃତି ଆଜି ମୁକ୍ତ ନୁହେଁ । ଏପରି ଏକ ସନ୍ଦିଗ୍ଧ କାଳରେ ସାହିତ୍ୟ ତା'ର ପରିପାର୍ଶ୍ୱ ସହିତ ସଂଯୋଗ ରକ୍ଷାକରିବା କଠିନ ହୋଇଉଠିଛି ।

ଭାରତୀୟ ପୃଷ୍ଠପଟ ପୁଣି ଘନଘଟାମୟ । ସାମାଜିକ, ସାଂସ୍କୃତିକ ଜୀବନ ଉପରେ ରାଜନୀତିର ଗଭୀର ପ୍ରଭାବ । ସ୍ୱାଧୀନ ଭାରତର ଗଣତନ୍ତ୍ରର ବିଫଳତା ଓ ବିପର୍ଯ୍ୟୟ ଭାରତୀୟ ଜନମାନସକୁ ବିଭ୍ରାନ୍ତ କରିଛି । ଆଜିର ନିର୍ବାଚନ ରାଜନୀତି ଗଣତନ୍ତ୍ରର ମୂଳଲକ୍ଷ୍ୟକୁ ପ୍ରତି ପଦକ୍ଷେପରେ ବ୍ୟାହତ କରୁଛି । ଗଣତନ୍ତ୍ରର ମୌଳିକ ଆଦର୍ଶ ଭୁଶୁଡ଼ି ପଡୁଛି । ଧର୍ମ ନାମରେ ସାଂପ୍ରଦାୟିକତା, ବିଚ୍ଛିନ୍ନତାବାଦ, ଅବହେଳିତ ବର୍ଗର ଅକଥନୀୟ ଦୁର୍ଦ୍ଦଶା, ଜାତିଆଣ ପ୍ରଥା, ଅର୍ଥନୈତିକ ବୈଷମ୍ୟ, ପୁଞ୍ଜିବାଦର ପ୍ରସାର, ଶାସନଗତ ଅରାଜକତା, ଶିକ୍ଷାର ମାନହ୍ରାସ, ଆତଙ୍କ ଗୁଣ୍ଡାରାଜ, ହିଂସା, ରକ୍ତପାତ, ଭୋଗସର୍ବସ୍ୱ ବାସ୍ତବବାଦର ପ୍ରସାର ପରସ୍ପର ପ୍ରତି ଅବିଶ୍ୱାସବୋଧ ପ୍ରଭୃତି ଭାରତର ସାମାଜିକ ଓ ସାଂସ୍କୃତିକ ଜୀବନକୁ ନାନାଭାବରେ ଶଙ୍କାଗ୍ରସ୍ତ କରିଛି । ଭାରତୀୟ ଜନମାନସ ଆଜି ହତାଶ । ରାଷ୍ଟ୍ରୀୟ ଭାବଦର୍ଶ ବିଡ଼ମ୍ବିତ ।

ଆଜିର ଯୁବମାନସ ବିଭ୍ରାନ୍ତ । ପ୍ରୌଢ଼ ଅବସନ୍ନ, କ୍ଳାନ୍ତ । ବୃଦ୍ଧ ଅସହାୟ ଓ ନିରୁପାୟ । ଯୁବକର ଶକ୍ତି ଓ ଶୌର୍ଯ୍ୟ ବିପଥଗାମୀ, ପ୍ରୌଢ଼ର ଧୀମତ୍ତା ଓ କର୍ମପ୍ରେରଣା ଦୁର୍ନୀତି ରାକ୍ଷସ କବଳିତ, ବ୍ୟକ୍ତିର ପ୍ରଜ୍ଞା ଓ ଦିଗ୍‌ଦର୍ଶନ ଅରଣ୍ୟେରୋଦନ ପ୍ରାୟ ଅବାଞ୍ଛିତ ଓ ପରିତ୍ୟକ୍ତ । ପରମ୍ପରାର ନିବିଡ଼ ବନ୍ଧନଟି କ୍ରମଶଃ ଶିଥିଳ ହୋଇଉଠିଛି । ପାଶ୍ଚାତ୍ୟ ସଭ୍ୟତାର ଦୁର୍ନିବାର ଆକର୍ଷଣରେ ସମ୍ଭୋଗସର୍ବସ୍ୱ ରୁଗ୍‌ଣ ମାନସିକତା କର୍କଟରୋଗ ପରି ଜାତୀୟ ଚରିତ୍ରକୁ

ସମ୍ପୂର୍ଣ୍ଣ ଗ୍ରାସ କରିବାକୁ ଉଦ୍ୟମ। ଏପରି ଏକ ସନ୍ଧିକ୍ଷଣରେ ଜାତୀୟ ଜୀବନକୁ ନୈରାଶ୍ୟ, ବିଷର୍ଣ୍ଣତା ଓ ଶୂନ୍ୟତାବୋଧ ଗ୍ରାସ କରିବା ସ୍ୱାଭାବିକ। ତଳୁ ଉପର ସ୍ତର ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ଅହେତୁକ ଉଦ୍‌ବେଗ ବ୍ୟକ୍ତିଚିତ୍ତକୁ ସଂଶୟାଚ୍ଛନ୍ନ କରି ରଖିଛି।

ଜୀବନସଂଘର୍ଷର କୁରୁକ୍ଷେତ୍ରରେ ଦଣ୍ଡାୟମାନ ଅବସାଦଗ୍ରସ୍ତ ଅର୍ଜୁନ ପରି କେଉଁ ଏକ ଦିବ୍ୟସତ୍ତାର ସନ୍ଧାନରେ ଯେପରି ଆଜି ବ୍ୟକ୍ତିଚିତ୍ତ ବ୍ୟାକୁଳ ହୋଇଉଠୁଛି। ଅଥଚ ସମ୍ମୁଖ ଭାଗରେ କୌଣସି ଆଦର୍ଶ ନାହିଁ, ଚୈତନ୍ୟ ପୁରୁଷ ନାହିଁ, ଯାହା ବ୍ୟକ୍ତି ଓ ଜାତିକୁ ତା'ର ଇପ୍‌ସିତ ଓ ବହୁବାଞ୍ଛିତ କଲ୍ୟାଣକର ପଥ ନିର୍ଦ୍ଦେଶ କରିପାରିବ। ତା'ର ସକଳବିଧ ସଂଶୟ ଓ ଦ୍ୱନ୍ଦ୍ୱକୁ ଘୁଞ୍ଚାଇଦେଇ ବିଶ୍ୱାସ ଓ ପ୍ରତୀତ ଭରି ଦେଇପାରିବ। ମହତ୍ତର ଭାବନାରେ ଅନୁପ୍ରାଣିତ କରିପାରିବ। ବହୁ ଆତ୍ମତ୍ୟାଗ ଓ ଆତ୍ମାହୁତିରୁ ସମ୍ଭୁତ ସ୍ୱାଧୀନତାକୁ ସକଳବିଧ ବିପର୍ଯ୍ୟୟ ଓ ବିପତ୍ତିରୁ ରକ୍ଷାକରିପାରିବ। ସେପରି ଏକ ସମ୍ଭାବନା, ଯେପରି ସୁଦୂର ପରାହତ ମନେହେଉଛି।

ଆତ୍ମକୈନ୍ଦ୍ରିକ ମନୋଭାବ ହିଁ ବ୍ୟକ୍ତିର ସକଳବିଧ ନୈରାଶ୍ୟ ଓ ବିଫଳତାର ମୂଳହେତୁ ବୋଲି କେହି କେହି ମନସ୍ତତ୍ତ୍ୱବିଦ୍ ବିଚାର କରୁଛନ୍ତି। ଆଜିର ମଣିଷ ବାସ୍ତବରେ ନିଜକୁ ସର୍ବାନ୍ତକରଣରେ ସାମାଜିକ କର୍ତ୍ତବ୍ୟ କରିପାରୁ ନାହିଁ କି ସମାଜର ବୃହତ୍ତର ବନ୍ଧନାରୁ ନିଜକୁ ମୁକ୍ତ କରିପାରୁନାହିଁ। ବ୍ୟକ୍ତିଗତ ସଫଳତା ନିମିତ୍ତ ସାମଗ୍ରିକ ଓ ଜାତୀୟ ଆବଶ୍ୟକତାକୁ ଉପେକ୍ଷା କରି ନାନା ବିକଳ୍ପ ଓ ଜଟିଳ ପରିସ୍ଥିତି ଉପୁଜାଇବାକୁ କୁଣ୍ଠାବୋଧ କରୁନାହିଁ। ଯୁଗ ଯୁଗ ଧରି ଭାରତୀୟ ଜୀବନଧାରାରେ ଯେଉଁ ଗଡ୍‌ଡାଳିକା ପ୍ରବାହ ଦେଖା ଦେଇଥିଲା ଅକସ୍ମାତ୍ ତା'ର ଆମୂଳଚୂଳ ପରିବର୍ତ୍ତନର ପ୍ରଚେଷ୍ଟା ବ୍ୟକ୍ତିମାନସକୁ ବହୁ ଅଭିଳାଷୀ କରିପକାଉଛି। ତା'ର ଆଶା ଓ ଆକାଂକ୍ଷା ଆଜି ନଭଶ୍ଚୁମ୍ୱୀ। ମାତ୍ର ସେହି ସଫଳତାର ପାହାଚ ଆରୋହଣ କରିବା ନିମିତ୍ତ ନିକଟରେ ଆନୁଷଙ୍ଗିକ ସାମର୍ଥ୍ୟ ଶକ୍ତି ନାହିଁ। ତେଣୁ ସେ ଆଶାପୋଷଣ କରୁଛି ଯେ, କେବଳ ରାଷ୍ଟ୍ର ହିଁ ତାକୁ ଏପରି ସୌଭାଗ୍ୟ ଦେବାପାଇଁ ଏକାନ୍ତ ଭାବରେ ଦାୟୀ; ମାତ୍ର ରାଷ୍ଟ୍ର ବ୍ୟାପାରରେ ତା'ର ଦାୟିତ୍ୱ ଓ କର୍ତ୍ତବ୍ୟବୋଧ ପ୍ରତି ସେ ସମ୍ପୂର୍ଣ୍ଣ ଉଦାସୀନ। ଫଳରେ ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ ଏକ ବିରାଟ ଶୂନ୍ୟତା ସୃଷ୍ଟିହେବାରେ ଲାଗିଛି। ତାହା କେବଳ ତାର ସ୍ଥୂଳ ଜୀବନସର୍ବସ୍ୱ ହୋଇ ରହିନାହିଁ, ତା'ର ସୂକ୍ଷ୍ମ ଭାବଚେତନାକୁ ମଧ୍ୟ ଦ୍ୱନ୍ଦ୍ୱାତ୍ମକ କରି ଗଢ଼ିତୋଳୁଛି। ତେଣୁ ବ୍ୟକ୍ତିଚିତ୍ତ ଆଦି ଦ୍ୱିଧାଗ୍ରସ୍ତ। ଏପରି ଏକ ଜଟିଳ ମନୋଭୂମି ଉପରେ ସାଂପ୍ରତିକ କଥାସାହିତ୍ୟ ଆଜି ଦଣ୍ଡାୟମାନ।

ଏସବୁ ସତ୍ତ୍ୱେ ଭାରତର ସାମୂହିକ ସତ୍ତାର ପୁନଃରୁଦ୍ଧାର ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସମ୍ଭାବନା ପ୍ରତି ସାହିତ୍ୟର ନୈତିକ ଦାୟିତ୍ୱକୁ ଅସ୍ୱୀକାର କରାଯାଇ ନପାରେ। ସ୍ୱାଧୀନ ଭାରତ ଶାସନଗତ ସ୍ୱାଧୀନତା ହାସଲ କରିଛି ସତ; ମାତ୍ର ମାନସିକ ସ୍ତରରେ ଭାରତୀୟ

ମାନସିକତା ସଂପୂର୍ଣ୍ଣ ସାର୍ବଭୌମତ୍ୱ ହାସଲ କରିବାକୁ ସମର୍ଥ ହୋଇପାରିନାହିଁ। ରୁଗ୍ଣ ଜାତୀୟ ଚରିତ୍ରକୁ ଉତ୍ତୋଳିତ କରି ଜାତିପ୍ରାଣରେ ଗଭୀର ଆତ୍ମବିଶ୍ୱାସ ଭରିଦେବା ପାଇଁ ସାହିତ୍ୟିକମାନେ ହିଁ କେବଳ ସମର୍ଥ। କାରଣ ବିଶ୍ୱର ନିଷ୍ପାପର ସାହିତ୍ୟ ସାଧକର ଇଙ୍ଗିତ ପ୍ରଚ୍ଛନ୍ନ ଭାବରେ କାର୍ଯ୍ୟ କରିଥାଏ। ସାହିତ୍ୟିକ ହେଉଛି ଜନମାନସର ପ୍ରକୃତ ଗତି ନିୟାମକ । ତାର ସୂକ୍ଷ୍ମ ହୃଦୟବୃତ୍ତିର ଅଦୃଶ୍ୟ ସୂତ୍ରଧର।

ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି, ସ୍ରଷ୍ଟାମାନସର କାଳ ସଚେତନତା। ସ୍ରଷ୍ଟା ସମୟର ଆହ୍ୱାନ ପ୍ରତି ଉତ୍କର୍ଣ୍ଣ ନ ହେଲେ, ସେ ସୃଷ୍ଟି ଚିରନ୍ତନତ୍ୱ ଲାଭ କରିବାକୁ ସମର୍ଥ ହୁଏ ନାହିଁ। ଡାକ୍ତର ବିକ୍ରମ ଦାସଙ୍କର କଥା ସାହିତ୍ୟକୁ ବିଚାର ଆଲୋଚନା କଲାବେଳେ ସାଂପ୍ରତିକ କାଳର ଏହି ଅନ୍ତରଙ୍ଗ ଆହ୍ୱାନ ପ୍ରତି ଦୃଷ୍ଟି ଦେବାକୁ ଇଚ୍ଛା ହୁଏ।

ଓଡ଼ିଶାର କଥାସାହିତ୍ୟରେ ନୂତନ ପ୍ରତିଶ୍ରୁତିର ସଙ୍କେତ ବହନପୂର୍ବକ ଡାକ୍ତର ବିକ୍ରମ ଦାସଙ୍କ କଥାସୌଧ ସତ୍ୟାଶ୍ରୟୀ ଇତିହାସ ଓ କିମ୍ୱଦନ୍ତୀର ମନୋଜ୍ଞ ମନୋଭୂମି ଉପରେ ଗଢ଼ିଉଠିଛି। ତାଙ୍କ ସୃଷ୍ଟି ପରିକଳ୍ପନାର ମୂଳ ଭାବକେନ୍ଦ୍ରଟି ହେଉଛି ଇତିହାସପ୍ରୀତି। ଯେଉଁ ଇତିହାସ ଜାତୀୟଜୀବନର ଏକ ସ୍ୱର୍ଣ୍ଣାଭ ଅସ୍ତରାଗ। ସାଂପ୍ରତିକ ପରିପ୍ରେକ୍ଷୀରେ ଏପରି ଏକ ସ୍ମୃତିର ଏକ ଅନ୍ଧାରୀଗୁହାରେ ପ୍ରବେଶ କରି ସେଇ ବିସ୍ମୃତ ରତ୍ନରାଜିକୁ ସାଉଁଟି ଧରିବାର ଅନ୍ତରୀଣ ପ୍ରୟାସଟି ଉତ୍କଳ ତଥା ଭାରତଭୂଇଁ ପ୍ରତି ତାଙ୍କର ଗଭୀର ମହତ୍ୱବୋଧର ପରିଚୟ। ଏହି ସୃଷ୍ଟି ଚେତନାର ପାଶ୍ଚାତ୍ୟଭାଗରେ ସ୍ରଷ୍ଟାମାନସର କେବଳ ଏକ ସହଜ ଭାବାଳୁତା ଲକ୍ଷ୍ୟ କରାଯାଏନାହିଁ। ଏହାର ଉଜ୍ଜ୍ୱଳ ମନସ୍ୱିତା ବିଶେଷ ଉଲ୍ଲେଖଯୋଗ୍ୟ।

ସ୍ୱାଧୀନତାର ଦୀର୍ଘକାଳପରେ ଆତ୍ମଦୈନ୍ୟପୀଡ଼ିତ ଓଡ଼ିଆ ଜାତିର ଚିତ୍ତଭୂମିରେ ନୂତନ ସ୍ୱଦେଶାନୁରାଗ ଓ ଗୌରବବୋଧ ସୃଷ୍ଟି କରିବା ଅଭିପ୍ରାୟରେ ତାଙ୍କ କଥା ସାହିତ୍ୟ ଏକ ସ୍ୱତନ୍ତ୍ର ପର୍ଯ୍ୟାୟରେ ବିଷୟବସ୍ତୁକୁ କେନ୍ଦ୍ରକରି ନୂତନ ଭାବାବେଗ ସୃଷ୍ଟି କରିଛି। ବିଚାତରିତ କାହାଣୀ ଓ ପରିବେଶରୁ ମୁକ୍ତ ହୋଇ ଓଡ଼ିଶାର ଐତିହ୍ୟ, ପରମ୍ପରା ଓ ସଂସ୍କୃତି ପ୍ରତି ପାଠକମାନଙ୍କର ଶ୍ରଦ୍ଧାଶୀଳ ଦୃଷ୍ଟି ଆକର୍ଷଣ କରିବାକୁ ଯେପରି ସେ ସଂକଳ୍ପବଦ୍ଧ ହୋଇଛନ୍ତି। ଓଡ଼ିଶାରେ ତାଙ୍କର ଚିରଉପାସ୍ୟ ଭୂଇଁ। ଓଡ଼ିଶାର କଳା ସ୍ଥାପତ୍ୟ, ସଂସ୍କୃତି, ସୌନ୍ଦର୍ଯ୍ୟ, ଲୋକଚଳଣି, ଲୋକବିଶ୍ୱାସ, ସାହିତ୍ୟ, ଧର୍ମଦର୍ଶନ, ଯାହା କିଛି ନୀତିଗର୍ଭିତ ଓ ରୁଚିପୂର୍ଣ୍ଣ, ତାହା ତାଙ୍କ ସୃଜନଶୀଳତାକୁ ନିବିଡ଼ଭାବରେ ସ୍ପର୍ଶ କରିଛି। ଚିକିତ୍ସାଶାସ୍ତ୍ରରେ ଗଭୀର ଦକ୍ଷତା ହାସଲ କରିଥିବା ଡାକ୍ତର ବିକ୍ରମ ଦାସ ବେଶ ବିଳମ୍ୱିତ ଲଗ୍ନରେ ସାରସ୍ୱତ ସାଧାନା କ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି। ସଂସ୍କାରଗତ ଓ ବଂଶଗତ ସିଦ୍ଧିର ସେ ଉତ୍ତର ପୁରୁଷ। ସତ୍ୟବାଦୀ ଯୁଗର ଅନ୍ୟତମ ବରେଣ୍ୟ ସାଧକ, ପ୍ରଥିତଯଶା ନୀଳକଣ୍ଠ ଦାସଙ୍କର ସେ ସୁଯୋଗ୍ୟ ପୁତ୍ର।

ବ୍ରିଟିଶ୍‌ରାଜର ଅତ୍ୟାଚାର, ତା ବିରୁଦ୍ଧରେ ଜାତୀୟ କଂଗ୍ରେସର ଆନ୍ଦୋଳନ, ସ୍ୱାଧୀନତା ସଂଗ୍ରାମ, ଅବକ୍ଷୟମାଣ ଗ୍ରାମ୍ୟସଂସ୍କୃତି, ନୂତନତା ପ୍ରତି ଏକ ପ୍ରଗାଢ଼ ଅସ୍ପୃହା ପ୍ରଭୃତି ବିଭିନ୍ନ ପ୍ରକାର ବିରୋଧାଭାସ ମଧ୍ୟରେ ତାଙ୍କ ବାଲ୍ୟସ୍ମୃତି ବର୍ଣ୍ଣାଢ୍ୟ ହୋଇ ଉଠିଥିଲା । ସେଇ ଅନ୍ତରଙ୍ଗ ମୁହୂର୍ତ୍ତଗୁଡ଼ିକ ସଜୀବ ହୋଇଉଠିଛି ତାଙ୍କ ସୃଷ୍ଟି ଚେତନାରେ । ଚରିତ୍ରମାନେ ନିଜ ନିଜର କଥା କହିଛନ୍ତି । ପିଛିଲା ଦିନକୁ ଟୋଳିଧରିଛନ୍ତି ପାଠକ ନିକଟରେ । ସେମାନେ ସବୁ ଅତୀତର ନିର୍ମୋକ । ବର୍ତ୍ତମାନର ଅଶରୀରୀ ସଙ୍କେତ । ଭବିଷ୍ୟତର ଅଲିଖିତ ଇଙ୍ଗିତ । ଅତୀତର ବହୁ ବେଦନାମୟ ଗାଥା କଙ୍କାଳର ହୃଦୟ ଭିତରୁ ନିଃସରିତ ହୋଇଛି ଯେପରି ।

୧୯୮୧ ମସିହାରେ ପ୍ରକାଶିତ ହୁଏ ତାଙ୍କର ପ୍ରଥମ ଉପନ୍ୟାସ ମଣିମାଡ଼ିହ । ଊନବିଂଶ ଶତାବ୍ଦୀର ଶେଷଭାଗ । ସରି ସରି ଆସୁଛି ପ୍ରଗାଢ଼ ଅନ୍ଧକାରର କାଳରାତ୍ରି । ବ୍ରିଟିଶ୍ ଶାସନର ଶେଷ ଧୂପ ଟିକକ ଲିଭିଯିବାକୁ ଆଉ ବେଶି ସମୟ ଡେରି ନାହିଁ । ଆରମ୍ଭ ହେବାକୁଯାଉଛି ଏକ ସମ୍ଭାବନା ପୂର୍ଣ୍ଣ ବହୁ ଇପ୍‌ସିତ ଶତାବ୍ଦୀ । 'ମଣିମାଡ଼ିହ' ଉପନ୍ୟାସର କଥାବସ୍ତୁଟି ଗଢ଼ିଉଠିଛି ଏପରି ଏକ ତ୍ରିସନ୍ଧି କାଳରେ । ମଣିମା ନାହାନ୍ତି । ସମୟର ବେଳାଭୂଇଁରେ ମଣିମାଙ୍କ ପରିବାରର ଗାଥା ଧୋଇ ହୋଇଯାଇଛି । କେଉଁ ଅଲକ୍ଷ୍ୟ ଇଙ୍ଗିତରେ, କେବଳ ରହିଯାଇଛି 'ମଣିମାଡ଼ିହ'ଟି । ଆଜି ଯାହା ସ୍ମୃତିତୀର୍ଥରେ ପରିଣତ ହୋଇଛି । ଦିନ ଥିଲା, ତାହା ଥିଲା ବହୁ ସମ୍ମାନର ଓ ଭକ୍ତିର ପବିତ୍ର ପୀଠସ୍ଥଳୀ ।

ପୁରୀର ଗଜପତି ମହାରାଜା ରାମଚନ୍ଦ୍ର ଦେବ(୩ୟ)ଙ୍କର କନିଷ୍ଠ ପୁତ୍ର କଣାସ ଅଞ୍ଚଳର ରାଜା ଥିଲେ । ଓଡ଼ିଶା ଜାତିର ସଂସ୍କୃତି, ଚେତନା ଓ ଲୋକବିଶ୍ୱାସରେ ଗଜପତି ଠାକୁର ରାଜା ଥିଲେ ଶ୍ରୀଜଗନ୍ନାଥଙ୍କର ଚଳନ୍ତି ବିଗ୍ରହ । ସେହି ଆନୁଗତ୍ୟ, ସେଇ ଭକ୍ତିର, ସେଇ ଶ୍ରଦ୍ଧାର ଅଧିକାରୀ ଥିଲେ କଣାସର ସାମନ୍ତ ରାଜା । ସାଧାରଣରେ ସେ ମଣିମା ନାମରେ ଖ୍ୟାତ ଥିଲେ । ଇତିହାସର ଏହି ପୃଷ୍ଠପଟ ଉପରେ ଗଢ଼ିଉଠିଛି 'ମଣିମାଡ଼ିହ' ଉପନ୍ୟାସଟି । ଯଦିଓ ସବୁ ଐତିହାସିକ ସତ୍ୟତା ସୁରକ୍ଷିତ ହେବା ବାଞ୍ଛନୀୟ ନୁହେଁ ଉପନ୍ୟାସ ପାଇଁ, ତଥାପି ଅନ୍ୟକ୍ଷେତ୍ରରେ ସେ ଇତିହାସକୁ ହିଁ ଆଧାର କରିଛନ୍ତି । କେତେକ ସ୍ଥଳରେ କିମ୍ବଦନ୍ତୀ ଓ ଲୋକକଥାକୁ ମଧ୍ୟ ସେ ଗୁରୁତ୍ୱ ଦେଇଛନ୍ତି । ଉଭୟ ଇତିହାସ ଓ କିମ୍ବଦନ୍ତୀର ଅପୂର୍ବ ସମନ୍ୱୟରେ 'ମଣିମାଡ଼ିହ' କଥାସୌଧ ନିର୍ମିତ । ଅଭିନବ କଥାଶୈଳୀର ଅନୁସରଣରେ ବିସ୍ମୃତପ୍ରାୟ ଅତୀତର ମଧୁର ସ୍ମୃତିକୁ ରୋମନ୍ଥନ କରି ଜାତିପ୍ରାଣରେ କିଛିଟା ଆବେଗ ଓ ଅନୁରାଗ ସୃଷ୍ଟି କରିବାକୁ ସେ ପ୍ରୟାସୀ ହୋଇଛନ୍ତି । ଉପନ୍ୟାସର ସମୀକ୍ଷାରେ ମନମୋହନ ମିଶ୍ର କହନ୍ତି, "ସତ୍ୟବାଦୀ – ସାକ୍ଷୀଗୋପାଳ ଗଜପତି ବଂଶର ଗୋପାଳପ୍ରାଣ ଶେଷ ମଣିମାଙ୍କର ମର୍ମସ୍ପର୍ଶୀ କାହାଣୀ ଛଳରେ କୁଶଳୀ ଲେଖକ ଏଥିରେ ସେହି ବିଲୋପ ପ୍ରାୟ ସମାଜର ଓ ଜନ୍ମମାଟିର ସମବେଦନାମୟ ଚିତ୍ରର ସାବଲୀଳ ନିଖୁଣ ଚିତ୍ର ଆଙ୍କିଛନ୍ତି । ମଧ୍ୟଯୁଗର ଘୁମନ୍ତ

ଅର୍ଦ୍ଧଆଲୋକିତ ଗୋଧୂଳି ପରିବେଶ ଭିତରେ ବ୍ରିଟିଶ୍ ଯୁଗର କର୍କଶ ଧୂସର ଉତପ୍ତ କିରଣ ଏଥିରେ ଏକ ବିରୋଧାଭାସ ସୃଷ୍ଟି କରିଛି। ଆଧୁନିକ ଉପନ୍ୟାସ ଜଗତରେ ଏଭଳି ଶୈଳୀ କୁହାଯାଉଛି 'ଇମ୍‌ପ୍ରେସନିଜମ୍', ଯାହାର ନିକଟତମ ଓଡ଼ିଆ ତର୍ଜମା ହେବ - 'ମାନସିକ ଭାବତରଙ୍ଗର ଗଭୀର ଦାଗବାଦ। ଅତୀତର ଲେଖନୀ ଚିତ୍ରାଙ୍କନରେ ମଜ୍ଜିରହି ଲେଖକ ଅଜାଣତରେ ଏହି ବିସ୍ମୃତ ଶୈଳୀର ଅଜଣା ରାଜ୍ୟରେ ପ୍ରବେଶ କରିଛନ୍ତି। ଯେଣୁ ଅଜାଣତ, ତେଣୁ ଏହି ଶୈଳୀ ଆଙ୍ଗିକତାର ଅସଂଯତ ଅତ୍ୟାଚାରରୁ ମୁକ୍ତ। ତେଣୁ ଏହା ଉକ୍ତ ଶୈଳୀର ସୂକ୍ଷ୍ମସଂଯତ ଉଦ୍ଦୀପନାରେ ପୂର୍ଣ୍ଣଗର୍ଭା ତଟିନୀ ପରି ବହିଯାଇଛି।"(୧)

ସତ୍ୟବାଦୀ ସାକ୍ଷୀଗୋପାଳ ଓଡ଼ିଆ ଜାତି ଚିନ୍ତା ଓ ଚେତନାରେ ଉତ୍ତର ଆକାଶର ଧ୍ରୁବତାରା ଓ ପାହାନ୍ତି ଆକାଶର ଶୁକ୍ରତାରା। ପରିବେଶ ଉଜ୍ଜ୍ୱଳ ଓ ସ୍ୱଚ୍ଛ। ସତ୍ୟବାଦୀ ବନବିଦ୍ୟାଳୟ ଥିଲା ଓଡ଼ିଆ ଜାତୀୟତାର ମୁଖଶାଳା। ଯେଉଁଠୁ ସ୍ୱଦେଶାନୁରାଗର ଆଦ୍ୟ ଓଁକାର ଧ୍ୱନିମନ୍ତ୍ର ନିନାଦରେ ଉଚ୍ଚାରିତ ହୋଇଥିଲା। ଯାହାର ଉଦାତ୍ତ ସ୍ୱର ଝଙ୍କାର ସମଗ୍ର ଓଡ଼ିଶାରେ ପ୍ରତିଧ୍ୱନି ତୋଳୁଥିଲା। ଦେଶ ଜାତିକୁ ଭଲପାଇବା ପାଇଁ, ଦେଶମାତୃକା ପାଇଁ ଆତ୍ମବଳି ଦେବା ପାଇଁ ଯେଉଁ ପୁଣ୍ୟଭୂଇଁ ମହାନ୍‌ଦୀକ୍ଷାରେ ଅଭିମନ୍ତ୍ରିତ କରୁଥିଲା। ଯାହା ଥିଲା ପୁଣ୍ୟଶ୍ଳୋକ ଗୋପବନ୍ଧୁଙ୍କର କର୍ମଭୂଇଁ। ପୁଣି ଜାତିପ୍ରାଣ ନୀଳକଣ୍ଠ, ଗୋଦାବରୀଶ ପ୍ରମୁଖଙ୍କର ସାଧନାର ପୀଠ। ଛୁରିଅନା କୁଞ୍ଜ ତଳେ କେବଳ ଜାତୀୟତାର ମହାମନ୍ତ୍ର ଉଚ୍ଚାରିତ ହୋଇନାହିଁ, ସେହି ପବିତ୍ର ଭୂଇଁରୁ ସତ୍ୟ ଧାରଣକରନ୍ତି ନିଜ ଭକ୍ତ ପାଇଁ, ନିଜର ପ୍ରେମିକା ପାଇଁ। ସେହିପରି ଏକ ପୁଣ୍ୟପୀଠ ସତ୍ୟବାଦୀ ସାକ୍ଷୀଗୋପାଳ। ଏକଦା ସତ୍ୟ ସପକ୍ଷରେ ସାକ୍ଷୀ ଦେବାକୁ ଆସି ବୃନ୍ଦାବନର ଗୋପାଳ ଆଉ ବୃନ୍ଦାବନକୁ ଫେରିନଥିଲେ। ଏପରି ଏକ ଅବତରଣିକା ଦେଇ ଲେଖକ ଗାନ୍ଧୀ ଭାବାଦର୍ଶର ମୂଳକଥା ସତ୍ୟ, ଅହିଂସା, ତ୍ୟାଗ ପ୍ରତି ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଛନ୍ତି। ମୂଲ୍ୟବୋଧର ଦ୍ରୁତହ୍ରାସ କାଳରେ ଦେଶ,ଜାତି ତଥା ପାଠକମାନଙ୍କ ନିମନ୍ତେ ଏହାଠାରୁ ବଳି ବଡ଼ ଅଙ୍ଗୀକାର ଆଉ କ'ଣ ହୋଇପାରେ।(ମିଶ୍ର ମନମୋହନ, ପୁସ୍ତକର ସମୀକ୍ଷା, ପୃଷ୍ଠା-ଙ, ମଣିମାଡ଼ିହ)।

ଗୋପାଳଙ୍କୁ ସତ୍ୟବାଦୀରେ ପ୍ରତିଷ୍ଠା କରାଇଲେ ଗଜପତି(ଦ୍ୱିତୀୟ ରାମଚନ୍ଦ୍ର ଦେବ)ଙ୍କର ପୁତ୍ର କଣାସଗଡ଼ର ସାମନ୍ତରାଜା। ତାଙ୍କର ପ୍ରଚେଷ୍ଟାରେ ସତ୍ୟବାଦୀର ପ୍ରତିଷ୍ଠା। ମନ୍ଦିର ନିର୍ମାଣ ଓ ବିଗ୍ରହ ପ୍ରତିଷ୍ଠା ସଂପର୍କରେ ଔପନ୍ୟାସିକ ସତ୍ୟ ଓ ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀକୁ ଆଧାର କରିଛନ୍ତି। ସତ୍ୟବାଦୀ ପୀଠର ସେହି ଲୋକପ୍ରିୟ ସାମନ୍ତରାଜା 'ମଣିମା' ଥିଲେ ଗୋପାଳଭକ୍ତ। ମନ୍ଦିର ପୂଜା ଅର୍ଚ୍ଚନା ପାଇଁ ସେ ସର୍ବସ୍ୱ ତ୍ୟାଗ କରିଥିଲେ। କାଳର ନିଷ୍ଠୁର ପରିହାସରେ ସେଇ ମଣିମା ପରିବାରର ଶେଷରଶ୍ମି ଅବଲୁପ୍ତ ହୋଇଯାଇଥିଲା। ମଣିମା ନିଃସନ୍ତାନ ଥିଲେ। ପାଟରାଣୀ ସହଚରୀ ମନୋହାରିଣୀ ଗର୍ଭରୁ ମଣିମାଙ୍କ ଔରସରେ

ଜନ୍ମ ହୋଇଥିଲେ ଗୋପାଳଭକ୍ତ ମଣିମା ବଂଶର ଶେଷ ଦାୟାଦ। ସେ ମଧ୍ୟ ନିଃସନ୍ତାନ ଥିଲେ। ମଣିମା ବଂଶର ବଂଶଲତିକା ଆଉ ଆଗକୁ ଲମ୍ବି ଯାଇନାହିଁ। ସେଇଠି ପୂର୍ଣ୍ଣଚ୍ଛେଦ ପଡ଼ିଯାଇଛି। "ମହାପ୍ରତାପୀ ଗଜପତି ବଂଶର ସତ୍ୟବାଦୀ ଶାଖାର ଶେଷ ଦାୟାଦ 'ମଣିମା' 'ଦିନେ ଥିଲେ'- ପର୍ଯ୍ୟାୟଭୁକ୍ତ ହୋଇଛନ୍ତି। କିନ୍ତୁ ତାଙ୍କ ଡିହଟି ଅଛି- ଯାହା ଅଦୂର ଅତୀତରେ କେବଳ ମଣିଷ ନୁହେଁ, ପଶୁପକ୍ଷୀଙ୍କର ମଧ୍ୟ ରଙ୍ଗଭୂମି ଥିଲା।"(କାହ୍ନୁଚରଣ, ମଣିମାଡିହ, ସୂଚନା, ପୃଷ୍ଠା-ଘ)

ଗୋପାଳପ୍ରାଣ ଶେଷ ମଣିମା କୁଚକ୍ରୀ ପଦମୁକ୍ତାରଙ୍କ ଶଠତାର ଶିକାର ହେଲେ। ଗୋପାଳଙ୍କୁ ସମସ୍ତ ସଂପତ୍ତି ଉତ୍ସର୍ଗ କରିଦେବାପରେ ଆଉ ଯାହା କିଛି ନିଜସ୍ୱ ସମ୍ବଳ ଥିଲା, ସବୁ ହସ୍ତାନ୍ତର ହୋଇଗଲା ଏହି କୁଚକ୍ରୀର କୂଟଚକ୍ରାନ୍ତରେ। ମଣିମା ସବୁଦିନ ପାଇଁ ନିଃସ୍ୱ ହୋଇଗଲେ। କିନ୍ତୁ ନିଃସ୍ୱ ହୋଇନଥିଲା ତାଙ୍କର ହୃଦୟ। କୃଷ୍ଣପ୍ରେମରେ ନିମଜ୍ଜିତ ମଣିମା ଦୁଃଖସୁଖ ସଂସାର ଅତିବାହିତ କରୁଥିଲେ ହେଁ, ଏପରି ଏକ ବିପର୍ଯ୍ୟୟ ପାଇଁ ତାଙ୍କ ମନରେ କ୍ଷୋଭ ନଥିଲା। ଶୋଚନା ନଥିଲା।

ଉପନ୍ୟାସର ଗତିଶୀଳତାରେ ଟିକିଏ ଶିଥିଳତା ଲକ୍ଷ୍ୟ କରାଯାଏ ଠିକ୍ ଏଇଠି। ଏହାପରେ ମଣିମା ଓ ତାଙ୍କ ପରିବାରର ସମସ୍ୟା ଉପନ୍ୟାସର କଥାବସ୍ତୁରେ ବିଶେଷ ଭାବରେ କ୍ରିୟାଶୀଳତା ଆଣି ଦେଇପାରିନାହାଁନ୍ତି। ଅପର ପକ୍ଷରେ ପଦମୁକ୍ତାର ଓ ତାଙ୍କ ପୁତ୍ର ପୀତବାସ ହୋଇଉଠିଛନ୍ତି ଉପନ୍ୟାସର ମୁଖ୍ୟ ଆକର୍ଷଣ। ପଦମୁକ୍ତାରଙ୍କ ଖଳ ପ୍ରବୃତ୍ତିର ଶରବ୍ୟ ହୋଇଛନ୍ତି ସାରା ଗାଁ'ଟିର ଲୋକମାନେ ଓ ତା ସହିତ ନିଜେ ମଣିମା।

ପୀତବାସ ତାଙ୍କର ଏକମାତ୍ର ପୁତ୍ର ସନ୍ତାନ। ପ୍ରଥମରୁ ପାଠକମାନେ ପୀତବାସଙ୍କୁ ଯେପରି ଭେଟନ୍ତି ଉପନ୍ୟାସର ଅନ୍ତିମ ପର୍ଯ୍ୟାୟରେ। କିନ୍ତୁ ଏହି ଚରିତ୍ରଟି ପାଠକମାନଙ୍କର ସମବେଦନାର ପାଠ ହୋଇଉଠେ। ପୀତବାସର ବାଲ୍ୟକାଳର ବର୍ଣ୍ଣନା ଦେବାକୁ ଯାଇ, ପଲ୍ଲୀକୋଳରେ ଲାଳିତପାଳିତ ହୋଇଥିବା ଲେଖକ ସ୍ୱୀୟ ବାଲ୍ୟସ୍ମୃତିର ସ୍ମୃତିଚାରଣ କରିଛନ୍ତି। ଏହି ପିଲାଳିଆ ଦୁଷ୍ଟାମୀରେ ଯେଉଁ ପ୍ରାଣପ୍ରାଚୁର୍ଯ୍ୟ ଭରିରହିଥାଏ, ତାହା ସବୁରି ପାଇଁ ବେଶ୍ ସ୍ୱାଦ୍ୟ। ଗ୍ରାମ୍ୟ ଜୀବନର ସବୁ ସତେଜତା ଓ ପ୍ରଫୁଲ୍ଲତା ଗାଁ'ର ପାଣି, ପବନ, କୋଳିବୁଦା, ଆମ୍ବଗଛ, ନଈ, ତୋଟା, ବରଗଛ ପ୍ରଭୃତିରେ ଯେପରି ଛପି ରହିଥାଏ। ଏହାର ଅନୁଭବ ସ୍ୱତନ୍ତ୍ର, ଉପଲବ୍ଧ ଗଭୀର। ଏହା ହିଁ ବୋଧହୁଏ ଭାରତୀୟ ଜୀବନ ପ୍ରବାହର ମୂଳ ପ୍ରାଣରସ। "ଶଙ୍ଖ ଉପରକୁ ମାଙ୍କଡଚିତ୍ ମାରି ସୁଅକୁ ଡେଉଁ ପହଁରିବା, ପୋଖରୀ ତୁଠରେ ଓ ପୋଖରୀ ମଝିରେ ଥିବା ଦେଉଳ ବା ଦୀପଦଣ୍ଡିର ପଥର ସନ୍ଧିରେ ଚିଙ୍ଗୁଡ଼ି ଧରିବା, କାନିପକାଇ ମାଛ ଧରିବାରେ ସେମାନେ ଅଭ୍ୟସ୍ତ।... କେଉଁ ଗଛ କୋରଡ଼ରେ କେଉଁଠି ଚଢ଼େଇ ଛୁଆ ଦେଇଛି, ତା'ର ହିସାବ ତାଙ୍କର ତୁଣ୍ଡେ ତୁଣ୍ଡେ ଥିଆ

ହୋଇଥାଏ। ପାଖଆଖ ଜଙ୍ଗଲମାନଙ୍କରେ ପାଚୁଥିବା କଣ୍ଟେଇ କୋଳି, ଭଇଁଚ କୋଳି, ଲୁଣିକୋଳି, ମିରିଗା କୋଳି, ମେହେଙ୍ଗା କୋଳି, ନରକୋଳି, ଖୀରିକୋଳି, ଜାମୁକୋଳି, ବେତକୋଳି, ବରକୋଳି, କରମଙ୍ଗା, ଆମ୍ବ, ପଣସ, କେନ୍ଦୁ, ତାଳ ପ୍ରଭୃତି ଗଛମାନଙ୍କରେ ସେମାନଙ୍କର ପୂର୍ଣ୍ଣ ଅଧିକାର। ସେସବୁ ଗଛକୁ ଆଉ କେହି ଫଳ କି କୋଳି ତୋଳିନେଲେ, ଯିଏ ତୋଳିଥିବ, ତା'ର କପାଳ ଫାଟିଲା। ସେମାନେ ଲୁଚିକରି ଠିକ୍ ସମୟରେ ତାକୁ ଧରି ଆଗେ ନିସ୍ତୁକ ଛେଚିବେ, ତା'ପରେ ଯାଇଁ ଯେଉଁ କଥା।"(ମଣିମାଡ଼ିହ, ପୃ.-୨୩)

ଉପନ୍ୟାସିକ ନିଜସ୍ୱ ଜୀବନଦୃଷ୍ଟି ଓ ଜଗତସଂପର୍କିତ ଅଭିଜ୍ଞତାକୁ ଏକ ପରିବର୍ତ୍ତିତ କାନଭାସ୍ ଉପରେ ରୂପରଙ୍ଗ ଦେବାକୁ ଚେଷ୍ଟା କରିଛନ୍ତି। ଯେଉଁ ପୀତବାସ ବାପା-ମା'ଙ୍କର ଏକମାତ୍ର ଅଲିଅଳ ପୁଅ ଭାବରେ ସମୟକୁ ଫୁଙ୍କିମାରି ଉଡ଼ାଇ ଦେବାକୁ ଚେଷ୍ଟା କରୁଥିଲା, ସେଇ ପୀତବାସ କିପରି ସମୟ କବଳିତ ହୋଇଛି, ସମୟ ପାଦତଳେ ଏକ ଅସହାୟ ପେଣ୍ଡୁଟିଏ ପରି ଏ ପ୍ରାନ୍ତରୁ ସେ ପ୍ରାନ୍ତଯାଏ ଘୂରିବୁଲିଛି, ତା'ର କରୁଣ ମାର୍ମିକ ଚିତ୍ର ଏଠାରେ ଲେଖକ ଦେଇଛନ୍ତି। ପାପାର୍ଜିତ ସଂପତ୍ତି କେବଳ ଚିରସ୍ଥାୟୀ ହୁଏ ନାହିଁ। ବୈଶାଖ ଧୂଳିଝଡ଼ ପରି ସବୁ ପ୍ରତିପତ୍ତି, କ୍ଷମତା, ଐଶ୍ୱର୍ଯ୍ୟ ଆଖିପିଛୁଳାକେ ମିଳେଇଯାଏ। ପଦମୁକ୍ତାରଙ୍କ ଐଶ୍ୱର୍ଯ୍ୟର ତଥା ପୀତବାସଙ୍କ ଜୀବନ ଦୟନୀୟ ପରିଣତି ବର୍ଣ୍ଣନା ଛଳରେ ଲେଖକ ନିଜସ୍ୱ ନ୍ୟାୟସିଦ୍ଧ ମନୋବୃତ୍ତିର ପରିଚୟ ପ୍ରଦାନ କରିଛନ୍ତି। କଳେବଳେ କୌଶଳେ ପଦମୁକ୍ତାର ନିଜ ଜୀବଦ୍ଦଶାରେ ଦୁଇ ହାତମୁଠାରେ ଯେଉଁ ସଂପତ୍ତି ଅର୍ଜନ କରିଥିଲେ; ମାତ୍ର ଗୋଟିଏ ପିଢ଼ିରେ ପୀତବାସ ତାକୁ ବେଲୁନ୍ ପରି ଆକାଶକୁ ଉଡ଼ାଇଦେଲେ। ଶେଷରେ ଚୋରି କରିବାକୁ ଚେଷ୍ଟାକରି ଜେଲକୁ ଚାଲାଣ ହେଲେ। ଜେଲରୁ ଖଲାସ ହୋଇ ନିଜର ଭିଟାମାଟି ଛାଡ଼ି କଲିକତାରେ ପହଞ୍ଚିଲେ।

ଏତିକିରେ କିନ୍ତୁ ପୀତବାସଙ୍କ ଜୀବନରେ ସୌଭାଗ୍ୟ ଫେରିଆସିନାହିଁ। ତାଙ୍କୁ ପିତୃକର୍ମର ପରିଶୋଧ କରିବାକୁ ହୋଇଛି ନାନା ଭାବରେ। ସୌଭାଗ୍ୟଲକ୍ଷ୍ମୀ ଥରେ ବିମୁଖ ହୋଇ ମୁହଁଫେରାଇ ଚାଲିଗଲେ, ଆଉ ଫେରିଆସନ୍ତି ନାହିଁ। ପୀତବାସ ନାନା ଦୁର୍ଯ୍ୟୋଗ ଦେଇ ଗତିକଲେ। ଆଗକୁ ପଛକୁ ହୋଇ ସଂସାରରେ ଆଉ କେହିନାହିଁ। ବିମାହିତ ପତ୍ନୀ ଅବହେଳା ନିର୍ଯ୍ୟାତନାରେ ବହୁ ଆଗରୁ ସଂସାର ଛାଡ଼ି ଚାଲିଗଲେଣି। ଯେଉଁମାନେ ଏକଦା ସୁଖର ସାଥୀ ହୋଇ ପୀତବାସଙ୍କ ଚତୁଃପାର୍ଶ୍ୱରେ ଘୂରି ବୁଲୁଥିଲେ, ସେମାନେ କେହିନାହାଁନ୍ତି। ପ୍ରବଳ ବନ୍ୟାସ୍ରୋତରେ ଭାସିଯାଉଥିବା ଖଣ୍ଡିଏ କାଗଜ ଡଙ୍ଗାତୁଲ୍ୟ ସେ ଘୂରି ବୁଲୁଛନ୍ତି। କେତେବେଳେ ବୁଡ଼ିଯିବେ, ସେ କଥା ନିଜକୁ ଅଜଣା। ଯେଉଁ ବାରନାରୀ ଚନ୍ଦୁରୀ ତାକୁ ଏକଦା ନର୍କକୁ ଟାଣି ନେଇଥିଲା, ତା'ରି ଝିଅ ବିମଳାକୁ ନର୍କରୁ ଉଦ୍ଧାର କରିବାକୁ ଯାଇ ସେ ପୁଣି ଦୁର୍ଭାଗ୍ୟକୁ ବରଣ କରିବସିଲେ। ମାତ୍ର ପୀତବାସ ଭୁଲିପାରି ନଥିଲେ ନିଜ ଗାଁ'ର

ମମତା ମଧୁର ସ୍ମୃତି, ତା'ର ଆକର୍ଷଣ। ସେ ପୁଣି ଫେରି ଆସିଲେ ନିଜ ଗାଁ'କୁ। ନିଜର ଘରଡ଼ିଅ ଖଣ୍ଡକ ମଧ୍ୟ ହସ୍ତାନ୍ତର ହୋଇଯାଇଥିଲା। ସତ୍ୟବାଦୀ ସାକ୍ଷୀଗୋପାଳରେ ପାଗଳା ପରି ଲୁଚିଛପି ଦିନ ଅତିବାହିତ କଲେ। ଲକ୍ଷ୍ୟଶୂନ୍ୟ ପୀତବାସ ପୁଣି କିଛିଦିନ ପରେ ଅନ୍ତର୍ଦ୍ଧାନ ହୋଇଗଲେ। ଗୋଟିଏ ପରିବାରର ସବୁ କିଛି ଆଶା, ଅଭିଳାଷ ଚିରଦିନ ପାଇଁ ଅବଲୁପ୍ତ ହୋଇଗଲା। ଲେଖକଙ୍କ ଭାଷାରେ - "ପଦମୁକ୍ତାର ସିନା ଠକାଠକି କରି ସଂପତ୍ତି କରିଥିଲେ, କିନ୍ତୁ ପୀତବାସଙ୍କର ଦୋଷ କଅଣ ? ତାଙ୍କର ଏ ଦଶା ହେଲା କାହିଁକି ? ବାପର ଚୋରିଧନ ତ ପୁଅର ପିତୃଅର୍ଜିତ ବୋଲି କୁହାଯାଏ। ଏ କ୍ଷେତ୍ରରେ ବାପର ଅଧର୍ମତକ ବି ପୁଅର ପିତୃଅର୍ଜିତ ହୋଇ ପୁଅ ଜୀବନ୍ତ ନର୍କରେ ଘାଣ୍ଟି ହେଲା।"(ମଣିମା ଡିହ, ପୃ-୧୦୯)

ଲେଖକ ନୀଳମଣି ଚରିତ୍ର ମାଧ୍ୟମରେ ମଣିଷର ଅନନ୍ତ ଧନପିପାସାକୁ ରୂପରେଖ ଦେଇଛନ୍ତି। ମାତ୍ର ପ୍ରତ୍ୟେକ କ୍ଷେତ୍ରରେ ସେ ଫକୀରମୋହନଙ୍କ ପରି ଦୋଷୀକୁ ଦଣ୍ଡ ଦେବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି। ଲୋକଙ୍କ ଜୀବନାଦର୍ଶ ସବୁ ସମୟରେ ନୀତିଗର୍ଭିତ ହୋଇଥିବାରୁ କଥାବସ୍ତୁ ଅବତାରଣାରେ ସେ ଏପରି ପରିଣତି ପ୍ରତି ସଯତ୍ନ ହୋଇ ଉଠିଛନ୍ତି। "ମୁକ୍ତାରେ ପୃଥିବୀରୁ ଖାଲିହାତରେ ଫେରିଥିଲେ, କିନ୍ତୁ ତାଙ୍କର ଅତୃପ୍ତଆତ୍ମା ହୁଏତ ସେ ସଂପତ୍ତି ପଛେ ପଛେ ବୁଲୁଥିଲା। ତାଙ୍କର ପ୍ରେତାତ୍ମା ହୁଏତ ନୀଳମଣି ନାମକ ଜଣେ ଲେକକୁ ଆକ୍ରମଣ କଲା, ନୀଳମଣି ବଂଶକୁ ଭୂତ ଲାଗିଲା ପରି ସେମାନେ ମଧ୍ୟ ସେ ସଂପତ୍ତି ପାଇଁ ପାଗଳ ହେଲେ।"(ମଣିମାଡ଼ିହ, ପୃ-୯୪)

ମଣିମା ଥିଲେ ଓଡ଼ିଆ ସଂସ୍କୃତି, ପରମ୍ପରା, ଐତିହ୍ୟର ଅଚଳାୟତନ। ଗୋପାଳଭକ୍ତ ମଣିମାଙ୍କର ଥିଲା ଅନେକ ଅଭାବ। ମାତ୍ର ଏ ଅଭାବ ଥିଲା ପାର୍ଥିବ। ଅପାର୍ଥିବ ସୁଖ, ଶାନ୍ତି, ସନ୍ତୋଷରେ ଭରିରହିଥିଲା ମଣିମାଙ୍କର ହୃଦୟ। ମଣିମା ଆଉ ନାହାନ୍ତି। ମଣିମାଙ୍କ ବଂଶରେ ଆଉ କେହି ନାହିଁ, ସେ ପରିବାରର ଗୁରୁଗୌରବ ଗାନ କରିବାକୁ। ଲେଖକଙ୍କ ଭାବାବେଗ ତୁଙ୍ଗିମା ସ୍ପର୍ଶ କରିଛି। ମଣିମାଙ୍କ ତିରୋଧାନରେ। ମଣିମାଙ୍କ ତିରୋଧାନ ପରେ ତାଙ୍କ ଘରର ଖବର କଅଣ ହେଲ, ଆଉ କେହି ଜାଣନ୍ତିନାହିଁ। ଏବେ ସେ ଉଆସ ନାହିଁ, ସେ ହଂସ ଆଉ କାକଳି କରି ସତ୍ୟବାଦୀର ଦାଣ୍ଡରେ ପଟୁଆର କରି ଯାଉନାହାନ୍ତି। ସେ ପାରା, ଚଢ଼େଇ, ଜୀବଜନ୍ତୁ କି ମଣିଷ ଆଉ କେହିନାହିଁ। ପଡ଼ିରହିଛି କେବଳ ଉଆସର ସ୍ଥାନଟା, ଯାହାର ନାମ ହେଉଛି 'ମଣିମାଡ଼ିହ'। ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠାତା ଇନ୍ଦ୍ରଦ୍ୟୁମ୍ନଙ୍କ ବଂଶ ପରି ସାକ୍ଷୀଗୋପଳ ମନ୍ଦିର ପ୍ରତିଷ୍ଠାତା ରାଜବଂଶ ବି ନିଶ୍ଚିହ୍ନ ହୋଇଛି। ପୁରୀର ଇନ୍ଦ୍ରଦ୍ୟୁମ୍ନ ପୋଖରୀ ପରି ମଣିମାଙ୍କ ନାଁ ନେଇ ଚନ୍ଦନପୋଖରୀ ଉପରେ 'ମଣିମାଡ଼ିହ' ପଡ଼ିରହିଛି।"(ମଣିମାଡ଼ିହ-୧୧୮)

ଯେଉଁ ଗ୍ରାମ୍ୟ ସଂସ୍କୃତି ଭାରତୀୟ ଜୀବନଧାରାର ମହାନତା ସ୍ୱରୂପ କାଳେ କାଳେ ବିବେଚିତ ହୋଇଆସିଛି - ମୁସଲମାନ, ମୋଗଲ ଓ ଇଂରେଜ ଶାସନକାଳରେ ତା'ର

ଅବକ୍ଷୟ ଆରମ୍ଭ ହୋଇ ଅଦ୍ୟାବଧି ପ୍ରବାହିତ ହୋଇଚାଲିଛି । ସେହି ଅବକ୍ଷୟ ପ୍ରବାହକୁ ଭାରତକୁ ରକ୍ଷା କରିବାକୁ ହେବ । ନଚେତ୍ ଅନ୍ତଃସାରଶୂନ୍ୟ ହୋଇ ଭାରତୀୟ ସଂସ୍କୃତି ବିଶ୍ୱର ଅନ୍ୟାନ୍ୟ ଅବଲୁପ୍ତ ସଂସ୍କୃତି ପରି ଲୋପ ପାଇଯିବ । ସେଥିପାଇଁ ଲେଖକ ସଚେତନ ଭାବରେ ଗ୍ରାମ୍ୟସଂସ୍କୃତିର ସକଳବିଧ ଐଶ୍ୱର୍ଯ୍ୟକୁ ଟେକି ଧରିବାକୁ ଧ୍ୟାନନିଷ୍ଠ ହୋଇଉଠିଛନ୍ତି । ମୁସଲମାନ ଶାସନ କାଳରେ ନାନାବିଧ କୁସଂସ୍କାର, ଅନ୍ଧବିଶ୍ୱାସ ଏ ଜାତିକୁ ଗ୍ରାସ କରିଥିଲା । ଧାପେ ଧାପେ ହୋଇ ଏ ଜାତି ଅଧୋଗତିର ନିମ୍ନଦେଶକୁ ଓହ୍ଲାଇ ଯାଇଥିଲା ।

ଲେଖକଙ୍କ ସ୍ୱଦେଶାନୁରାଗ ଓ ମାତୃଭୂମିପ୍ରୀତି ଯଥାର୍ଥରେ ପ୍ରଶଂସାର୍ହ । ଯେଉଁଠି ସେ ସାମାନ୍ୟତମ ସୁଯୋଗ ପାଇଛନ୍ତି, ନିଜ ମାତୃଭୂମିର ମହାନତାକୁ ଶତମୁଖରେ ଗାନ କରିଛନ୍ତି । ଅନେକ କ୍ଷେତ୍ରରେ ସେ ଜଣେ ନିଷ୍ଠାପର ଗବେଷକ ପରି ଇତିହାସର ଅନ୍ଧାରୀମୂଳକରେ ପ୍ରବେଶ କରିଛନ୍ତି ଓ ତହିଁରୁ ବିସ୍ମୃତ ଅଧ୍ୟାୟକୁ ଆବିଷ୍କାର କରିବାକୁ ଚେଷ୍ଟା କରିଛନ୍ତି । ଛୋଟ ରତ୍ନଚିରା ନଈଟିଏ ମଧ୍ୟ ତାଙ୍କ ଚେତନାରେ ଇତିହାସ ଓ କିମ୍ବଦନ୍ତୀର ସମସ୍ତ ଗୁରୁଗୌରବ ନେଇ ଉଭାହୋଇଛି । ଚତ୍ନଚିରା ନଦୀ ସଂପର୍କରେ ପ୍ରଚଳିତ ଏକ ଚମତ୍କାର ଲୋକକଥାକୁ ସେ ସୁନ୍ଦର ଭାବରେ ଏଠାରେ ଉପସ୍ଥାପନ କରିଛନ୍ତି । "ଶୁଣାଅଛି, ରାମ-ଲକ୍ଷ୍ମଣ, ସୀତା ବନବାସ କରି ଦଣ୍ଡକାରଣ୍ୟ ଦିଗକୁ ଯାତ୍ରା କଲାବେଳେ ସେଇ ସ୍ଥାନରେ କେଉଁଠି ସୀତାଙ୍କର ବେଲ ଖାଇବାକୁ ଇଚ୍ଛା ହେଲା । ଲକ୍ଷ୍ମଣ ଆଗଭରହୋଇ ବେଲ ତୋଳିବାକୁ ବେଲଗଛରେ ଚଢ଼ିଲେ ଓ ପାଚିଲା ବେଲ ତୋଳି ତଳକୁ ଫୋପାଡ଼ିଦେଲେ । ରାମ ବୋଧହୁଏ ଅଣ୍ଟି ଦେଖାଇ ସେଗୁଡ଼ିକୁ ଧରି ନେଉଥିଲେ, ତା ନହେଲେ ସେ ସୁସ୍ୱାଦୁ ବେଲର ଚୋପା ଯେପରି ପତଳା, ତାହା ତଳେ ପଡ଼ି ମାଟିରେ ମିଶି ମେଞ୍ଚାଏ ହୋଇଯାଇଥାନ୍ତା । ବେଲ ଭଙ୍ଗା ହେଲା । ସମସ୍ତେ ଖାଇଲେ । ପାଟି ଅଠା ଅଠା ହୋଇଗଲା । ଭାଇ ଦୁହିଁଙ୍କର ଦାଢ଼ି ଓ ଜଟାରେ ହାତ ଲାଗିଯିବା ପୂର୍ବରୁ ଅଠାହାତକୁ ଧୋଇବା ଦରକାର ହେଲା । ଧୁଆଧୋଇ ହେବାକୁ ନଦୀଟିଏ ସନ୍ଧାନ ପାଇଁ ଲକ୍ଷ୍ମଣ ପୁଣି ଗଛ ଉପରେ ଉଠିଲେ, କିନ୍ତୁ ଆଖପାଖରେ କେଉଁଠାରେ ନଦୀଟିଏ ଦେଖିଲେ ନାହିଁ । ଗଛରୁ ଓହ୍ଲାଇ ସୀତାଙ୍କ ପାଇଁ ପିଇବା ପାଣି ଆଣିବାକୁ ଯାଇ ଆଖପାଖର କୂଅ, ଗାତ, ପୋଖରୀ ସବୁ ପରୀକ୍ଷା କଲେ । କିନ୍ତୁ ସମୁଦ୍ରପାଖ ଅଞ୍ଚଳ ହୋଇଥିବାରୁ ସେ ସବୁର ପାଣି ଛଡ଼ାମୂତ ପରି ଖାରିଆ । ତେଣୁ ଲକ୍ଷ୍ମଣ ଓ ସୀତା ଯୋଡ଼ହସ୍ତ ହୋଇ ରାମଚନ୍ଦ୍ରଙ୍କୁ ସଙ୍କଟରୁ ଉଦ୍ଧାର କରିବାକୁ ପ୍ରାର୍ଥନା କରିଥିଲେ । ରାମଚନ୍ଦ୍ର ରତ୍ନ ମୁଦିଟିରେ ମାଟିକୁ ଦୁଇଭାଗ କରି ଚିରିଦେବାରୁ ସେଠି ସ୍ୱଚ୍ଛ-ସୁମିଷ୍ଟ ଉଦକଧାରା ନଦୀଟିଏ କୁଳୁକୁଳୁ ହୋଇ ବହିଗଲା । ସେ ନଦୀର ନାମ ହେଲା ରତ୍ନଚିରା । ସୀତାଙ୍କ ଶୋଷ ମଲା ଓ ସମସ୍ତଙ୍କ ହାତମୁହଁ ଧୁଆହେଲା ।"(ମଣିମାଡ଼ିହ, ପୃ.୭୮-୭୯)

'ମଣିମାଡ଼ିହ' ଉପନ୍ୟାସଟି ପଢ଼ିଲେ ମନେହୁଏ, ଫକୀରମୋହନୀୟ ଶୈଳୀର ଏକ ନୂଆ ରୂପାନ୍ତର। ଚରିତ୍ରଚିତ୍ରଣରେ, କଥାବସ୍ତୁ ସଂଯୋଜନା କ୍ଷେତ୍ରରେ, ଘଟଣା ବିନ୍ୟାସରେ, ପରିବେଶ ବର୍ଣ୍ଣନାରେ ଲେଖକଙ୍କ ଉପରେ ଫକୀରମୋହନଙ୍କ ପ୍ରଭାବ ପରିଲକ୍ଷିତ ହୋଇଥାଏ। ବେଳେ ବେଳେ ଲେଖକ ନିଜର ପ୍ରତ୍ୟକ୍ଷ ଭାବରେ ଉପନ୍ୟାସରେ ଅବତୀର୍ଣ୍ଣ ହୋଇ ନିଜସ୍ୱ ମନ୍ତବ୍ୟ ଓ ଅଭିବ୍ୟକ୍ତି ପ୍ରଦାନ କରିଥାନ୍ତି। ମାତ୍ର ଉଲ୍ଲେଖଯୋଗ୍ୟ ଯେ, ଫକୀରମୋହନୀୟ ଶୈଳୀ ଏକାନ୍ତ ଭାବରେ ଏକ ଅନୁକରଣୀୟ ସ୍ୱତନ୍ତ୍ର ଶୈଳୀ ହୋଇଥିବାରୁ ଓ ଫକୀରମୋହନଙ୍କ ଅନନ୍ୟ ସାଧାରଣ ଶବ୍ଦଚାତୁରୀ, ହାସ୍ୟରସ ପରିବେଷଣରେ ଚଟୁଳତା ପ୍ରଭୃତି ତାଙ୍କ ଗଦ୍ୟରୀତିକୁ ଯଥାର୍ଥ ଭାବରେ ଅନୁସରଣ କରିବା ଆୟସ ସାପେକ୍ଷ। ଔପନ୍ୟାସିକ ବିକ୍ରମ ଦାସଙ୍କ ଦୀର୍ଘ ବର୍ଣ୍ଣନାରୀତି ବେଳେବେଳେ ପ୍ରବନ୍ଧ ପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ଭାରାକ୍ରାନ୍ତ ହୋଇଉଠନ୍ତି। ଏହି ଦୃଷ୍ଟିରୁ ଉପନ୍ୟାସର କଳାମୂଲ୍ୟ ଅନେକ କ୍ଷେତ୍ରରେ ବ୍ୟାହତ ହୋଇଛି। କହିବାର କଥା ହେଉଛି, ଗୋଟିଏ ଉଚ୍ଚକୋଟୀର କଳାସୃଷ୍ଟି ଚରିତ୍ରମାନେ ହିଁ ଔପନ୍ୟାସିକଙ୍କର ମୁଖପାତ୍ର। ଲେଖକଙ୍କର ବକ୍ତବ୍ୟ ସବୁବେଳେ ପରୋକ୍ଷଧର୍ମୀ। ଏତଦ୍‌ବ୍ୟତୀତ ଗଳ୍ପଗୁମ୍ଫନ ରୀତିରେ ବିଶେଷ ଚମତ୍କାରିତା କରିବର୍ତ୍ତେ ସହଜ କଥକତା ଭଙ୍ଗୀ ଅନୁସୃତ। କେତେକ କ୍ଷେତ୍ରରେ ମନେହୁଏ, ଯେପରି କିଛି କହିବା ପାଇଁ ହିଁ କେବଳ କୁହାଯାଇଛି। ଏସବୁ ସତ୍ତ୍ୱେ 'ମଣିମାଡ଼ିହ' ଗ୍ରାମୀଣ ଜୀବନର ଏକ ଚମତ୍କାର ଆଲେଖ୍ୟ ଓ ସାମାଜିକ-ଐତିହାସିକ ଉପନ୍ୟାସ ରୂପେ ଏକ ସୁଖପାଠ୍ୟ ଓ ସାର୍ଥକ ଗ୍ରନ୍ଥ।

ଲେଖକଙ୍କ ଅନ୍ୟତମ କୃତି 'ଅଲିଭା ଇତିହାସ' ଉପନ୍ୟାସ ପ୍ରକାଶିତ ହୁଏ ୧୯୮୨ ମସିହାରେ। ଏ ଉପନ୍ୟାସଟି ଦେଶପ୍ରେମର ଏକ ପ୍ରଜ୍ୱଳିତ ବହ୍ନିଶିଖା। ଅସୀମ ତ୍ୟାଗ, ଆତ୍ମାହୂତିର ଚରୁଅନ୍ନ ସ୍ୱରୂପ ଏ ଜାତି ସ୍ୱାଧୀନତା ଲାଭ କରିଥିଲା, ସେଇ ସ୍ୱାଧୀନତାର ବିଡ଼ମ୍ବିତ ରୂପକୁ ଦେଖି ଲେଖକଙ୍କ ପ୍ରାଣରେ ଯେଉଁ ଉଦ୍‌ବେଳନ ସୃଷ୍ଟି ହୋଇଛି, ତା'ର କଳାଲିପି ହେଉଛି 'ଅଲିଭା ଇତିହାସ'। ଆଜିର ଚାକଚକ୍ୟପୂର୍ଣ୍ଣ ଦୁନିଆଁରେ ଯୁବପିଢ଼ି ସ୍ୱାଧୀନତା ସଂଗ୍ରାମର ଲୁହଲହୁର କାହାଣୀକୁ ବହୁ ପଛରେ ପକାଇ ଆତ୍ମସୁଖାନ୍ୱେଷୀ ଚିନ୍ତାଧାରା ଦ୍ୱାରା ଗଭୀର ଭାବେ ଅନୁପ୍ରାଣିତ। ତା ନହୋଇଥିଲେ ସ୍ୱାଧୀନତା ପ୍ରାପ୍ତିର ପଚାଶ ବର୍ଷ ପୂର୍ତ୍ତି ପାଳିତ ନହୋଇ ମଧ୍ୟ ଏ ଜାତି ଆଜି ପଥଭ୍ରଷ୍ଟ ହୋଇନଥାନ୍ତା। ଲକ୍ଷ୍ୟଚ୍ୟୁତ ହୋଇ ଅନ୍ୟର ଅନ୍ଧାନୁକରଣ କରୁନଥାନ୍ତା। ନୈତିକ ଓ ଆଧ୍ୟାତ୍ମିକ ସ୍ତରରେ ଘୋର ଅଧୋଗତି ଦେଖାଦେଇନଥାନ୍ତା।

ଭାରତୀୟ ସଂସ୍କୃତି, ସଭ୍ୟତା ପାଇଁ ମାଡ଼ିଆସୁଥିବା ସେଇ ଭୀଷଣ ସାମୁଦ୍ରିକ ଝଡ଼କୁ ମରୁଭୂମିର ଓଟ ପରି ବହୁ ପୂର୍ବରୁ ଲକ୍ଷ୍ୟ କରି ବ୍ୟଥିତ ହୋଇଉଠିଛନ୍ତି ଲେଖକ। ଭୋଗବିଳାସରେ ଲିପ୍ତ ଥିବା ଆତ୍ମବିସ୍ମୃତ ଏ ଜାତିର କାନେ କାନେ ପୁନର୍ବାର ସେଇ ଅଲିଭା

ଇତିହାସର ଗାଥାକୁ ଗାନ କରିବାକୁ ଚେଷ୍ଟା କରିଛନ୍ତି। ମନେପକାଇ ଦେଇଛନ୍ତି ଏ ଜାତିର ପୂର୍ବପୁରୁଷକୁ କେତେ ଲହୁ ଢାଳିବାକୁ ପଡ଼ିଥିଲା, କେତେ ଲୁହ ତର୍ପଣ କରିବାକୁ ହୋଇଥିଲା। ଔପନ୍ୟାସିକଙ୍କର ଏ ସାଧୁ ଉଦ୍ୟମକୁ ଭବିଷ୍ୟତ ନିଶ୍ଚିନ୍ତ ଭାବରେ ସମ୍ମାନ ଦେବ।

ଭାରତୀୟ ଜାତୀୟ ସଂଗ୍ରାମର ଏକ ମନୋଜ୍ଞ କଳାଲେଖ୍ୟ ହେଉଛି 'ଅଲିଭା ଇତିହାସ'। ଏ ଜାତିର ଆତ୍ମଗାଥା ଏଥିରେ ଉତ୍କୀର୍ଣ୍ଣ ହୋଇଛି। ଜଣେ ଇତିହାସର ଗବେଷକ ଭୂମିକାରେ ସତେକି ଅବତୀର୍ଣ୍ଣ ହୋଇଛନ୍ତି ଔପନ୍ୟାସିକ। ନାୟକ ନବକୁମାର ଓ ଶରଧା ଦୁଇଟିଯାକ କାଳ୍ପନିକ ଚରିତ୍ର ମାଧ୍ୟମରେ ସେ ଅତି ଚମତ୍କାର ରୀତିରେ ସତ୍ୟ ରୂପାୟନ କରିଛନ୍ତି। ଐତିହାସିକ ଉପନ୍ୟାସର ଏହା ହିଁ ବୈଶିଷ୍ଟ୍ୟ। କେବଳ କେତେକ ଚରିତ୍ର ଓ କାଳ୍ପନିକ ଘଟଣାକୁ ବାଦ୍‌ଦେଲେ କଥାବସ୍ତୁ ମୁଖ୍ୟଅଂଶଟି ସତ୍ୟ ଆଧାରିତ ହୋଇଥାଏ। ଏ କ୍ଷେତ୍ରରେ ଲେଖକ ଐତିହାସିକ ଉପନ୍ୟାସର ସମସ୍ତ ମର୍ଯ୍ୟାଦା ରକ୍ଷା କରିପାରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ।

"ନୂଆଗଡ଼, ଗଡ଼ଜାତ ଓ ମୋଗଲବନ୍ଦୀ ଖୋର୍ଦ୍ଧା – ସେ ଦୁହିଁଙ୍କ ସୀମାର ଦୁଇପଟେ ଡେଙ୍ଗା ଡେଙ୍ଗା ପଥର କେତେଟା ଉପରକୁ ମୁଣ୍ଡଟେକି ଛିଡ଼ା ହୋଇଛନ୍ତି। ତାଙ୍କ ଦୁଇପଟେ ବଡ଼ସାନ ଧାଡ଼ିଏ ଦି'ଧାଡ଼ି ଲଣ୍ଡା ଲଣ୍ଡା ପଥର ମୁଣ୍ଡିଆ ଅସୁରଙ୍କ ଅସଂଯତ ବାହାଡ଼ା ଦାନ୍ତପରି ଠେଲାଠେଲି ହୋଇ ସୀମା ଆଡ଼କୁ ଆଗେଇ ଆସୁଥିଲା ପରି ଜଣାପଡ଼ନ୍ତି। ମୁଣ୍ଡିଆ ତଳେ ଖୋର୍ଦ୍ଧା ଆଡ଼କୁ ଲମ୍ବିଛି ଟାଙ୍ଗରା ଭୂଇଁ। ସେଇ ଅମାନିଆ ପଥୁରିଆ ଭୂଇଁକୁ ମୁଣ୍ଡଝାଳ ତୁଣ୍ଡରେ ମାରି ପଥର ଚାଞ୍ଛି, କୂଅ ପୋଖରୀ ଖୋଳି ଦୁଇଗୋଡ଼ିଆ ଜୀବ ମଣିଷଗୁଡ଼ାକ ଚାଷଭୂଇଁରେ ପରିଣତ କରିଛନ୍ତି।"(ଅଲିଭା ଇତିହାସ, ପୃ-୧) ଉପନ୍ୟାସ ଆରମ୍ଭରୁ ସ୍ରଷ୍ଟାମାନସ ବନପର୍ବତ, ନଦୀନାଳଘେରା ଓଡ଼ିଶାର ପୁରପଲ୍ଲୀର ସୌକୁମାର୍ଯ୍ୟକୁ ଆବିଷ୍କାର କରିବାକୁ ଚେଷ୍ଟା କରିଛନ୍ତି। ଗାଁ ଗହଳର ଜୀବନଚର୍ଯ୍ୟା କରିବା ଅବକାଶରେ ଜାତୀୟ ସଂଗ୍ରାମର ଏକ ନିଖୁଣ ଚିତ୍ର ଦେବା ପାଇଁ ସେ ଯେଉଁ ଅନ୍ତର୍ନିହିତ ପ୍ରେରଣା ଲାଭ କରିଛନ୍ତି, ତାହା ଅନୁଭବସିଦ୍ଧ ଓ ସ୍ୱତଃସ୍ଫୂର୍ତ୍ତ। ଗାଁ'ର ମଣିଷ ସହଜ, ସରଳ ପ୍ରକୃତିର ମଣିଷ। ସହରର ଚାକଚକ୍ୟ, କୃତ୍ରିମତା ଛଳନା ତା ପାଖରେ ନଥାଏ। ବିଂଶ ଶତାବ୍ଦୀର ଶେଷପାଦରେ ସହରୀ ସଭ୍ୟତାର ବହୁଳ ପ୍ରସାର ଘଟିଛି। ଅପର ପକ୍ଷରେ ଜୀବନର ଯେଉଁ ସ୍ୱଚ୍ଛଳତା, ତାହା ବହୁ ଭାବରେ ବାଧାପ୍ରାପ୍ତ ହୋଇଛି।

ଏପରି ଏକ ସମସ୍ୟାକୁ ଲକ୍ଷ୍ୟକରି ଶିଳ୍ପୀ ବିକ୍ରମ ଦାସ ଗ୍ରାମ୍ୟ ପରିବେଶକୁ ହିଁ ତାଙ୍କ ଉପନ୍ୟାସର ପଟ୍ଟଭୂମି ଭାବରେ ନିର୍ବାଚନ କରିଛନ୍ତି। ସେହିପରି ଆସାମ ଚା' ବଗିଚାରେ ଓଡ଼ିଆ କୁଲି ଶ୍ରମିକମାନଙ୍କର ଅକଥନୀୟ ଦୁର୍ଦ୍ଦଶା ତାଙ୍କ ଶିଳ୍ପୀପ୍ରାଣକୁ ଗଭୀର ଭାବେ ସ୍ପର୍ଶ କରିଛି। ଏଥିରେ ଲେଖକ ମର୍ମାହତ ହୋଇଛନ୍ତି। ସେହି ସମସ୍ୟା ସଂପର୍କରେ

ପାଠକବର୍ଗଙ୍କୁ ସଚେତନ କରାଇବା ଲାଗି ସେ ନାୟକ-ନାୟିକାଙ୍କୁ ଆସାମ ନେଇଯାଇଛନ୍ତି। ଭାରତର ମୁକ୍ତି ସଂଗ୍ରାମ ତାଙ୍କ ଚେତନାର ଏକ ବିଶିଷ୍ଟ ଅଂଶ ହୋଇ ଯାଇଥିବାରୁ ତାଙ୍କ ପ୍ରାୟ ସମସ୍ତ ରଚନାର ସେ ସବୁର ବାସ୍ତବ ଜୀବନ୍ତ ଅଭିବ୍ୟକ୍ତି ଘଟିଛି। ସମୟ, ପରିବେଶ ଓ ପାରିପାର୍ଶ୍ୱିକ ଅବସ୍ଥା, ଏ ତିନୋଟି ଯାକର ଭାବବଳୟ ମୁଖ୍ୟତଃ ଏକ ନିର୍ଦ୍ଦିଷ୍ଟ ଜୀବନାଦର୍ଶ ମଧ୍ୟରେ ଘୂର୍ଣ୍ଣାୟମାନ। ତାହା ହେଉଛି, ସ୍ୱାଧୀନତା ପାଇଁ ବିପୁଳ ଆବେଗ, ଏକ ନୂତନ ଭାରତ ଗଠନର ସ୍ୱପ୍ନ ଓ ସଂକଳ୍ପ ତଥା ଜାତୀୟ ଭାବାଦର୍ଶ ପ୍ରତିଷ୍ଠା। ଏ ତିନୋଟିଯାକ ଲକ୍ଷ୍ୟ ଏକାଧାରାରେ ପ୍ରଧାବିତ ହେଉଥିବାରୁ ଲେଖକଙ୍କର ଜାତୀୟ ପ୍ରବୃତ୍ତିଟି  ସମସ୍ତ ରଚନାରେ ବେଶ୍ ସ୍ପଷ୍ଟ ଓ ସୁତୀବ୍ର।

ଗୋଟିଏ କଥା ଏଠାରେ ଉଲ୍ଲେଖ ପରାଯାଇପାରେ ଯେ, ଲେଖକ କୌଣସି ପରୀକ୍ଷାନିରୀକ୍ଷା ବା ବାଦବିସମ୍ବାଦ ମଧ୍ୟରେ ତାଙ୍କର ଏହି ବଳିଷ୍ଠ ପ୍ରବୃତ୍ତିକୁ ବାଟବଣା କରାଇବାକୁ ଆଦୌ ସ୍ପୃହଣୀୟ ମନେ କରିନାହାନ୍ତି। ଡକ୍ଟର ଦାସ ତାଙ୍କ ସୃଜନୀ ପ୍ରତିଭାକୁ ଏଇ ନିର୍ଦ୍ଦିଷ୍ଟ ଦିଗରେ ପରିଚାଳିତ କରାଇ ଯଶସ୍ୱୀ ହୋଇପାରିଛନ୍ତି। ତାଙ୍କ ସୃଷ୍ଟି ଆଭିମୁଖ୍ୟଟି ସେଥିପାଇଁ ନିର୍ଦ୍ଦିଷ୍ଟ ଅଙ୍ଗୀକାର ବହନ କରି ସାର୍ଥକ ହୋଇପାରିଛି। ସ୍ୱଦେଶ ପ୍ରେମର ଗଭୀର ଆବେଦନ ଉପନ୍ୟାସର ପ୍ରାଣରସ ହୋଇଥିବାରୁ ତାହା ପାଠକକୁ ଅନ୍ତରଙ୍ଗ ଭାବେ ଛୁଇଁଥାଏ।

କେତେବେଳେ ସବୁଜ ଭାବାଲୁତା, ପ୍ରେମ, ପ୍ରେମ ପାଇଁ ଉତ୍କଣ୍ଠା, ଭାବପ୍ରବଣତା ପ୍ରଭୃତି ମାନବୀୟ ସହଜାତ ଦୁର୍ବଳତା ଜାତୀୟ ଜୀବନର ମହାନ୍ ଲକ୍ଷ୍ୟପଥରେ ଅନ୍ତରାୟ ସୃଷ୍ଟି କରିନାହିଁ। ନବକୁମାର ପରି ଏକ ଆଦର୍ଶ, ତ୍ୟାଗୀ ଚରିତ୍ରର ଜୀବନଚର୍ଯ୍ୟା କରି ଲେଖକ ଜାତି ନିକଟରେ ଏକ ମହାନ୍ ଆଦର୍ଶ ସୃଷ୍ଟି କରିବାକୁ ଚେଷ୍ଟା କରିଛନ୍ତି। କେବଳ ନବକୁମାର ବା ତା'ର ପରିବାର ଏ ଜାତି ପାଇଁ ଆତ୍ମାହୁତି ଦେଇନାହିଁ; ତା'ରି ପରି ଅସଂଖ୍ୟ ପରିବାର ଏ ଜାତୀୟ ଯଜ୍ଞରେ ଆହୁତି ଦେଇଯାଇଛନ୍ତି। "ସେ ସଫଳତାର ସହିତ ଅତ୍ୟାଚାରୀ ସିମ୍ପସନ୍‌ଙ୍କ ପ୍ରାଣ ନେଇଥିବାରୁ ତାଙ୍କର ନିଜ ଫାଶୀ ଆଦେଶରେ ତାଙ୍କ ମନରେ କୌଣସି ଦୁଃଖ ବା ଗ୍ଲାନି ହୋଇନଥିଲା। ସେ ଏତେ ଖୁସି ଓ ପ୍ରଫୁଲ୍ଲ ଥିଲେ ଯେ, ଫାଶୀ ପାଇବାର ପୂର୍ବରୁ ଜେଲ୍ ଜୀବନର କେତେଟା ମାସ ଭିତରେ ତାଙ୍କର ଓଜନ ପନ୍ଦର ପାଉଣ୍ଡ ବଢ଼ିଯାଇଥିଲା। ସେ ବିଂଶ ବର୍ଷର ଯୁବକ; କିନ୍ତୁ ତାଙ୍କ ଜ୍ଞାନର ପରିସର ଏତେ ଅଧିକ ଥିଲା ଯେ,  ସେ ଜେଲରୁ ତାଙ୍କ ଭାଉଜଙ୍କ ପାଖକୁ ଚିଠିଲେଖିଥିଲେ - ଆତ୍ମା ଅମର। ସେ ଦ୍ୱୀପାନ୍ତର ଆଦେଶ ପାଇ କଳାପାଣିରେ ସ୍ଥାଣୁ ଜୀବନ କଟାଇବା ଅପେକ୍ଷା ମୃତ୍ୟୁକୁ ବେଶି ପସନ୍ଦ କରନ୍ତି। ସେ ଫାଶୀ ପାଇବା ପରେ ପୁଣି ଜନ୍ମ ହୋଇ ଦେଶମାତୃକାର ସେବା କରିବାର ସୁବର୍ଣ୍ଣ ସୁଯୋଗ ଆଉଥରେ ପାଇପାରନ୍ତି, ସେଥିପାଇଁ ଫାଶୀ ଆଦେଶରେ ସେ ଖୁସି। ତେଣୁ ତାଙ୍କ ପାଇଁ ଅଯଥା ଲୁହ ନଗଡ଼ାଇ ଫାଶୀଦିନ ତାଙ୍କ ଭାଇବନ୍ଧୁମାନେ

ତାଙ୍କର ଶୀଘ୍ର ପୁନର୍ଜନ୍ମ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ଉଚିତ୍ ।"(ଅଲିଭା ଇତିହାସ, ପୃ.-୭୯) ସତ୍ୟ ଆଧାରିତ ଏହି ଘଟଣାଟି ବର୍ଣ୍ଣନା କରିବା ଛଳରେ ଦେଶପାଇଁ ଆତ୍ମୋତ୍ସର୍ଗ କରିଥିବା ମହାନ୍ ଜାତୀୟ ବୀରମାନଙ୍କୁ ପରମ ଶ୍ରଦ୍ଧା ଓ ସମ୍ମାନର ସହିତ ପାଠକମାନଙ୍କ ନିକଟରେ ଉପସ୍ଥାପନ କରିଛନ୍ତି ।

ଉପନ୍ୟାସ ମୁଖ୍ୟବନ୍ଧ ଲେଖିବା ଅବକାଶରେ ବିପ୍ଳବୀ କବି ମନମୋହନ ମିଶ୍ର ଯେଉଁ ଉପକ୍ରମଣିକାଟି ଦେଇଛନ୍ତି, ତାହା ଯଥାର୍ଥରେ ପ୍ରଣିଧାନଯୋଗ୍ୟ । "ବିଶାଳ ସଂଖ୍ୟାବହୁଳ, ବହୁ ବିଭିନ୍ନତା ଓ ଏକତାର ଗନ୍ତାଘର ଭାରତ ପରି ଦେଶର ପ୍ରାୟ ଷାଠିଏ ବର୍ଷର ସ୍ୱାଧୀନତା ଆନ୍ଦୋଳନ ଆଲେଖ୍ୟ, ଅନନ୍ତ ଆକାଶର ପ୍ରତିବିମ୍ବ ଗୋଟିଏ ଶିଶିରବିନ୍ଦୁ ଉପରେ ପ୍ରତିଫଳିତ ହେଲେ ତାହାର ଛବି ଯେପରି ହୁଅନ୍ତା, ସେପରି ଏକ ଛବି ଏହି ଅଲିଭା ଇତିହାସ ।"('ଅଲିଭା ଇତିହାସ' ମୁଖବନ୍ଧ - ଶ୍ରୀ ମନମୋହନ ମିଶ୍ର)

ଲେଖକ ଦାସଙ୍କ ଶରୀରରେ ଯେଉଁ ସଂଗ୍ରାମର ନିଆଁଝାସ ଲାଗିଥିଲା, ପୁଣି ଯାହାର ଉପଲବ୍ଧି ଥିଲା କେଉଁ ସୁଦୂରପ୍ରସାରୀ ଓ ନିବିଡ଼, ପୁଣି ଯାହା ଉଦ୍‌ଘାଟିତ କରିଥିଲା ଜୀବନ ପାଇଁ ଏକ ଆଦର୍ଶପୂତ ସରଣୀ - ସେହି ସଂଗ୍ରାମରର ଅସୁମାରୀ ସ୍ୱପ୍ନ ଓ ପରବର୍ତ୍ତୀ କାଳରେ ତା'ର ଚରମ ବିଫଳତା ତାଙ୍କ ଲେଖନୀରେ ସ୍ୱର୍ଣ୍ଣସଜଳ ହୋଇଉଠିଛି । କେବଳ ନବକୁମାର ନୁହନ୍ତି, ଶରଧାଙ୍କ ପରି ବହୁ ନାରୀ ମଧ୍ୟ ଅତି ନିରବରେ ଅଶ୍ରୁପାତ କରି ଜୀବନର ଚରମତ୍ୟାଗକୁ ସ୍ୱୀକାର କରିଥିଲେ ଦେଶମାତୃକାର କଲ୍ୟାଣ ପାଇଁ । ଗୋଟିଏ ଶରଧା ନୁହନ୍ତି, କୋଟି କୋଟି ଶରଧା ନିଜ ହାତରେ ଚୂଡ଼ି, ମଥାର ସିନ୍ଦୂର, ସବୁ ସୁଖ ସୌଭାଗ୍ୟଶିରୀକୁ ହସି ହସି ଏହି ମହାଯଜ୍ଞରେ ହବ୍ୟ କରିଦେଇଥିଲେ । କେବଳ ଗୋଟିଏ ସ୍ୱପ୍ନ, ଗୋଟିଏ ସଙ୍କଳ୍ପ - ଭାରତମାତାର ମୁକ୍ତିସାଧନ । ଏହି ଧର୍ମଯୁଦ୍ଧରେ କେତେ ଅଭିଅନ୍ୟୁ, କେତେ ଉତ୍ତରାଙ୍କର କରୁଣ ଦୀର୍ଘଶ୍ୱାସ ସମୟକୁ ଭାରାକ୍ରାନ୍ତ କରିଛି, ତା'ର ଇୟତ୍ତା ନାହିଁ । ଶହ ଶହ ବର୍ଷର ପରାଧୀନତା ଅନ୍ଧକାର ଭିତରେ ସଢ଼ି ମରୁଥିବା ଜାତି ପାଇଁ ଏମାନେ ଥିଲେ ଗୋଟିଏ ଗୋଟିଏ ଆଲୋକ ଦିହୁଡ଼ି, ବଞ୍ଚିବାର ରାହା, ଆଶା ଓ ବିଶ୍ୱାସର ଜ୍ୟୋତିରେଖା । "ଶରଧାଦେବୀଙ୍କ ଇଙ୍ଗିତରେ ନିରବ ପଟୁଆରକୁ ପଛରେ ଧରି ଗାଡ଼ି ଶ୍ମଶାନ ଆଡ଼କୁ ଚାଲିଲା । ସ୍ୱେଚ୍ଛାସେବକମାନେ ଜନତାକୁ ଦୂରରେ ଠିଆକରାଇ ଅତି ସାବଧାନରେ ନବକୁମାରକୁ ଧରାଧରି କରି ଶରଧାଦେବୀଙ୍କ ସଙ୍ଗେ ସଙ୍ଗେ ଯାଇ ଭିକାରୀବାବୁଙ୍କ ସମାଧି ନିକଟରେ ପହଞ୍ଚିଲେ । ସମାଧି ସାମ୍ନାରେ ବହୁ କଷ୍ଟରେ ନବକୁମାରଙ୍କୁ ବସାଇ ଦିଆଗଲା । ସେ ମୁଣ୍ଡ ନୁଆଁଇ ପ୍ରଣାମ କରୁ କରୁ ଅଲିଭା ଦୀପ ନିକଟରେ ଚିରଦିନ ପାଇଁ ଆଖିମୁଦି ଟଳିପଡ଼ିଲେ ।"(ଅଲିଭା ଇତିହାସ, ପୃ- ୧୫୯)

କିନ୍ତୁ ଏ ଜାତି କ'ଣ ସେଇ ସ୍ୱପ୍ନକୁ ସାକାର କରିପାରିଛି ? ସେ ସଙ୍କଳ୍ପ ରୂପରେଖ ଦେଇପାରିଛି ? ଆଜି ଲେଖକଙ୍କ କଣ୍ଠରେ ବ୍ୟର୍ଥତାର କାରୁଣ୍ୟ । ବିଫଳତାର ହତାଶା ।

ଦୃଷ୍ଟି ଆଜି ଶୂନ୍ୟଗର୍ଭ । ଲକ୍ଷ୍ୟ ଆଜି ବ୍ୟାହତ । କାହିଁ ସେ ତାରୁଣ୍ୟର ଆହ୍ୱାନ ? କାହିଁ ସେ ଅଗ୍ନିବର୍ଷୀବାଣୀ ! ସଂଗ୍ରାମର ଅଗ୍ନିଶପଥ ! ଭାରତୀୟ ଜାତୀୟ ସଂଗ୍ରାମର ପୃଷ୍ଠଭୂମିରେ ଏ ଉପନ୍ୟାସର କଥାବସ୍ତୁ ପର୍ଯ୍ୟବସିତ ହେଲେ ହେଁ ଭବିଷ୍ୟତ ପାଇଁ ଏହାର ଅଭିବ୍ୟଞ୍ଜନା ବେଶ୍ ମାର୍ମିକ ।

ସମକାଳୀନ ସମାଜ-ରାଜନୀତିର ଏକ ଚମତ୍କାର ଫଟୋଗ୍ରାଫି ହେଉଛି 'ଅଲିଭା ଇତିହାସ' । ଗାଁ'ଗହଳରେ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅହିଂସା ଅସହଯୋଗ ଆନ୍ଦୋଳନର ପ୍ରଭାବ, ଭାରତୀୟ ଆଧ୍ୟାତ୍ମିକ ଅଭୀପ୍‌ସାର ପ୍ରତୀକ ଭାବରେ ଗାନ୍ଧିଜୀଙ୍କ ପ୍ରତି ଗାଁ' ଗହଳର ଲୋକମାନଙ୍କ ଅହେତୁକ ବିଶ୍ୱାସ ଓ ପ୍ରେମ, ବ୍ରିଟିଶ ଶାସନ କାଳର ତଥାକଥିତ ଶୋଷକ ଗୋଷ୍ଠୀ, ସାଧାରଣ କୃଷକ, ମୂଲିଆ, ମଜଦୁର, ଛାତ୍ର, ଶିକ୍ଷକ, ଶିକ୍ଷିତ, ଅଶିକ୍ଷିତଙ୍କର ସ୍ୱଦେଶପ୍ରେମ ତଥା ସକଳ ପ୍ରକାର ଜାତୀୟ ସମସ୍ୟାକୁ ଲେଖକ ରୂପାୟନ କରିଛନ୍ତି । ଏ ସବୁଥିରେ ଲେଖକଙ୍କ ଗଭୀର ଅଭିଜ୍ଞତାର ସ୍ୱାକ୍ଷର ଉତ୍‌କୀର୍ଣ୍ଣ । ଜାତୀୟ ଜୀବନର ଅସୁମାରୀ ଜିଜ୍ଞାସାର ଏକ ସଫଳ ପ୍ରତିଲିପି ।

କେଉଁ ମାର୍ଗଟି ଠିକ୍ ? ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସା ମାର୍ଗ ? ନା କ୍ରାନ୍ତିକାରୀମାନଙ୍କ ହିଂସା ଓ ବିପ୍ଲବର ମାର୍ଗ ନା ସୁଭାଷ ପ୍ରଦର୍ଶିତ ବୀରୋଚିତ ସଂଗ୍ରାମର ମାର୍ଗ ? ଏପରି ଏକ ଶଙ୍କା ଓ ସଂଶୟ ଭିତରେ ଗତି କରୁଥିବା ଭାରତୀୟ ଜାତୀୟ ସଂଗ୍ରାମର ମୂଳ ଭାବଧର୍ମଟିକୁ ପାଠକମାନଙ୍କ ଚିହ୍ନାଇ ଦେବାରେ ଲେଖକ ତ୍ରୁଟି କରିନାହାନ୍ତି । ଶିକ୍ଷକ, ସ୍ୱାଧୀନତା ସଂଗ୍ରାମୀ, ଲୋକସେବକ ଭିକାରୀବାବୁ ଥିଲେ ଗାନ୍ଧିବାଦୀ । ସକଳ ବିପତ୍ତି ଓ ପ୍ରତିକୂଳ ପରିସ୍ଥିତି ଭିତରେ ବି ତାଙ୍କର ବିଶ୍ୱାସ ଅତୁଟ ରହିଛି । ଏକ ନିଷ୍ପାପର ଯୋଗୀ ପୁରୁଷ ପରି ସେ ସାଧନାରତ ରହିଛନ୍ତି । ପତ୍ନୀ ବିୟୋଗ, ପୁତ୍ର ବିୟୋଗ, ପୁତ୍ରମାନଙ୍କ କାରାବାସ ବ୍ୟତୀତ ସଂସାରର ସକଳ ମୋହରୁ ବଞ୍ଚିତ ହୋଇ ମଧ୍ୟ ସେ ଜୀବନର ଆଦର୍ଶକୁ ବିସ୍ମୃତ ହୋଇନାହାନ୍ତି । ସଂସାରର ଏକମାତ୍ର ବନ୍ଧନ ନବକୁମାର ମଧ୍ୟ ପିତାଙ୍କ ଭାବବଳୟ ମଧ୍ୟରୁ ଅପସରି ଯାଇଛନ୍ତି । ଦୁହିଁଙ୍କର ଲକ୍ଷ୍ୟ ଏକ । ସାଧନା ଏକ । ମାତ୍ର ପଥ ଭିନ୍ନ । ଦୁହେଁ ଦୁଇଟି ବିପରୀତଧର୍ମୀ ପଥର ପଥିକ । କାହାର କାହା ବିରୁଦ୍ଧରେ ଅଭିଯୋଗ ନାହିଁ । ପ୍ରତିବାଦ ନାହିଁ । ଦୁହେଁ ସାଧକ । ତପସ୍ୟା ତାଙ୍କର ଧର୍ମ । ସିଦ୍ଧି ହେଉଛି ଦେଶମାତୃକାର ଉଦ୍ଧାର । ମାତ୍ର ଉପନ୍ୟାସର ଅନ୍ତିମ ପରିଣତି ବେଶ୍ କରୁଣ ଓ ମର୍ମାନ୍ତକ ହୋଇଛି । ଭିକାରୀ ବାବୁ ଚିରବିଦାୟ ନେଇଛନ୍ତି, ପୁଣି ନବକୁମାର ମଧ୍ୟ ମହାନିଦ୍ରାରେ ଶୋଇଯାଇଛନ୍ତି । ଏକା ରହିଯାଇଛି ଶରଧା । ନବକୁମାରଙ୍କ ପତ୍ନୀ, ଭିକାରୀବାବୁଙ୍କର ପୁତ୍ରବଧୂ - ସକଳ ଦୁଃଖ, କଷାଘାତ ଭିତରେ ସ୍ୱାଧୀନତା ସଂଗ୍ରାମର ଅଲିଭା ଦୀପକୁ ପ୍ରଜ୍ୱଳିତ କରି ରଖିବା ପାଇଁ ।

ଚରିତ୍ରଚିତ୍ରଣ କ୍ଷେତ୍ରରେ ଲେଖକ ବହୁ ସାବଧାନତା ଅବଲମ୍ବନ କରିପାରିଛନ୍ତି। ଏହି ଐତିହାସିକ ପୁରୁଷମାନଙ୍କର ଜୀବନଚର୍ଯ୍ୟା କଲାବେଳେ ସେ କୌଣସି ପ୍ରକାର ଭାବପ୍ରବଣତାକୁ ପ୍ରଶ୍ରୟ ଦେଇନାହାନ୍ତି। ଏଥିପାଇଁ ଉପନ୍ୟାସଟି ଅନବଦ୍ୟ ହୋଇପାରିଛି। ଭାଷା ସଂଯତ ଓ ମାର୍ଜିତ, ଗଳ୍ପଗୁମ୍ଫନରୀତି ଅଧିକ ଶାଣିତ, ଶୈଳୀ ଅଭିନବ ଓ ପରିବେଶ ବର୍ଣ୍ଣନା ଚାତୁରୀରେ ଚମତ୍କାରିତା ପରିଲକ୍ଷିତ ହୋଇଥାଏ। ସବୁ ଦୃଷ୍ଟିରୁ ବିଚାର କଲେ ଏହା ଏକ ସାର୍ଥକ ଐତିହାସିକ ଉପନ୍ୟାସ।

ଓଡ଼ିଆ ଜାତି ବୀରତ୍ୱର ପ୍ରତୀକ, ଲକ୍ଷରାଜାର ମଉଡ଼ମଣି, ଶ୍ରୀଜଗନ୍ନାଥଙ୍କର ଚଳନ୍ତି ବିଗ୍ରହ ପୁରୀର ଗଜପତି ରାଜା ଆଜି ବି ସେହି ଶ୍ରଦ୍ଧା, ସମ୍ମାନର ଅଧିକାରୀ। ଆଜି ରାଜପରମ୍ପରା ଭାରତୀୟ ଚେତନାରୁ ଲୋପପାଇଛି। ରାଜାମହାରାଜା ଆଜି କେବଳ ଇତିହାସ ପୃଷ୍ଠାକୁ ମଣ୍ଡନ କରୁଥିବା ବେଳେ ପୁରୀର ଗଜପତି ଠାକୁରରାଜା ସାମ୍ରାଜ୍ୟବିହୀନ ଅଗଣିତ ଜନତାର ହୃଦୟସାମ୍ରାଜ୍ୟର ଅଧିପତି। ଶ୍ରୀଜଗନ୍ନାଥ ପରମ୍ପରା ଓ ଚେତନା ସହିତ ଓତଃପ୍ରୋତ ଭାବରେ ଜଡ଼ିତ। ପରମ୍ପରାକ୍ରମେ ପୁରୀର ପ୍ରସିଦ୍ଧ ରଥଯାତ୍ରାବେଳେ ଛେରପହଁରା କରୁଥିବା ଏହି ଗଜପତି ସର୍ବସ୍ୱ ହରାଇ ମଧ୍ୟ ମହାଐଶ୍ୱର୍ଯ୍ୟଶାଳୀ। ସୁତରାଂ ଗଜପତି କେବଳ ଠାକୁରରାଜା ନୁହନ୍ତି, ଓଡ଼ିଆ ଜାତିର ଜୀବନଧାରା ସହିତ ସମନ୍ୱିତ ଏକ ମହାଭାବର ଇଙ୍ଗିତ।

ବ୍ରିଟିଶ୍ ଶାସନ କାଳରେ ଚନ୍ଦ୍ର ରାହୁଗ୍ରସ୍ତ ହେଲାଭଳି, ଗଜପତି ରାଜା ମଧ୍ୟ ରାଜନୀତିର ଘୂର୍ଣ୍ଣି ମଧ୍ୟକୁ ଟାଣି ହୋଇଯାଇଥିଲେ। ଗଜପତିଙ୍କୁ ମିଥ୍ୟା ଅପରାଧରେ କଳାପାଣିରେ ଦ୍ୱୀପାନ୍ତର ଦଣ୍ଡ ଦେଇ ସମଗ୍ର ଓଡ଼ିଆ ଜାତିର ସାହସ, ଶୌର୍ଯ୍ୟ, ବୀରତ୍ୱ ଓ ଆତ୍ମବିଶ୍ୱାସକୁ ଧ୍ୱଂସ କରିଦେଇଥିଲେ କୁଚକ୍ରୀ ଇଂରେଜମାନେ।

ଇତିହାସ କହେ, ୧୯୦୩ ମସିହାରେ ଓଡ଼ିଶା ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନ ପରିସରଭୁକ୍ତ ହୋଇଥିଲା। ସମଗ୍ର ଭାରତବର୍ଷରେ ସେତେବେଳକୁ ଇଂରେଜ ଶାସନର ପ୍ରଖର ମଧ୍ୟାହ୍ନ। ଓଡ଼ିଆ ପାଇକମାନଙ୍କର ବୀରତ୍ୱ ଓ ଆତ୍ମତ୍ୟାଗର ନିଷ୍ଠା ବ୍ରିଟିଶ ସରକାରଙ୍କୁ ଅବିଦିତ ନଥିଲା। ଓଡ଼ିଆ ଜାତିର ପ୍ରାଣସତ୍ତାକୁ ଧୂଳିସାତ୍ କରିଦେବାକୁ ସେମାନେ ଚକ୍ରାନ୍ତ ଚଳାଇଥିଲେ। ସୂର୍ଯ୍ୟାସ୍ତ ଆଇନ୍ ବଳରେ ଓଡ଼ିଆ ଜମିଦାରମାନଙ୍କୁ ତଳିତଳାନ୍ତ କରିଦିଆଗଲା। ଓଡ଼ିଶାର ଅର୍ଥନୈତିକ ମେରୁଦଣ୍ଡ ଦୋହଲିଗଲା। ବ୍ରିଟିଶ୍ ସରକାରଙ୍କର ନାନାବିଧ ହୀନ ଚକ୍ରାନ୍ତର ଶରବ୍ୟ ହେଲେ ଓଡ଼ିଶାର ଜନମାନସ ପ୍ରତିଭୂ ଗଜପତି ମହାରାଜ। ସବୁଠାରୁ ବେଶି କ୍ଷତିଗ୍ରସ୍ତ ହେଲା ଖୋରଧା ଓ ପୁରୀ। ଏପରିକି ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ଭାରତ ସରକାର ହାତକୁ ନେଇଗଲେ। ମାତ୍ର ଇଂଲଣ୍ଡ ଖ୍ରୀଷ୍ଟିୟାନ୍ ପାଦ୍ରୀମାନଙ୍କର ଘୋର ବିରୋଧ ଫଳରେ ଜଗନ୍ନାଥ ମନ୍ଦିର ପରିଚାଳନା ଦାୟିତ୍ୱ ପୁରୀ ରାଜାଙ୍କୁ ପୁନର୍ବାର ଫେରାଇ ଦିଆଯାଇଥିଲେ ହେଁ, ପୁରୀ ରାଜାଙ୍କର ସମ୍ମାନ, ମର୍ଯ୍ୟାଦା ଓ ଓଡ଼ିଶାର ସମସ୍ତ ରାଜାମାନଙ୍କ ଉପରେ ତାଙ୍କର ଶ୍ରଦ୍ଧାମୂଳକ ଆଧିପତ୍ୟ ବ୍ରିଟିଶ୍ ସରକାରଙ୍କର ଗାତ୍ରଦାହର କାରଣ ହେଲା।

ଏ ସବୁର ପ୍ରତିବାଦ ସ୍ୱରୂପ ୧୮୧୭ ମସିହାରେ ତେଜି ଉଠିଲା ପାଇକ ବିଦ୍ରୋହ। ଘୁମୁସର ବିଦ୍ରୋହ, ଖୋରଧା ପାଇକ ବିଦ୍ରୋହ, ସୁରେନ୍ଦ୍ର ସାଏଙ୍କର ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମ ପ୍ରଭୃତିରୁ ଓଡ଼ିଆ ଜାତିର ବୀରତ୍ୱ ଓ ସ୍ୱାଭିମାନର ପରିଚୟ ପାଇଲେ ବ୍ରିଟିଶ୍ ଶାସକମାନେ। ଦୀର୍ଘକାଳବ୍ୟାପୀ ଚାଲିଥିବା ସଂଗ୍ରାମକୁ ବହୁକଷ୍ଟରେ ଦମନ କଲେ ଇଂରେଜ ସରକାର। ଓଡ଼ିଶାରୁ ଗଜପତି ରାଜାଙ୍କର ଆଧିପତ୍ୟକୁ ସମୂଳେ ବିନାଶ କରିଦେବା ପାଇଁ ସେମାନେ ନାନା କୂଟବୁଦ୍ଧିର ପ୍ରୟୋଗ କଲେ।

ଅବଶେଷରେ ବ୍ରିଟିଶ୍ ସରକାରଙ୍କର ସଫଳ କୂଟବୁଦ୍ଧିର ଚରମ ନିଦର୍ଶନ ସ୍ୱରୂପ ଠାକୁରରାଜା ଦିବ୍ୟସିଂହଦେବ ଜଣେ ନୃଶଂସ ହତ୍ୟାକାରୀ, ଧର୍ମଦ୍ୱେଷୀ, ପାପିଷ୍ଠ ବ୍ୟକ୍ତିରୂପେ ନ୍ୟାୟାଳୟରେ ଦଣ୍ଡିତ ହେଲେ। ଜଣେ ସାଧୁଙ୍କୁ ହତ୍ୟା କରିଥିବା ଅଭିଯୋଗରେ କଳାପାଣିରେ ନିର୍ବାସନ ଦଣ୍ଡ ଭୋଗକଲେ। ବ୍ରିଟିଶ୍ ସରକାରଙ୍କର ଉଦ୍ୟମ ସଫଳ ହେଲା। ଓଡ଼ିଶାର ଜାତୀୟ ଇତିହାସ ପାଇଁ ଏହାଥିଲା ସବୁଠାରୁ ବଳି ମର୍ମନ୍ତୁଦ ଐତିହାସିକ ଘଟଣା। ଏ ସଂପର୍କରେ ଉପନ୍ୟାସର ମୁଖବନ୍ଧରେ ସୂଚନା ଦେଇ ସତ୍ୟନାରାୟଣ ରାଜଗୁରୁ କହନ୍ତି "ବାସ୍ତବରେ ଓଡ଼ିଶାର ଜାତୀୟ ଦେବତା ଶ୍ରୀଜଗନ୍ନାଥ ଓ ତାଙ୍କ ପ୍ରତିନିଧି ଠାକୁରରାଜାଙ୍କୁ ଲୋକଚକ୍ଷୁରେ ହୀନ କରି ଚିତ୍ରିତ କରିବାପାଇଁ ବିଦେଶୀ ବିଧର୍ମୀ ସରକାର ଯେଉଁ ଷଡ଼ଯନ୍ତ୍ର କରିଥିଲେ ଏବଂ ଓଡ଼ିଆ ଜାତି ଓ ଜଗନ୍ନାଥ ସଂସ୍କୃତିର ମେରୁଦଣ୍ଡ ଚୂର୍ଣ୍ଣବିଚୂର୍ଣ୍ଣ କରିବା ପାଇଁ କେତେକ ନିରପରାଧ ନିରୀହ ବ୍ୟକ୍ତିଙ୍କୁ ଯେପରି ଦାରୁଣ ନିର୍ଯ୍ୟାତନା ଭୋଗ କରାଉଥିଲେ, ତାହା ଇତିହାସ ବକ୍ଷରେ ଚିରସ୍ମରଣୀୟ ହୋଇରହିବ। ସେହି ଐତିହାସିକ ଚକ୍ରାନ୍ତର ଏକ ନଗ୍ନଚିତ୍ର ଏହି ପୁସ୍ତକରେ ପ୍ରଦର୍ଶନ କରି ଶ୍ରଦ୍ଧେୟ ବିକ୍ରମ ଦାସ ଧନ୍ୟବାଦାର୍ହ ହୋଇଛନ୍ତି।"

ଇତିହାସ ତଥ୍ୟଭିତ୍ତିକ ନିର୍ବାସିତ ଗଜପତି ଉପନ୍ୟାସଟି ଲେଖକଙ୍କ ଶିଳ୍ପୀ ମାନସର ସମସ୍ତ ଆବେଗ ନେଇ ବେଶ୍ ହୃଦୟସ୍ପର୍ଶୀ ହୋଇପାରିଛି। ନାୟକ ଦିବ୍ୟସିଂହ ଦେବଙ୍କୁ ଜଣେ ଉଚ୍ଚକୋଟିର ଦେଶପ୍ରେମୀ ଭାବରେ ରୂପାୟିତ କରି ନିଜସ୍ୱ ସ୍ୱଦେଶାନୁରାଗର ପରିଚୟ ପ୍ରଦାନ କରିଛନ୍ତି।

କଥାବସ୍ତୁ ସଂଯୋଜନାରେ ଲେଖକ ଯେଉଁ କେତେକ କାଳ୍ପନିକ କାହାଣୀ ଅବତାରଣା କରିଛନ୍ତି, ତାହା ଉପନ୍ୟାସଟିକୁ ଅଧିକ ସୁଖପାଠ୍ୟ କରାଇଛି। ପ୍ରତ୍ୟେକ ଓଡ଼ିଆ ପାଠକର ଗଜପତି ଠାକୁରରାଜାଙ୍କ ପାଇଁ ସ୍ୱତଃସ୍ଫୂର୍ତ୍ତ ଭାବାବେଗ କରିଛି। ସେଇ ଦରଦ ଓ ଭାବପ୍ରବଣତା ନେଇ ଉପନ୍ୟାସଟି ପାଠକଲାବେଳେ ଯେକୌଣସି ପାଠକଙ୍କୁ ଅତି ନିବିଡ଼ ଭାବରେ ଏହା ସ୍ପର୍ଶକରିବା ସ୍ୱାଭାବିକ। ଉପନ୍ୟାସଟିରେ ଆମୂଳଚୂଳ ପାଠକଙ୍କୁ ଅତି ନିବିଡ଼ ଭାବରେ ଏହା ସ୍ପର୍ଶ କରିବା ସ୍ୱାଭାବିକ। ଉପନ୍ୟାସଟିରେ ଆମୂଳଚୂଳ ଏହି ଭାବାଳୁତା ଲକ୍ଷ୍ୟ କରାଯାଇଥାଏ। ନିଜେ ଲେଖକ ମଧ୍ୟ ଏପରି ମାନବିକ ଆର୍ଦ୍ରତାରୁ ମୁକ୍ତ

ନୁହନ୍ତି । "ସେ ଲୋକ ମଧ୍ୟ ଟିକିଏ ଅପ୍ରତିଭ ହୋଇଯାଇ ବାଷ୍ପାକୁଳ କଣ୍ଠରେ କହିଲେ - ଆପଣ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ବୋଲି ଆପଣଙ୍କୁ ରଥ ଉପରେ ଦେଖିବା କ୍ଷଣି ଲକ୍ଷ ଲକ୍ଷ ଭକ୍ତଙ୍କ ଆଖିରୁ ଲୁହ ଗଡ଼ି ପଡୁଥିଲା । ଏବେ ଆପଣଙ୍କ ଆଖିରେ ଲୁହ । ସେ ପୁଣି ଦୁର୍ଦ୍ଦଶା ଯୋଗୁଁ । ଆପଣଙ୍କୁ ଦୋଷୀ କରି ବିଦେଶୀ ବିଧର୍ମୀ ସରକାର ବନ୍ଦୀ କରିପାରିଲା । ଏହା ନିଶ୍ଚୟ ଏକ ବିରାଟ ଷଡ଼ଯନ୍ତ୍ର । କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା, ସେଥିରେ କେହି ପାଟି ଫିଟାଇଲେ ନାହିଁ କି କାର୍ଯ୍ୟର ପ୍ରତିବାଦ କଲେ ନାହିଁ । ଆପଣଙ୍କୁ ବନ୍ଦୀ ଭାବରେ କଳାପାଣି ଯିବାକୁ ଛାଡ଼ିଦେଲେ । ହାୟ ! ହତଭାଗ୍ୟ ଦେଶ । ଏ ଦେଶର ସବୁ ଲୋକଙ୍କୁ ଇଂରେଜ ମେରୁଦଣ୍ଡଶୂନ୍ୟ କରିଦେଲେ । ମୋର ପାପ ଧୋଇବା ପାଇଁ ମୁଁ ସବୁ ବର୍ଷ ପତିତପାବନ ଜଗନ୍ନାଥ ଦର୍ଶନ କରିବାକୁ ଯାଏ । ଆପଣ ସେ ଜଗନ୍ନାଥଙ୍କର ପରମ ଭକ୍ତ ଓ ସେବକ ହୋଇ ମଧ୍ୟ ସେ ଆପଣଙ୍କୁ ଚାହିଁଲେ ନାହିଁ ।"(ନିର୍ବାସିତ ଗଜପତି, - ୫୯)

ଆଣ୍ଡାମାନ ଦ୍ୱୀପରେ ମହାରାଜାଙ୍କର ବନ୍ଦୀ ଜୀବନ ଓ ତହିଁରୁ ଖସି ପଳାଇ ଆସିବାର ପରିକଳ୍ପନାରେ ଅପୂର୍ବ କଳାପାଟବତା ପରିଲକ୍ଷିତ ହୋଇଥାଏ । ବ୍ରିଟିଶରାଜ୍‌ର ବର୍ବରତା ତଥା କଳାପାଣି ନିର୍ବାସନ ଦଣ୍ଡ ଭୋଗୁଥିବା କଏଦୀମାନଙ୍କର ଅକଥନୀୟ ଦୁର୍ଦ୍ଦଶା ବର୍ଣ୍ଣନା ଅତ୍ୟନ୍ତ ବାସ୍ତବଧର୍ମୀ ହୋଇପାରିଛି । ସମଗ୍ର ଉପନ୍ୟାସଟିରେ ଲେଖକଙ୍କ ଇଂରେଜ ବିରୋଧୀ ମନୋଭାବ ଉଗ୍ର ଓ ଶାଣିତ । ଦେଶର ସ୍ୱାଧୀନତା ଲାଭ ପାଇଁ ସ୍ୱାର୍ଥମେଧ ଯଜ୍ଞରେ ଆହୁତି ହୋଇଥିବା ଅଗଣିତ ତ୍ୟାଗୀ ପୁରୁଷମାନଙ୍କ ଆତ୍ମଗାଥା ସତେ ଯେପରି ଶତକଣ୍ଠରେ ଉଚ୍ଚାରିତ ହୋଇଛି । ସେଇ ଲୁହଲହୁର କାହାଣୀ ଏଥିରେ ମୂର୍ତ୍ତିମାନ । ଆଜି ସ୍ୱାଧୀନ ଭାରତର ନାଗରିକମାନେ ହୁଏତ ସେହି ଦୁର୍ଗତ ବିଗତ ଅତୀତକୁ ମାନସପଟରୁ ପୋଛିଦେଇ ଆତ୍ମସୁଖାନ୍ୱେଷୀ ହୋଇଉଠିଛନ୍ତି ।

ଯେଉଁ ଅପରିକଳ୍ପନୀୟ ତ୍ୟାଗ ଓ ତପସ୍ୟାର ସାମାଧିପୀଠ ଉପରେ ଆଜିର ସ୍ୱାଧୀନତା ଦଣ୍ଡାୟମାନ, ତା'ର ଅବକ୍ଷୟ ଲେଖକଙ୍କୁ ଗଭୀର ଭାବରେ ଆଲୋଡ଼ିତ କରିଛି । ସେଥିପାଇଁ ମହାରାଜାଙ୍କୁ ବନ୍ଦୀଜୀବନ ବର୍ଣ୍ଣନାଛଳରେ ଆଣ୍ଡାମାନ ଦ୍ୱୀପରେ ନିର୍ବାସିତ ହୋଇ ରହୁଥିବା ହଜାର ହଜାରେ ଦେଶପ୍ରେମୀ ସଂଗ୍ରାମୀମାନଙ୍କର ଦୁର୍ଦ୍ଦଶା ସେ ବର୍ଣ୍ଣନା କରିଛନ୍ତି ଓ ପାଠକମାନଙ୍କର ସ୍ମୃତିଚାରଣ କରାଇବାର ପ୍ରଚେଷ୍ଟା କରିଛନ୍ତି । ଏ ଦୃଷ୍ଟିରୁ ବିଚାର କଲେ, ଏହି ଉପନ୍ୟାସଟିର ସୃଷ୍ଟିଧର୍ମ ଓ ଭାବ ଆଭିମୁଖ୍ୟ ମହତ୍ ଓ ପ୍ରଶଂସନୀୟ ।

ଉପନ୍ୟାସଟିର ଶିଳ୍ପନୈପୁଣ୍ୟରେ ଏକ ଉଲ୍ଲେଖଯୋଗ୍ୟ ବିରୋଧାଭାସର ସୂଚନା ମିଳିଥାଏ । ଠିକ୍ ସେହିପରି ଭାବଧର୍ମ ମଧ୍ୟ ସ୍ୱାଭାବିକତା ଓ ବାସ୍ତବତାକୁ ଅନେକ ସମୟରେ ଉପେକ୍ଷା କରିଛି । ଆଦର୍ଶବାଦ ଦ୍ୱାରା ବାହିତ ହୋଇ ଲେଖକ ଜୀବନଧର୍ମୀ ମାନବିକ ଦୁର୍ବଳତାକୁ ଆଦର୍ଶର ପାଷାଣ ତଳେ ଚାପି ଦେଇଛନ୍ତି । ମହାରାଜାଙ୍କ ଜୀବନରେ ଏକ

ଅନାବିଷ୍କୃତ ସବୁଜଦ୍ୱୀପରେ ଦୁଇଜଣ ସ୍ୱପ୍ନବିଳାସୀ ନାୟିକାଙ୍କର ସାମୟିକ ଆବିର୍ଭାବକୁ କୌଣସି ପ୍ରାଧାନ୍ୟ ଦେଇନାହାନ୍ତି ଲେଖକ। ଏହି ପ୍ରଣୟଚିତ୍ର ଯେତେ ସଂକ୍ଷିପ୍ତ ହେଲେ ହେଁ ତା'ର ଆବେଦନ ଗଭୀର ଓ ମାର୍ମିକ। ତ୍ୟାଗ ଓ ସାଧନାରେ ପ୍ରେମର ଉପଲବ୍ଧ ଜୀବନବୋଧର ବାହକ ହୋଇଥାଏ। ଏ କ୍ଷେତ୍ରରେ ଫତିମାର ଆତ୍ମୋତ୍ସର୍ଗ ଓ ଅଜ୍ଞାତ ଦ୍ୱୀପରେ ଆଦିବାସୀ ଝିଅଟିର ସେବା, ପ୍ରେମ, ତ୍ୟାଗ - ଉଭୟ ସେହି ମହାନ୍ ଭାବାଦର୍ଶ ଉପରେ ପ୍ରତିଷ୍ଠିତ ମାତ୍ର। କିନ୍ତୁ ଜୀବନର ସ୍ୱାଭାବିକ ସତ୍ୟକୁ ଏଠାରେ ଅସ୍ୱୀକାର କରାଯାଇଛି। ମନେହୁଏ, ଲେଖକ ମହାରାଜାଙ୍କ ଚରିତ୍ରରେ ସାମାନ୍ୟତମ ଦୁର୍ବଳତାକୁ ପ୍ରଶ୍ରୟ ନ ଦେବାକୁ ଯେପରି ବଦ୍ଧପରିକର।" ଫତିମା ବୁର୍ଖା କାଢ଼ି ବାଲି ଉପରେ ବସିଥିଲା। ସେ ତାକୁ ସବୁବେଳେ ବୁର୍ଖା ପିନ୍ଧିଥିବାର ଦେଖିଥିଲେ। ତା'ର ମୁଖମଣ୍ଡଳ କେବେ ଦେଖି ନଥିଲେ। ତା'ର ଆଙ୍କିଦେଲା ପରି ସୁନ୍ଦର ଗୋରା ତକ ତକ ମୁହଁ ଉପରେ ତା'ର ଚୂର୍ଣ୍ଣକୁନ୍ତଳ ପବନରେ ଉଡ଼ି ଚୁମ୍ବନ ଦେଉଥିଲା। ଉଦାସିଆ ଆଖି ଯୋଡ଼ିକ ସମୁଦ୍ର ଭିତରକୁ ଚାହିଁ ରହିଥିଲା। ସେ ଦୃଶ୍ୟ ତାଙ୍କର ସ୍ମୃତିପଟରେ ରାଣୀଙ୍କ ରୂପ ଲାବଣ୍ୟକୁ ଆଣି ଯେପରି ଠିଆ କରାଇଦେଲା। ମହରାଜା ନିଜକୁ ସମ୍ଭାଳି ନେଇ ପୋଷାକ ପିନ୍ଧି ପକାଇଲେ।"(ନିର୍ବାସିତ ଗଜପତି, ପୃ-୯୯)

ଚାହିଁଥିଲେ ଲେଖକ ଏକ ଚମତ୍କାର ପ୍ରଣୟ ଚିତ୍ର ଦେଇପାରିଥାନ୍ତେ ଓ ମହାରାଜାଙ୍କ ଚରିତ୍ରର ଏକ ବର୍ଣ୍ଣିଳ ଦିଗନ୍ତ ଉଦ୍‌ଘାଟନ କରିପାରିଥାନ୍ତେ। ଇତିହାସ କହେ ମହାରାଜା ସେଇ ଆଣ୍ଡାମାନ ଦ୍ୱୀପରେ ପ୍ରାଣ ହରାଇଥିଲେ। ଏହି ଐତିହାସିକ ତଥ୍ୟକୁ ଔପନ୍ୟାସିକ ଭିନ୍ନ ଏକ ଉପାୟରେ ଉପସ୍ଥାପନ କରିଛନ୍ତି। ମହାରାଜାଙ୍କର ପୁରୀ ପ୍ରତ୍ୟାବର୍ତ୍ତନ ଓ ମା'ଙ୍କ ସହ ସାକ୍ଷାତ୍ ଐତିହାସିକ ସତ୍ୟର ବିରୁଦ୍ଧାଚରଣ କରୁଥିଲେ ହେଁ ଉପନ୍ୟାସ କଳାଦୃଷ୍ଟିରୁ ମନୋଜ୍ଞ ହୋଇଛି। ଏହି ବର୍ଣ୍ଣନା ଅତି କରୁଣ ଓ ହୃଦୟସ୍ପର୍ଶୀ ହୋଇଛି।

ଜୀବନସତ୍ୟର ରୂପାୟନବେଳେ ସ୍ୱକୀୟ ସିଦ୍ଧାନ୍ତକୁ ଚାପି ଦେବାରେ କଳାଗୌରବ ହାନି ହୋଇଥାଏ। ଔପନ୍ୟାସିକ ଏ ସଂପର୍କରେ ବିଶେଷ ସଚେତନ ହୋଇପାରିନାହାନ୍ତି। ଉପନ୍ୟାସ ମୂଲ୍ୟାୟନବେଳେ ଏହି ଦିଗଟି ଯେକୌଣସି ସମାଲୋଚକଙ୍କର ଦୃଷ୍ଟିକୁ ଆସିବ। ଅଜ୍ଞାତ ଭାବରେ ଛଦ୍ମବେଶରେ ରାଜନଅର ଭିତରେ ପ୍ରବେଶ କରିଛନ୍ତି ମହାରାଜା। କିନ୍ତୁ ତାଙ୍କର ସମଗ୍ର ସତ୍ତାରେ ଯେଉଁ ଭାବସ୍ପନ୍ଦନ ସୃଷ୍ଟି ହେବାକଥା, ଯେଉଁ ଉଚ୍ଛ୍ୱାସର ତରଙ୍ଗ ପ୍ରବାହିତ ହେବାକଥା, ତାହା ହୋଇନାହିଁ। ସମସ୍ତ ଭାବପ୍ରବଣତା ଯେପରି କେଉଁ ଅନ୍ଧାରୀ ଗୁହାରେ ଧକ୍‌କା ଖାଇ ଫେରିଆସିଛି ରୁକ୍ଷ ଆଦର୍ଶବାଦ ପାଖକୁ।

'ନିର୍ବାସିତ ଗଜପତି' ଏକ ନିପୀଡ଼ିତ ଆତ୍ମାର କରୁଣ ବେହାଗ। ଗଜପତିଙ୍କ ଜୀବନଚର୍ଯ୍ୟାରେ ଔପନ୍ୟାସିକଙ୍କର ସମସ୍ତ ଭାବାବେଗ ମୂର୍ତ୍ତିମନ୍ତ ହୋଇଛି, ଏହା କହିବା ବାହୁଲ୍ୟ।

ଔପନ୍ୟାସିକଙ୍କର ଅନ୍ୟତମ ଉପନ୍ୟାସ ବୁଦ୍ଧଖୋଲର ମାୟା ପ୍ରକାଶିତ ହୁଏ ୧୯୮୬ ମସିହାରେ। ଉପନ୍ୟାସଟିର ଭାବାବୃତ୍ତ ଏକ ବୃହତ୍ତର ପରିଧି ମଧ୍ୟରେ ଘୂର୍ଣ୍ଣାୟମାନ ହୋଇଥିଲେ ହେଁ, କେନ୍ଦ୍ରାଭିମୁଖୀ ହୋଇପାରିଛି- ଏହା ହିଁ ହେଉଛି ଶୈଳ୍ପିକ ସଫଳତା। କଥାବସ୍ତୁର କ୍ୟାନ୍‌ଭାସ ଗଞ୍ଜାମର ବୁଦ୍ଧଖୋଲଠାରୁ ଆରମ୍ଭ ହୋଇ ଆମେରିକା, ମେକ୍ସିକୋ ପର୍ଯ୍ୟନ୍ତ ପରିବ୍ୟାପ୍ତ। ତ୍ରିଧାରାରେ ପ୍ରବାହିତ ହୋଇଛି ଲେଖକଙ୍କ ଭାବୋପଲବ୍ଧି। ଏ କ୍ଷେତ୍ରରେ ଲେଖକଙ୍କ ନିଜସ୍ୱ ଅନୁଭୂତିର ସ୍ୱାକ୍ଷର ପ୍ରଗାଢ଼। କେଉଁ ପ୍ରାଗୈତିହାସିକ କାଳରେ ଓଡ଼ିଶାରେ ନୌ-ସଭ୍ୟତା ବିକାଶ ଲାଭ କରିଥିଲା, ତା'ର ପ୍ରାମାଣିକତା ଆଜି ଆଉ ବିବଦମାନ ହୋଇ ରହିନାହିଁ। ନୌ-ବାଣିଜ୍ୟରେ ଓଡ଼ିଆ ସାଧବ ପୁଅର ଦକ୍ଷତାର ପଟ୍ଟାନ୍ତର ନଥିଲା। ଏହି କ୍ରମରେ ଓଡ଼ିଆ ସଭ୍ୟତା, ସଂସ୍କୃତି ସୁଦୂର ଜାଭା, ବୋର୍ଣ୍ଣିଓ, ସୁମାତ୍ରା, ମେକ୍ସିକୋ, ଇଣ୍ଡୋନେସିଆ ପ୍ରଭୃତି ଅଞ୍ଚଳକୁ ବିସ୍ତାର ଲାଭ କରିଥିଲା। ଏପରି କି ସିଂହଳ ଦ୍ୱୀପରେ ବିଜୟ ସିଂ ନାମକ ଓଡ଼ିଆ ପୁଅ ରାଜତ୍ୱ କରି ଓଡ଼ିଆ ସଭ୍ୟତାର ପରିପ୍ରସାର ଘଟାଇଥିଲେ। ତାଙ୍କରି ନାମାନୁସାରେ ସିଂରୁ ସିଂହଳ ହୋଇଛି ବୋଲି କେହି କେହି ଐତିହାସିକ ମତବ୍ୟକ୍ତ କରିଥାନ୍ତି। ସେହିପରି ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ପ୍ରାଚୀନ ଉତ୍କଳୀୟ ସଂସ୍କୃତି ପରିପ୍ରସାରିତ ହୋଇଥିଲା - ଏହାର ସତ୍ୟତା ପ୍ରତିପାଦନ କରିବା ହେଉଛି ଲେଖକଙ୍କ ସୃଷ୍ଟି ଆଭିମୁଖ୍ୟ। ଦ୍ୱିତୀୟରେ ପ୍ରାଚୀ ସଂସ୍କୃତି, ସଭ୍ୟତା, ଚଳଣି, ଲୋକବିଶ୍ୱାସ, ସାମାଜିକତା, ସାଂସ୍କୃତିକ ଜୀବନଧାରା, ଆଧ୍ୟାତ୍ମିକ ଜୀବନଧାରା, ଆଧ୍ୟାତ୍ମିକ ଚେତନା ପ୍ରଭୃତି ସହିତ ଆଜିର ସର୍ବୋତ୍ତମ ଓ ସର୍ବଶ୍ରେଷ୍ଠ ସଭ୍ୟତାର ପ୍ରତୀକ ଆମେରିକା ସଂସ୍କୃତି, ସଭ୍ୟତାର ତୁଳନାତ୍ମକ ବିଚାର ତାଙ୍କର ଲକ୍ଷ୍ୟ ହୋଇଛି। ଏହି ପରିପ୍ରେକ୍ଷୀରେ ସେ ଉଭୟ ସଭ୍ୟତାର ଉତ୍କର୍ଷ ଓ ଅପକର୍ଷ ଦର୍ଶାଇବାକୁ ଚେଷ୍ଟା କରିଛନ୍ତି। ତୃତୀୟରେ ବୌଦ୍ଧଯୁଗରେ ଓଡ଼ିଶାରେ ବୌଦ୍ଧ ପରମ୍ପରାର ବିକାଶ ଓ ସଂପ୍ରତି ତା'ର ସ୍ମୃତିଚିହ୍ନକୁ ଲେଖକ ତନ୍ନ ତନ୍ନ କରି ବିଶ୍ଳେଷଣ କରିଛନ୍ତି।

ଉପନ୍ୟାସର ପ୍ଲଟ୍ ବା କଥାବସ୍ତୁ ସଂଯୋଜନାରେ ବିଶେଷ ଜଟିଳତା ପରିଲକ୍ଷିତ ହୁଏନାହିଁ କିମ୍ବା ଚରିତ୍ରଚିତ୍ରଣରେ ସେପରି ଉଲ୍ଲେଖଯୋଗ୍ୟ କ୍ରିୟାଶୀଳତା ଚରିତ୍ରସମୂହକୁ ବଳିଷ୍ଠ କରି ଗଢ଼ି ତୋଳିପାରିନାହିଁ। ଏକ ସାଧାରଣ କାହାଣୀକୁ ଅବଲମ୍ବନ କରି କିମ୍ବଦନ୍ତୀ ଓ ଇତିହାସଶ୍ରୁତ ଓଡ଼ିଶାର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ହିଁ ଔପନ୍ୟାସିକଙ୍କର ଏକାନ୍ତ ଲକ୍ଷ୍ୟ ହୋଇଛି।

ପ୍ରଥମରୁ ରୁଦ୍ରବାବୁ ଚରିତ୍ରଟି ବେଶ୍ ଗୁରୁତ୍ୱପୂର୍ଣ୍ଣ ଚରିତ୍ର ଭାବରେ ରୂପାୟିତ ହୋଇଛି। ରେଭେନ୍ସା କଲିଜିଏଟ୍ ସ୍କୁଲର କେତୋଟି ଛାତ୍ର ଆଉ ରୁଦ୍ରବାବୁ ମିଶି ଦକ୍ଷିଣ ଓଡ଼ିଶା ଭ୍ରମଣରେ ବାହାରନ୍ତି। ରୁଦ୍ରବାବୁଙ୍କ ଆଦର୍ଶମୟ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରେରଣାରେ ଅନୁପ୍ରାଣିତ

ହେବାକୁ ନୂତନ ପିଢ଼ିର ଯୁବସମାଜ ପ୍ରତି ଏଥିରେ ପ୍ରଚ୍ଛନ୍ନ ଇଙ୍ଗିତ ରହିଛି । କେତେବେଳେ ବାଟରେ ରାତ୍ରିଯାପନ କଲାବେଳେ ତ ଆଉ କେତେବେଳେ ଟ୍ରେନ୍, ବସ୍‌ରେ ଯାତ୍ରା କଲାବେଳେ ଓଡ଼ିଶାର ପୂର୍ବଗୌରବ, ଐତିହ୍ୟ ଓ ପ୍ରାଣପ୍ରାଚୁର୍ଯ୍ୟକୁ ସ୍ମରଣ କରାଇ ଦେଇଛନ୍ତି ରୁଦ୍ରବାବୁ । ଗୋଟିଏ ଅବସାଦଗ୍ରସ୍ତ ଜାତିପ୍ରାଣରେ ନୂତନ ଜୀବନୀଶକ୍ତିର ସଂଚାର ନିମନ୍ତେ ପ୍ରାକ୍-ସ୍ୱାଧୀନତା କାଳରେ ଜାତୀୟତାମୂଳକ ଲେଖାମାନ ରଚିତ ହେଉଥିଲା । ସ୍ୱାଧୀନୋତ୍ତର କାଳରେ ଓଡ଼ିଶା ଆଶାନୁରୂପ ପ୍ରଗତି ହାସଲ କରିପାରିନାହିଁ । ବରଂ ସର୍ବଭାରତୀୟ ସ୍ତରରେ ଏକ ପଛୁଆ, ଅବହେଳିତ, ଦରିଦ୍ର ଜାତି ଭାବରେ ଅନୁକମ୍ପାର ପାତ୍ର ହୋଇଛି । ଏହା କୌଣସି ସଚେତନ ଓଡ଼ିଆ ପୁଅକୁ ବ୍ୟଥିତ କରିବା ସ୍ୱାଭାବିକ । ଔପନ୍ୟାସିକ ବିକ୍ରମ ଦାସ ମୂହ୍ୟମାନ ଓଡ଼ିଆ ଜାତି ଭିତରେ ନୂତନ ଉଦ୍ଦୀପନା ସୃଷ୍ଟି କରିବା ପାଇଁ ତଥା ଜାତିକୁ ନୂତନ ଜୀବନବୋଧରେ ଉଦ୍‌ଜ୍ଜୀବିତ କରିବା ପାଇଁ ଏପରି ଏକ ସୃଷ୍ଟି ଆଭିମୁଖ୍ୟର ବଶବର୍ତ୍ତୀ ହୋଇଛନ୍ତି । ଏ କ୍ଷେତ୍ରରେ ଲେଖକଙ୍କ ନିଷ୍ଠାପର ପ୍ରୟାସଟି ଉଲ୍ଲେଖନୀୟ । ଗପ କହିବା ଛଳରେ ଓଡ଼ିଶାର ସକଳବିଧ ଐଶ୍ୱର୍ଯ୍ୟର ଗନ୍ତାଘରକୁ ପାଠକ ନିକଟରେ ତୋଳି ଧରିବା ପାଇଁ ସେ ସତତ ଚେଷ୍ଟିତ ।

ଉପନ୍ୟାସ ନାୟିକ ଚନ୍ଦ୍ରମା ଓ ନାୟକ ରାମଶଙ୍କରଙ୍କର ଜୀବନଚର୍ଯ୍ୟା କରିବାରେ ଲେଖକ ଆଶାନୁରୂପ କଳାନୈପୁଣ୍ୟ ପ୍ରଦର୍ଶନ କରିପାରିନାହାନ୍ତି । ମାତ୍ର ଅତୀତ ଓଡ଼ିଶାର ସାଂସ୍କୃତିକ, ସାମାଜିକ, ରାଜନୈତିକ ତଥା ସାମଗ୍ରିକ ଜୀବନପ୍ରବାହର ଏକ ନିଖୁଣ ଚିତ୍ର ଦେବାରେ ପ୍ରଶଂସନୀୟ ସଫଳତା ହାସଲ କରିପାରିଛନ୍ତି । "କନା ପିଣ୍ଡୁଳାର କନାଗୁଡ଼ିକ ଅତି ପୋରିହା ହୋଇଯାଇଥିବାରୁ ହାତ ଦେଉ ଦେଉ ଖୋଳପା ପରି ଛାଡ଼ି ଆସିଲା । ତା' ଭିତରୁ ଗୋଟିକରେ ଜଗନ୍ନାଥଙ୍କର ଛୋଟ ପଥର ମୂର୍ତ୍ତିଟିଏ ଓ ଅନ୍ୟଟିରେ ଗଣେଶଙ୍କର ପିତଳ ମୂର୍ତ୍ତିଟିଏ ଥିଲା । ମେକ୍ସିକୋ ସିଟି ସଂଗ୍ରହାଳୟ ଓ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସେଠାରେ ସଂଗୃହୀତ ପୁରୁଣା ଦେବଦେବୀ ମୂର୍ତ୍ତି ଭିତରେ, ଭଙ୍ଗା ଦରଭଙ୍ଗା ଗଣେଶ ମୂର୍ତ୍ତି ସେ ଦେଖିଥିଲେ; କିନ୍ତୁ ସେପରି ନିଖୁଣ ଗଣେଶ ଓ ଜଗନ୍ନାଥ ମୂର୍ତ୍ତି ଦେଖିବାକୁ ପାଇନଥିଲେ । ଗଣେଶ ସର୍ବବିଘ୍ନ ବିନାଶକ । ହିନ୍ଦୁଙ୍କର ସବୁ କାର୍ଯ୍ୟରେ ଆଗ ତାଙ୍କର ପୂଜା ହୁଏ । ତେଣୁ ସାଧବମାନେ ସେମାନଙ୍କ ବୋଇତରେ ଓଡ଼ିଆଙ୍କର ଇଷ୍ଟଦେବତା ଜଗନ୍ନାଥ ଓ ମଙ୍ଗଳମୟ ଗଣେଶଙ୍କୁ ସଙ୍ଗରେ ନେଇ ପୂଜା କରୁଥିବା ସମ୍ଭବ ବୋଲି ରାମଶଙ୍କର ମନେକଲେ ।"(ବୁଦ୍ଧଖୋଲର ମାୟା, ପୃ-୧୧୦)

ନାୟକ ରାମଶଙ୍କର ଉଚ୍ଚତର ଗବେଷଣା ପାଇଁ ଆମେରିକା ଯାଇଛନ୍ତି । ସେଠାରୁ ଘଟଣାକ୍ରମେ ମେକ୍ସିକୋ ଯାତ୍ରା କରିଛନ୍ତି । ଏପରି ଏକ ଘଟଣାବିନ୍ୟାସ ଛଳରେ ଲେଖକ ସାଂପ୍ରତିକ ପାଶ୍ଚାତ୍ୟଜୀବନ ଓ ସଭ୍ୟତାର ସମ୍ୟକ୍ ପରିଚୟ ଦେଇଛନ୍ତି ଓ ଓଡ଼ିଆ ସଭ୍ୟତା,

ସଂସ୍କୃତିର ଏକ ଚିତ୍ରରୂପ ପ୍ରଦାନ କରିଛନ୍ତି । ଉପନ୍ୟାସର ପ୍ରତ୍ୟେକ ପୃଷ୍ଠାରେ ଔପନ୍ୟାସିକଙ୍କ ନିଜସ୍ୱ ଅନୁଭୂତି ସତେ ଯେପରି ବାଙ୍‌ମୟ ହୋଇଉଠିଛି ।

'ବୁଦ୍ଧଖୋଲର ମାୟା' ଏକ ଭିନ୍ନସ୍ୱାଦର ଉପନ୍ୟାସ । ଏଥିରେ ଚିରାଚରିତ କାହାଣୀ ରୀତିକୁ ଗ୍ରହଣ କରାଯାଇନାହିଁ । ଓଡ଼ିଶାର ଗୌରବ ପ୍ରତିଷ୍ଠା, ଔପନ୍ୟାସିକଙ୍କ ସୃଜନଶୀଳତାର ମୂଳ ପ୍ରେରଣା ହୋଇଥିବାରୁ ପ୍ଲଟ୍ ଓ ଚରିତ୍ର ଉଭୟ ଦିଗ ଏଥିରେ ଦୁର୍ବଳ ଓ ଉପେକ୍ଷିତ । କୌଣସି ଗୋଟିଏ ଚରିତ୍ର ବଳିଷ୍ଠ, କ୍ରିୟାଶୀଳ କିମ୍ବା ମୂଲ୍ୟମାନର ତୁଙ୍ଗିମା ସ୍ପର୍ଶ କରିପାରିନାହାନ୍ତି ।

ଏପରିକି ଗଣେଶ ଓ ଗନ୍ଧର୍ବରାଜ ରାୟ ଖଳଚରିତ୍ର ଦୁଇଟିରେ ମଧ୍ୟ ବିଶେଷ କିଛି ଚମତ୍କାରିତା ପରିଲକ୍ଷିତ ହୁଏନାହିଁ । ଏ ସବୁ ସତ୍ତ୍ୱେ ଏହି ଉପନ୍ୟାସଟିର ଚିରନ୍ତନ ମୂଲ୍ୟକୁ ଅସ୍ୱୀକାର କରାଯାଇନପାରେ । ସାଂପ୍ରତିକ କାଳର ଜୀବନପ୍ରବାହରେ ଦେଖାଦେଇଥିବା ଅବକ୍ଷୟଜନିତ ଅଧୋଗତିର ପଥରୋଧ କରିବା ହେଉଛି ଏ ଉପନ୍ୟାସର ମର୍ମବାଣୀ । ଜାତି ଗଠନ ପ୍ରକ୍ରିୟାରେ ସ୍ୱାଭିମାନୀ ଓଡ଼ିଆ ଜାତି ଆଉଥରେ ସାମିଲ ହେଉ ଓ ପୂର୍ବ ଗୌରବ ଫେରାଇ ଆଣୁ, ଏହା ହିଁ ତାଙ୍କ ଉପନ୍ୟାସର ଶେଷକଥା । କେବଳ ସେତିକି ନୁହେଁ, ଲେଖକଙ୍କ ନିଜସ୍ୱ ଅଭିଜ୍ଞତାର ବର୍ଣ୍ଣାଢ଼୍ୟ ଦିଗନ୍ତ ଏଥିରେ ଉଦ୍‌ଘାଟିତ, ଯାହା ଅଧିକାଂଶ ଲେଖଙ୍କ ଭାଗରେ ସମ୍ଭବ ହୋଇନଥାଏ । ଜୀବନ ଓ ଜଗତର ଏକ ବୃହତ୍ତର ଦିଗ୍‌ବଳୟକୁ ଛୁଇଁବାକୁ ଲେଖକ ସତତ ଚେଷ୍ଟିତ । "ସାଂପ୍ରତିକ ଓଡ଼ିଆ ଉପନ୍ୟାସର ଦିଗ୍‌ବଳୟ ଅତ୍ୟନ୍ତ ସୀମାବଦ୍ଧ । ଏଥିରେ ନୂତନ ଅଭିଜ୍ଞତାର ପରିବେଷଣ ନାହିଁ । ନୂତନ ପରିସ୍ଥିତିର ବର୍ଣ୍ଣନା ନାହିଁ - ନୂତନତାର ଉଦ୍ୟମ ନାହିଁ । ସେଇ ଚିରନ୍ତନ ପ୍ରେମକଥା, ଯୁବକଯୁବତୀଙ୍କ ମଧ୍ୟରେ ଦେହଜ ପ୍ରେମ ଓ ତା'ର ଶତ ବିକୃତି ମଧ୍ୟରେ ଅଧିକାଂଶ ଉପନ୍ୟାସ ସୀମିତ । ସେଥିପାଇଁ ସ୍ୱାଧୀନତାର ପରବର୍ତ୍ତୀ କାଳରେ ଓଡ଼ିଆ ଉପନ୍ୟାସ ଯେଉଁ ବିପୁଳ ସମ୍ଭାବନାର ଦ୍ୱାର ଉନ୍ମୋଚନ କରିଥିଲା, ଆଜି ତାହା ବହୁ ପରିମାଣରେ ସଙ୍କୁଚିତ ହୋଇପଡ଼ିଛି କହିଲେ ଅତ୍ୟୁକ୍ତି ହେବନାହିଁ । ଡକ୍ଟର ବିକ୍ରମ ଦାସ କିନ୍ତୁ ଉପନ୍ୟାସକୁ ସେହି ସୀମାବଦ୍ଧତାରୁ ମୁକ୍ତି ଦେଇ, ଏକ ନୂତନ ପ୍ରତିଶ୍ରୁତି ଓ ସମ୍ଭାବନାର ସଙ୍କେତ ଦେଇଛନ୍ତି ।"(ବୁଦ୍ଧଖୋଲର ମାୟା-(ଉପନ୍ୟାସ ସମ୍ବନ୍ଧରେ - ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି, ପୃ - କ)

ଗୋଟିଏ ଉଚ୍ଚକୋଟିର କଳାସୃଷ୍ଟିରେ ହୃଦୟାବେଗକୁ ଅସ୍ୱୀକାର କରାଯାଇ ନପାରେ । କେବଳ ବୁଦ୍ଧିବୃତ୍ତି ଦ୍ୱାରା କଳା ମୂଲ୍ୟାୟନ ହୁଏତ ସମ୍ଭବ । ମାତ୍ର ସୃଜନଶୀଳତାରେ ହୃଦୟବୃତ୍ତି ଓ ଭାବପ୍ରବଣର ସ୍ୱତନ୍ତ୍ର ଆବେଦନ ରହିଛି । ଏ ଦୃଷ୍ଟିରୁ ବିଚାର କଲେ ଉପନ୍ୟାସଟିରେ ସେ ଦିଗଟି ଅତି ଦୁର୍ବଳ । ବହୁ ବର୍ଷ ଧରି ରାମଶଙ୍କର ଚନ୍ଦ୍ରମାଙ୍କର ସଠିକ୍ ଖବର ରଖିପାରିନାହାନ୍ତି । କୁଚକ୍ରୀ ଗଣେଶର ଚକ୍ରାନ୍ତ ଯୋଗୁଁ ସ୍ୱାମୀ-ସ୍ତ୍ରୀ ଉଭୟ ଉଭୟଠାରୁ ବିଛିନ୍ନ ହୋଇରହିଛନ୍ତି । ସ୍ୱାମୀଙ୍କ ଦ୍ୱାରା ଉପେକ୍ଷିତା ଜଣେ ନାରୀ ପ୍ରାଣର ଆବେଗ, ଉତ୍କଣ୍ଠା,

ବ୍ୟାକୁଳତା, ଅଭିମାନ ଓ ଉଚ୍ଛ୍ୱାସ ଯେପରି ଶତଧା ପ୍ରକାଶମାନ ହୁଅନ୍ତା, ତାହା ହୋଇନାହିଁ। ବରଂ ଆଦର୍ଶର ଅନୁପ୍ରେରଣା ଅଧିକ ପ୍ରଭାବଶାଳୀ ହୋଇଛି। ଜୀବନର ସ୍ୱାଭାବିକ ବାସ୍ତବ ଦିଗଟି ପ୍ରତି ଲେଖକ ଧ୍ୟାନଶୀଳ ହୋଇପାରିନାହାନ୍ତି।

ଅବଶେଷରେ ରାମଶଙ୍କର ଓ ଚନ୍ଦ୍ରମାଙ୍କର ମିଳନ ମଧ୍ୟ ଅତି ଚିରାଚରିତ ରୀତିରେ ସଂଘଟିତ ହୋଇଛି। ବେଳେ ବେଳେ ଲେଖକ ସାମ୍ବାଦିକ ରୀତିରେ ବହୁ ପରିବେଷଣ କରିବାର ପ୍ରୟାସ ପୋଷଣ କରିଛନ୍ତି। ଏହି ଉପନ୍ୟାସଟିରେ ସବୁଠାରୁ ବଡ଼ ଅବଦାନ ହେଉଛି ଚନ୍ଦ୍ରବାବୁ ଚରିତ୍ରଟି। ଏହି ଚରିତ୍ରଟିକୁ ଔପନ୍ୟାସିକ ଏକ ସନ୍ନ୍ୟାସୀ ଚରିତ୍ର ରୂପେ ଚିତ୍ରଣ କରିଛନ୍ତି। କିନ୍ତୁ ଏହାର ପଛପଟରେ ରହିଛି ଓଡ଼ିଶାର ଐତିହ୍ୟ, ସଂସ୍କୃତି ଓ ପରମ୍ପରା ସଂପର୍କରେ ଏକ ବିଶଦ ଚିତ୍ରରୂପ। କଳିଙ୍ଗ, ଉତ୍କଳ, ଓଡ଼ିଶା ବା ତ୍ରିକଳିଙ୍ଗର ପ୍ରାଚୀନ ଇତିହାସ, ପ୍ରକୃତି, ଭୌଗୋଳିକ ସ୍ଥିତି, ସାମାଜିକ ଜୀବନ, ରାଜନୈତିକ ଅବସ୍ଥା ସର୍ବୋପରି ତା'ର ସାଂସ୍କୃତିକ ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ସଂପର୍କରେ ସେ ବିଶଦ ତଥ୍ୟ ପରିବେଷଣ କରିଛନ୍ତି। ଋକ୍‌ବେଦ ରଚନା ସମୟରୁ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ ଛଡ଼ା ଉତ୍କଳ ବା ଉଡ୍ର ନାମରେ ରାଜ୍ୟ ନଥିଲା। କଳିଙ୍ଗ ରାଜ୍ୟ କପିଶା ବା ମେଦିନୀପୁରର କଂସାଇ ନଈଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଓ ସ୍ଥାନେ ସ୍ଥାନେ ସେ କୃଷ୍ଣାନଦୀ ପର୍ଯ୍ୟନ୍ତ ବ୍ୟାପୃତ ଥିଲା। କଳିଙ୍ଗ ରାଜା ଶତାୟୁ ମହାଭାରତ ଯୁଦ୍ଧରେ କୌରବଙ୍କ ପକ୍ଷରେ ରହି ଯୁଦ୍ଧ କରୁଥିଲେ। ମତ୍ସ୍ୟ, କୂର୍ମ, ବାୟୁ ଓ ସ୍କନ୍ଦ ପୁରାଣରେ କଳିଙ୍ଗ ରାଜ୍ୟ ବିଷୟରେ ଉଲ୍ଲେଖ କରାଯାଇଛି। ଚନ୍ଦ୍ରବଂଶୀୟ ବଳି ରାଜାଙ୍କ ରାଣୀ ସୁଦେଷ୍ଣାଙ୍କଠାରୁ ଅଙ୍ଗ,ବଙ୍ଗ, କଳିଙ୍ଗ, ସୁହ୍ମ ଓ ପୌଣ୍ଡ୍ର ନାମକ ପାଞ୍ଚପୁତ୍ର ଜାତ ହୋଇ ନିଜ ନିଜ ନାମରେ ପାଞ୍ଚୋଟି ରାଜ୍ୟ ବସାଇଥିବାର ଗରୁଡ଼ ପୁରାଣ ଓ ହରିବଂଶରୁ ମିଳେ। ଜୈନ ଓ ବୌଦ୍ଧ ଗ୍ରନ୍ଥମାନଙ୍କରେ କଳିଙ୍ଗଦେଶ କଥା ନାନା ଭାବରେ ଲେଖାଯାଇଛି।"(ତତ୍ରୈବ, ପୃ-୩୩)

ଉପନ୍ୟାସ କଳାଦୃଷ୍ଟିରୁ ବିଚାର କଲେ କେତେକ ତ୍ରୁଟିବିଚ୍ୟୁତ ପରିଲକ୍ଷିତ ହେଉଥିଲେ ହେଁ ସାଧାରଣ ଲୌକିକ ଭାଷାର ପ୍ରୟୋଗ, ସହଜ ସରଳ କଥନଭଙ୍ଗୀ ଯୋଗୁଁ ଉପନ୍ୟାସଟି ସୁଖପାଠ୍ୟ ହୋଇପାରିଛି। ଆଧୁନିକ ଉପନ୍ୟାସର ଜଟିଳ ଚକ୍ରବ୍ୟୂହ ପରି ଏଥିରେ ସଙ୍କେତଧର୍ମୀ ଭାବବୃତ୍ତ ସୃଷ୍ଟି କରିବାକୁ ଔପନ୍ୟାସିକ ସ୍ପୃହା କରିନାହାନ୍ତି। ନିଜସ୍ୱ ଶୈଳୀରେ ସେ ନିଜର ଅଭିଜ୍ଞତାକୁ ଅଭିବ୍ୟକ୍ତ କରିଛନ୍ତି। ସେଥିପାଇଁ ସାଧାରଣ ପାଠକ ନିକଟରେ ଏହା ସହଜରେ ବୋଧଗମ୍ୟ ହୋଇପାରିଛି। ସ୍ଥାନେ ସ୍ଥାନେ ହାସ୍ୟରସର ପରିବେଷଣ ପରିବେଶକୁ ହାସ୍ୟମୁଖର କରିଛି।

ଡକ୍ଟର ବିକ୍ରମ ଦାସଙ୍କ ଉପନ୍ୟାସଗୁଡ଼ିକ ଏକ ସ୍ୱତନ୍ତ୍ର ପର୍ଯ୍ୟାୟର ଉପନ୍ୟାସ ହୋଇଥିବାରୁ ଏହାକୁ ପ୍ରତିଷ୍ଠିତ ସମାଲୋଚନାର ମାନଦଣ୍ଡରେ ପର୍ଯ୍ୟାଲୋଚନା କରିବା

ଯଥାର୍ଥ ହୁଏନାହିଁ। ଅଭିନବ ବିଷୟବସ୍ତୁ ଓ ପରିବେଶ ନେଇ ଉପନ୍ୟାସଟି ଗଢ଼ିଉଠିଥିବାରୁ ଏହା ପ୍ରଚଳିତ ସ୍ଥିତିଶୀଳତାରୁ ମୁକ୍ତ ଓ ନୂତନତ୍ୱର ବାର୍ତ୍ତାବହ।

ତାଙ୍କର 'ସ୍ୱପ୍ନର ପାଞ୍ଚାଳୀ' ଉପନ୍ୟାସଟି କାଶ୍ମୀରବାସୀ "କେଶୋ"ର ଜୀବନଚର୍ଯ୍ୟା ଓ ପ୍ରଚଳିତ ସାମାଜିକ ଚଳଣି ଉପରେ ଆଧାରିତ ଏକ ଉପନ୍ୟାସ। ଏହି ପରିପ୍ରେକ୍ଷୀରେ ସେ ସାଂପ୍ରଦାୟିକ ଦଙ୍ଗାର ଭୟାବହ ଚିତ୍ର ପ୍ରଦାନ କରିଛନ୍ତି। ଧର୍ମାନ୍ଧତା କାଳେ କାଳେ ମାନବିକତାର ଘୋର ବିପର୍ଯ୍ୟୟ ଆଡ଼କୁ ବାଟ କଢ଼ାଇନିଏ। ଭିନ୍ନ ଭିନ୍ନ ସମୟରେ କାଶ୍ମୀରରେ ଯେଉଁ ଦଙ୍ଗାଜନିତ ଦୁର୍ଘଟଣା ଘଟେ, ତାର ପରିଣତି କେବଳ ପଶୁତ୍ତର ବିକଟ ଅଟ୍ଟହାସ୍ୟ ପରି ମନେ ହୋଇଥାଏ। ଏହାର ବର୍ଣ୍ଣନା ଯେତିକି କରୁଣ, ସେତିକି ମର୍ମାନ୍ତିକ । "ରାତିସାରା ତା'ର ନଗ୍ନ ଶରୀର ଉପରେ ଭୋକିଲା ସୈନ୍ୟଙ୍କର ଅବାଧ ଅତ୍ୟାଚାର ଚାଲିଲା। ଅବଶ୍ୟ ସେ ଏକାକିନୀ ନଥିଲା। ତା ସଙ୍ଗେ କୋଠରିରେ ପୂର୍ବରୁ ବନ୍ଦିନୀ ଥିବା ଅବଳାମାନଙ୍କ ଉପରେ ମଧ ସେହି ପଶୁମାନଙ୍କର ଶିକାର ହୋଇ ଆର୍ତ୍ତନାଦ କରୁଥିଲା। ତା'ର ଦୁଃଖର ସମବେଦନାରେ ଆଖିବୁଜି ପ୍ରମିଳା ସବୁ ଅତ୍ୟାଚାର ସହ୍ୟ କରିବାକୁ ଲାଗିଲା। ସେ କେତେବେଳେ ସଂଜ୍ଞା ହରାଇଥିଲା ତାର ମନେ ନଥିଲା।"(ସ୍ୱପ୍ନର ପାଞ୍ଚାଳୀ,ପୃ-୧୬୯)

କଳିର ପାଞ୍ଚାଳୀ ଶିରୋନାମାରେ ଶେଷ ପରିଛେଦଟି ପାଠକ ମନରେ ଗଭୀର ଅନୁକମ୍ପା ସୃଷ୍ଟି କରିଥାଏ। କାଶ୍ମୀର ପଶ୍ଚିମ ଅଞ୍ଚଳରେ କନ୍ୟା ଅଭାବରୁ ଏକାଧିକ ଭାଇ ଗୋଟିଏ ଝିଅକୁ ବିବାହ କରି ଘର ସଂସାର କରିଥାନ୍ତି। ଏପରି ଏକ ସାମାଜିକ ପ୍ରଥା ଓ ଚଳଣି ଅନୁଯାୟୀ କେଶୋ ଓ ତାର ଅନ୍ୟ ଚାରିଭାଇ ଗୋଟିଏ କନ୍ୟାର ପାଣିଗ୍ରହଣ କରିଥିଲେ। ମାନ୍ତ ଏହି ପାହାଡ଼ିଆ ଅଞ୍ଚଳରେ ଜୀବନଧାରଣ କରିବା କଷ୍ଟସାଧ୍ୟ ଥିଲା। ସବୁ ସମୟରେ ଯୁଦ୍ଧର ଆତଙ୍କ ,ବିଶେଷ ଶତ୍ରୁ ଆକ୍ରମଣରେ ଭୟ,ବରଫାବୃତ୍ତ ଅଞ୍ଚଳରେ କୃଷି ନିମନ୍ତେ ପ୍ରତିକୂଳ ପରିସ୍ଥିତି ଯୋଗୁଁ ସେଠିକାର ଲୋକମାନେ ଅର୍ଥ ଉପାର୍ଜନ ପାଇଁ ଶ୍ରୀନଗର ଓ ଅନ୍ୟ ଦୂରଦୂରନ୍ତକୁ ଆସି ବିଭିନ୍ନ ପ୍ରକାର ପନ୍ଥା ଅବଲମ୍ବନ କରିଥାନ୍ତି। କେଶୋ ଓ ତାର ଭାଇମାନେ ଘରେ ପତ୍ନୀ ରମାକୁ ଓ ପାଞ୍ଚୋଟି ଶିଶୁଙ୍କୁ ଛାଡ଼ି ଅର୍ଥ ଉପାର୍ଜନ ପାଇଁ ଗାଁ ଛାଡ଼ି ଆସିଥିଲେ। ମାତ୍ର ମନୁଷ୍ୟକୃତ ଦୁର୍ବିପାକର ଶରବ୍ୟ ହୋଇ ରମା ତା'ର ପାଞ୍ଚଟିଯାକ ସନ୍ତାନକୁ ହରାଇବା ସଙ୍ଗେ ସଙ୍ଗେ ନିଜର ନାରୀତ୍ୱକୁ ମଧ୍ୟ ହିଂସ୍ରତାର, ପାଶବିକତାର ମହାଯଜ୍ଞରେ ଆହୁତି ଦେଇଥିଲା। ସାଂପ୍ରଦାୟିକତା କେତେ ସୁଖର ସଂସାରକୁ ଉଜାଡ଼ି ଛାରଖାର କରିଦିଏ, କେତେ ହସିଲା ଘରକୁ ଭସ୍ମସ୍ତୂପରେ ପରିଣତ କରିଦିଏ, କେତେ ଅନୁଢ଼ା କିଶୋରୀଙ୍କ ଜୀବନକୁ ଜୀବନ୍ତ ସମାଧିରେ ପରିଣତ କରିଦିଏ, ରକ୍ତର ହୋରିରେ ଅଶ୍ରୁବନ୍ୟା ଛୁଟାଏ- ତା'ର ହୃଦୟସ୍ପର୍ଶୀ କାହାଣୀ ହେଉଛି 'ସ୍ୱପ୍ନର ପାଞ୍ଚାଳୀ'।

'ସ୍ୱପ୍ନର ପାଞ୍ଚାଳୀ'ର ବିଷୟ ସଂଯୋଜନା ଅବସରରେ ଲେଖକ ଡକ୍ଟର ବିକ୍ରମ ଦାସ ମହାଭାରତର କଥାବସ୍ତୁକୁ ସାବଲୀଳ ଶୈଳୀରେ ଅବତାରଣା କରିଛନ୍ତି। ଡକ୍ଟର ଦାସଙ୍କ ଉପନ୍ୟାସଗୁଡ଼ିକ ବୌଦ୍ଧିକ ଅନ୍ୱେଷା ଅପେକ୍ଷା ସାଧାରଣ ମଣିଷର ଦୈନନ୍ଦିନ ଜୀବନର ହସକାନ୍ଦର ସ୍ୱାଭାବିକ ବର୍ଣ୍ଣନାରେ ବାସ୍ତବଧର୍ମୀ। ପ୍ରତ୍ୟେକ ଉପନ୍ୟାସର ଅନ୍ତରାଳରେ ସ୍ରଷ୍ଟାମାନସର ଐତିହ୍ୟପ୍ରୀତି ଓ ସଂସ୍କୃତି ସଚେତନତା ବିଦ୍ୟମାନ। 'ସ୍ୱପ୍ନର ପାଞ୍ଚାଳୀ'ରେ ମଧ୍ୟ ଲେଖକ ଏ ଉଭୟ ଚେତନା ସହିତ ସ୍ୱଦେଶ ପ୍ରୀତିର ସମନ୍ୱୟ ଘଟାଇଛନ୍ତି। ଭାଷା ସହଜ ଓ ସରଳ। ମାତ୍ର ମହାଭାରତ କାହାଣୀ ବର୍ଣ୍ଣନାରେ ଯେଉଁ କଳା ପାଟବତା ଓ ପ୍ରାଣପ୍ରାଚୁର୍ଯ୍ୟ ରହିବା କଥା, କେତେକ କ୍ଷେତ୍ରରେ ତାହା ବିଡ଼ମ୍ବିତ ହୋଇଛି। ଉପନ୍ୟାସର ମୁଖ୍ୟ କଥାବସ୍ତୁ ମହାଭାରତ ପାହାଣୀର ଏକ ଛାୟାପରି ଗୌଣ ହୋଇଯାଇଛି। କେଶୋ ଚରିତ୍ରଟି ଚରିତଲିପିରେ ଅଙ୍ଗେଲିଭା ବାସ୍ତବତା ଅନୁଭୂତ ହୋଇଥାଏ। ଔପନ୍ୟାସିକଙ୍କ 'ମୋ ନନାଙ୍କ ଦେଶ'ରେ ବର୍ଣ୍ଣିତ ଡ୍ରାଇଭର ଚରିତ୍ରର ଅନେକଟା ସାମ୍ୟ ପରିଲକ୍ଷିତ ହୋଇଥାଏ। ବ୍ୟକ୍ତିଗତ ଜୀବନାନୁଭୂତି ସହିତ କଳ୍ପନାର ରଙ୍ଗରେଖାରେ ଉପନ୍ୟାସଟି ପ୍ରାଣବନ୍ତ ଓ ସ୍ପର୍ଶସଜଳ।

ଲେଖକ ଡକ୍ଟର ବିକ୍ରମ ଦାସଙ୍କର ଅନ୍ୟତମ ଉପନ୍ୟାସ 'ଭଲେ ବିରାଜୋ ଜୀ'ର ପ୍ରକାଶକାଳ ୧୯୮୬ ମସିହା। ଜଗନ୍ନାଥ ଚେତନାର ଅକପଟ ପରିପ୍ରକାଶ ଲେଖକଙ୍କ ଜଗନ୍ନାଥ ପ୍ରୀତିର ମନୋଜ୍ଞ ଅଭିବ୍ୟକ୍ତି। ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟ, ଏହା କହିବା ବାହୁଲ୍ୟ ମାତ୍ର। ସମଗ୍ର ବିଶ୍ୱକୁ ଜଗନ୍ନାଥ ଚେତନା, ତା'ର ବିଶ୍ୱଭ୍ରାତୃତ୍ୱ, ଉଦାର ମାନବ ନୀତି, ମହାନ୍ ମାନବିକ ଆଦର୍ଶ, ଉତ୍ତରିତ ହେବାର ସହଜ ସରଳ ପନ୍ଥା ତଥା ଲୌକିକ ଆବେଦନ ସର୍ବଶ୍ରେଷ୍ଠ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ। ଉପନ୍ୟାସ ଛଳରେ ଜଗନ୍ନାଥଙ୍କର ଶାଶ୍ୱତ ସତ୍ୟରୂପକୁ ଉଦ୍‌ଘାଟନ କରିବାର ଅଭିପ୍ରାୟ ଏଥିରେ ପରିଲକ୍ଷିତ ହୋଇଥାଏ। ଏତଦ୍‌ବ୍ୟତୀତ ଓଡ଼ିଆ ପୁଅର ଗୁରୁଗୌରବ ଗାନ କରିବାର ଲେଖକଙ୍କ ଜୀବନର ଏକମାତ୍ର ଧର୍ମ ଓ ସଂକଳ୍ପ ହୋଇଥିବାରୁ ସୁଯୋଗ ମାତ୍ରେ ସେ ଅତୀତର ଗୌରବାବହ ଚିତ୍ର ପ୍ରଦାନ କରିଛନ୍ତି। ଉତ୍ତରପଚାଶ ପରେ ବିଶେଷତଃ ସ୍ୱାଧୀନୋତ୍ତର କାଳରେ କ୍ୱଚିତ୍ ସ୍ରଷ୍ଟା ଏପରି ସ୍ୱଦେଶାନୁରାଗର ପରିଚୟ ଦେଇଛନ୍ତି। ଏ ଦୃଷ୍ଟିରୁ ସେ ପ୍ରଶଂସନୀୟ ଭୂମିକାରେ ଅବତୀର୍ଣ୍ଣ।

ଓଡ଼ିଆ ପୁଅର ବୀରତ୍ୱ, ସାହସ, ଆତ୍ମବିଶ୍ୱାସ, ତ୍ୟାଗ, ମହନୀୟତା ପ୍ରଭୃତି ତାଙ୍କ ସୃଷ୍ଟିର ଏକାନ୍ତ ଧ୍ୟେୟ ହୋଇଛି। "ଆରେ ! ଚନ୍ଦନ ହଜୁରୀର ସାହସ ନଥିଲେ ସେ ସିପାହୀ ବିଦ୍ରୋହ ବେଳେ ଦୂର ରାଜ୍ୟମାନଙ୍କରେ ଯାଇ ବିଦ୍ରୋହୀ ରାଜାରାଣୀମାନଙ୍କର ଗୁରୁ ହୋଇପାରିନଥାନ୍ତା କି ଆଜି ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ତା'ର ନାମ ସୁନା ଅକ୍ଷରରେ ଲେଖାଯାଇନଥାନ୍ତା।"(ଭଲେ ବିରାଜୋ ଜୀ, ପୃ - ୩)

ସମଗ୍ର ଉପନ୍ୟାସଟିରେ ପୁରୀର ଚଳଣି, ଲୋକବିଶ୍ୱାସ, ଜୀବନଧାରା, ସାମାଜିକ ରୀତି ସବୁ କିଛି ପ୍ରତିବିମ୍ବିତ । ଆଗେ ପୁରୀର ଯାତ୍ରୀ ଗୁମାସ୍ତାମାନେ ଭାରତର ବିଭିନ୍ନ ଅଞ୍ଚଳକୁ ଯାଇ ଶ୍ରୀ ଜଗନ୍ନାଥ ନାମ ପ୍ରଚାର କରିବା ସଙ୍ଗେ ସଙ୍ଗେ ଯାତ୍ରୀମାନଙ୍କୁ ଆଣି ପୁରୀରେ ଜଗନ୍ନାଥ ଦର୍ଶନ କରାଉଥିଲେ। ଏହି ଯାତ୍ରୀ ଗୁମାସ୍ତାମାନଙ୍କର ଜୀବନ ଅତ୍ୟନ୍ତ କ୍ଳେଶକର ଥିଲା । ବେଳେ ବେଳେ ଏମାନଙ୍କର ଧୂର୍ତ୍ତତାର ଶିକାର ହୋଇ କେତେକ ନିରୀହ ଧର୍ମପ୍ରାଣ ଯାତ୍ରୀ ବହୁ କଷ୍ଟ ସ୍ୱୀକାର କରିଥାନ୍ତି । ଏପରି ଏକ କଟୁତିକ୍ତ ଘଟଣାର ଅବଲମ୍ବନରେ ଗଢ଼ି ଉଠିଛି "ଭଲେ ବିରାଜୋ ଜୀ" । କାଙ୍ଗାଳି ଓ ଚେମାଙ୍କ ଜୀବନଚର୍ଯ୍ୟା ଉଚ୍ଚକୋଟିର ହୋଇପାରିଛି । ନିଛକ ଓଡ଼ିଆର ମର୍ମବାଣୀ, ପ୍ରାଣର କଥା "ଯେପରି ଭଲେ ବିରାଜୋ ଜୀ" ।

ସାଂପ୍ରତିକ ନିର୍ବାଚନ ରାଜନୀତିର ଏକ ବ୍ୟଙ୍ଗ ରୂପ ପ୍ରଦାନ କରିଛନ୍ତି ଲେଖକ । ଆଜିର ଭୋଟ ରାଜନୀତି କିପରି ଜୀବନର ପ୍ରାଣପ୍ରାଚୁର୍ଯ୍ୟକୁ ବିନିଷ୍ଟ କରିବା ସଙ୍ଗେ ସଙ୍ଗେ ଜାତୀୟ ଚରିତ୍ରକୁ କଳଙ୍କିତ କରୁଛି, ତାହା ସେ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ଭାରତୀୟ ଗଣତନ୍ତ୍ରର ଚରମ ବିଫଳତାର ମୁଖ୍ୟ କାରଣ ହୋଲା ଦୁର୍ନୀତି ଓ ଭ୍ରଷ୍ଟାଚାର । ଅର୍ଥବଳ ଓ ବାହୁବଳ ଜାତୀୟ ଭାବଦର୍ଶକୁ ଓ ରାଜନୈତିକ ମୂଲ୍ୟବୋଧକୁ କବଳିତ କରିଦେଇଛି । ତାର ବାସ୍ତବରୂପ ଏହି ଉପନ୍ୟାସରେ ଉଦ୍ଘାଟିତ। ଜାତୀୟ ଚରିତ୍ରର, ରାଜନୈତିକ ଜୀବନପ୍ରବାହର ତ୍ରୁଟିବିଚ୍ୟୁତି ପ୍ରଦର୍ଶନ କରିବା ଓ ତାର ନିରାକରଣ କରିବା ତାଙ୍କ ସୃଷ୍ଟି ଆଭିମୁଖ୍ୟ ହୋଇଛି ।

ଚେମାଙ୍କୁ ମୁଖ୍ୟ ନାୟକ ଭାବରେ କେନ୍ଦ୍ରକରି ଉପନ୍ୟାସଟି ଗଢ଼ିଉଠିଥିଲେ ହେଁ, ଔପନ୍ୟାସିକଙ୍କ ମୁଖ୍ୟ ଉଦ୍ଦେଶ୍ୟ ହେଉଛି, ସାଂପ୍ରତିକ କାଳରେ ଲୋକଚରିତ୍ରକୁ ଅନୁଶୀଳନ କରିବା ଓ ଜାତୀୟ ଜୀବନକୁ ସୁସ୍ଥ ନିରାମୟ କରି ତୋଳିବା । ଆଦର୍ଶବାଦର ପ୍ରଚଣ୍ଡ ସ୍ରୋତରେ ବେଳେ ବେଳେ ବାସ୍ତବତା ନିଜର ସତ୍ତା ହରାଇ ବସିଥିବା ପରି ମନେହୁଏ । ପୁରୀ ଓ ପୁରୀ ନିକଟସ୍ଥ ଆଖ ପାଖ ଅଞ୍ଚଳର ଜନମାନସର ବିଶ୍ୱାସ ଓ ଜୀବନ ପ୍ରବାହ ହିଁ "ଭଲେ ବିରାଜୋ ଜୀ" ଉପନ୍ୟାସର କଥା ଓ କାହାଣୀ ।

ତାଙ୍କର 'ତିନିପିଢ଼ିର ହୋଟେଲ' ଉପନ୍ୟାସଟିର ପ୍ରକାଶକାଳ ୧ ୯ ୯ ୨ ମସିହା । ଲେଖକଙ୍କ ନିଜସ୍ୱ ଅଭିମତ ଅନୁସାରେ ଏହା ଏକ ଅଙ୍ଗେଲିଭା ବାସ୍ତବ ଘଟଣା ଉପରେ ଆଧାରିତ । ମନେହୁଏ, ଉପନ୍ୟାସର ନାୟକ କାଳିନ୍ଦୀ, ଦ୍ୱିତୀୟ ପିଢ଼ିର ନାୟକ ଭ୍ରମରା ଓ ତୃତୀୟ ପିଢିର ନାୟକ ରମେଶଙ୍କ ପରିବାର ସହିତ ଲେଖକଙ୍କର ପାରିବାରିକ ସଂପର୍କ ନିବିଡ଼ ଥିଲା। ଔପନ୍ୟାସିକଙ୍କ 'ମୋ ନନାଙ୍କ ଦେଶ' ଆତ୍ମଜୀବନୀମୂଳକ ଗ୍ରନ୍ଥରେ ପିତା ନୀଳକଣ୍ଠ ଦାସଙ୍କ ସଂପର୍କରେ ଉଲ୍ଲେଖ କରିଥିବା କେତୋଟି ତଥ୍ୟ ସହିତ ଏହି ଉପନ୍ୟାସର ଅନ୍ୟତମ ଚରିତ୍ର ସ୍ୱାଧୀନତା ସଂଗ୍ରାମୀ ନେତାଙ୍କ ଜମି ବିକ୍ରୀ ପ୍ରସଙ୍ଗ ଓ ମାଛଖିଆ ପ୍ରସଙ୍ଗଟି ସାମ୍ୟ ପରିଲକ୍ଷିତ ହୋଇଥାଏ ।

ଏହି ଉପନ୍ୟାସଟିର ମୁଖ୍ୟ ଉପଜୀବ୍ୟ ହେଉଛି, ପରାଧୀନ ଓଡ଼ିଶାରେ ଇଂରେଜ ଶାସକ ଦ୍ୱାରା ଶୋଷିତ ଦୁର୍ଗତ ଓଡ଼ିଆ ଜାତିର ଆଧୋଗତି ଓ ଚରମ ବିପର୍ଯ୍ୟୟର ଇତିବୃତ୍ତି। ଯେଉଁ ବୀର ଓଡ଼ିଆ ଦିନେ ଗଙ୍ଗାଠାରୁ ଗୋଦାବରୀଯାଏ ନିଜର ବୀରତ୍ୱ ଓ ସ୍ୱାଭିମାନ ନେଇ ଶାସନ କରିବାକୁ ସକ୍ଷମ ହୋଇଥିଲା, ସେହି ଓଡ଼ିଆ ପୁଅ କଲିକତାରେ ରୋଷେୟା ବ୍ରାହ୍ମଣ, ମାଳୀବୃତ୍ତି, କୁଲିଗିରି କରି ପେଟ ପୋଷିବାକୁ ବାଧ ହୋଇଥିଲା। ଗୋଟିଏ ଜାତିର ଚରମ ଅବକ୍ଷୟର କରୁଣ ଗାଥା ଏଥିରେ ଲିପିବଦ୍ଧ।

କେବଳ ସେତିକି ନୁହେଁ, ୧୯୪୭ ମସିହାର ସାଂପ୍ରଦାୟିକ ଦଙ୍ଗା ଭାରତୀୟ ଜନମାନସରେ ଯେଉଁ ଗଭୀର ଦାଗ ଆଙ୍କି ଦେଇଯାଇଛି, ତାହା ଆଜି ବି ସ୍ପଷ୍ଟ। ଇଂରେଜମାନଙ୍କ କୂଟନୀତି ସରଳ ବିଶ୍ୱାସୀ, ଧର୍ମପ୍ରବଣ ଭାରତୀୟମାନଙ୍କୁ ବିଭ୍ରାନ୍ତ କରିଥିଲା। ଧର୍ମର ସାରବତ୍ତା, ଆଧ୍ୟାତ୍ମିକତା, ଦାର୍ଶନିକ ବୈଶିଷ୍ଟ୍ୟ, ଜୀବନର ମହତ୍ ଲକ୍ଷ୍ୟକୁ ବିସ୍ମୃତ ହୋଇ ଭାରତୀୟମାନେ ଧର୍ମାନ୍ଧତାର ଶିକାର ହେଲେ। ଆପଣାର ଭାଇବନ୍ଧୁ, କୁଟୁମ୍ବ, ଆତ୍ମୀୟସ୍ୱଜନ ପରି ଚଳୁଥିବା ଭାରତୀୟମାନେ ଧର୍ମାନ୍ଧତାର ଶିକାର ହେଲେ। ଆପଣାର ଭାଇବନ୍ଧୁ, କୁଟୁମ୍ବ, ଆତ୍ମୀୟସ୍ୱଜନ ପରି ଚଳୁଥିବା ହିନ୍ଦୁ ମୁସଲମାନମାନେ ପରସ୍ପର ପ୍ରତିସ୍ପର୍ଦ୍ଧୀ ଭାବରେ ଲୁହ ଓ ଲହୁର କଳଙ୍କିତ ଇତିହାସ ସୃଷ୍ଟି କରିଦେଇଗଲେ। ସେଇ ବିଭୀଷିକାମୟ ଘଟଣାର ମାର୍ମିକ ଅବତାରଣା ଏହି ଉପନ୍ୟାସରେ ଉଦ୍‌ଘାଟିତ ଦେଶ ବିଭାଜନର ବହୁ କରୁଣ କାହାଣୀ ଓଡ଼ିଆ ବଙ୍ଗଳା ଉପନ୍ୟାସକୁ ଅଶ୍ରୁସଜଳ ଓ ସମୃଦ୍ଧ କରିଛି। 'ତିନି ପିଢ଼ିର ହୋଟେଲ'ରେ ଝିଅ ପରି ରହିଥିବା ସୁକେଶୀର ବିଭତ୍ସ ହତ୍ୟା ସେଇ ନାରକୀୟ ଲୀଳାର ଏକ ଝଲକମାତ୍ର। "ତାହାକୁ ଆଣି କାଳିନ୍ଦୀ ତନ୍ନ ତନ୍ନ କରି ଦେଖିଲେ। ସୁକେଶୀ ମସ୍ତକରେ ସେହିପରି କେଶ କରିଥିଲା, ତେଣୁ ତାହା ସୁକେଶୀର ଖପୁରୀର କିଛି ଅଂଶ, ସେଥିରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ। ଗୁଣ୍ଡାମାନେ ସୁକେଶୀକୁ ଆକ୍ରମଣ କଲାବେଳେ ହୁଏତ ବାକ୍ସଟିକୁ ଜାବୁଡ଼ି ଧରିଥିଲା। ଘାତକର ଛୁରୀକା ଘାତରେ ସେ ବାକ୍ସ ଓ ତା'ର ମୁଣ୍ଡ କ୍ଷତବିକ୍ଷତ ହେଲାବେଳେ ହୁଏତ ତା'ର ପ୍ରାଣବାୟୁ ଉଡ଼ିଯାଇଛି ବୋଲି ସେ ଅନୁମାନ କଲେ।"(ତିନିପିଢ଼ିର ହୋଟେଲ, ପୃ.-୬୨)

ଏକଦା ଅନ୍ୟାନ୍ୟ ସମସ୍ୟାମାନଙ୍କ ମଧ୍ୟରେ ଜାତୀୟ ଜୀବନରେ ନକ୍ସଲପନ୍ଥୀଙ୍କ ଦୌରାତ୍ମ୍ୟ ଏକ ବିରାଟ ସମସ୍ୟା ରୂପେ ମୁଣ୍ଡ ଟେକି ଉଠିଥିଲା। କଲିକତା ଓ ପଶ୍ଚିମ ବଙ୍ଗଳାର ଅନ୍ୟାନ୍ୟ ସହରରେ ଏହାର ଗଭୀର ପ୍ରଭାବ ଅନୁଭୂତ ହୋଇଥିଲା। ସାମାଜିକ ଜୀବନଧାରାକୁ ମଧ୍ୟ ଏହା ତ୍ରସ୍ତ କରି ରଖିଥିଲା। ଏପରି ଏକ ଜାତୀୟ ସମସ୍ୟାର ଚିତ୍ର ଏଥିରେ ଚିତ୍ରିତ। ଏମାନେ ନିଜକୁ ଦେଶପ୍ରେମୀ ଓ ଦରିଦ୍ରର ବନ୍ଧୁ ବୋଲି ବର୍ଣ୍ଣନା କରି ଧନୀ ବ୍ୟକ୍ତିମାନଙ୍କୁ ଲୁଣ୍ଠନ କରୁଥିଲେ। ସାମାଜିକ କଳଙ୍କ ବିରୁଦ୍ଧରେ ଦୃଢ଼ସ୍ୱର ଉତ୍ତୋଳନ

କରୁଥିଲେ । ଅସହାୟଙ୍କୁ ସାହାଯ୍ୟ କରୁଥିଲେ । ପ୍ରାଥମିକ ସ୍ତରରେ ଏହି ସଂଗ୍ରାମର ଆଭିମୁଖ୍ୟ ଏକ ମହତ୍ତର ଲକ୍ଷ୍ୟରେ ପ୍ରଭାବିତ ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ଏହା ଲୁଣ୍ଠନ, ଅତ୍ୟାଚାର, ଆତଙ୍କ ରୂପ ଧାରଣ କରିଥିଲା । ତା'ର ଚମତ୍କାର ଅଭିବ୍ୟକ୍ତି ଘଟିଛି ଏହି ଉପନ୍ୟାସରେ-ସେମାନଙ୍କ ଭିତରୁ ଜଣେ ପାଟିରୁ ରୁମାଲଟି ଅଳ୍ପ ଟିକିଏ ଟେକିନେଇ କହିଲେ, ମହାଶୟ ! ଆମକୁ ଦେଖି ଡରିବାର କିଛି କାରଣ ନାହିଁ । ଆମେ ଚୋର ଡକାୟତ ନୋହୁଁ । ଆମେ ଦେଶପ୍ରେମୀ ଓ ଦରିଦ୍ରମାନଙ୍କର ପ୍ରତିନିଧି । ଆପଣ ଏତେ ଗୁଡାଏ ଭାରି ଜିନିଷ ହାତରେ ଧରି ପାନ ଖାଇବା ପାଇଁ ଏଠାରେ ଏତେ ସମୟ ଠିଆହୋଇ ରହିଛନ୍ତି । ଆପଣଙ୍କୁ କଷ୍ଟ ହେଉଥିବ । ସେଗୁଡିକ ଆପଣ ଆମ ହାତକୁ ବଢ଼ାଇ ଦିଅନ୍ତୁ, ଆପଣ ପାନ ଖାଇସାରି ଏଠାରେ ହାଲୁକା ହାତରେ ଖୁସି ମନରେ ଚାଲି ଯାଆନ୍ତୁ । ....ଆପଣ ବୁଦ୍ଧିମାନ୍ ବୋଲି ମନେ ହେଉଥିଲେ । ଆପଣଙ୍କର ଦେଶର ଅବସ୍ଥା ଓ ଗରିବଙ୍କ ଅବସ୍ଥା ବୁଝିବାର କୌଣସି ଶକ୍ତି ନାହିଁ ବୋଲି ଜଣାପଡିଲା । ଆପଣ ଆଉ ବକ ବକ ନ କରି ଧନ୍ୟବାଦ ସହିତ ସେ ସବୁ ଆମକୁ ଦେଇଦିଅନ୍ତୁ, ନ ହେଲେ ଅକାରଣରେ ଆପଣ ବଡ ବିପଦର ସମ୍ମୁଖୀନ ହେବେ । ....ଯୌତୁକ ଦେବା ଏକ ଅପରାଧ ବୋଲି ଆଇନ୍‌ରେ ପାଶ୍ କରାଯାଇଛି, ଏହା କ'ଣ ଆପଣଙ୍କ ପରି ଜଣେ ଭଦ୍ରଲୋକଙ୍କୁ ଜଣାନାହିଁ? ଏ ସବୁ ଗୋଟିଏ ପରିବାରକୁ ନ ଦେଇ, ବହୁ ପରିବାରର କାମରେ ଲାଗିଲେ ଆପଣଙ୍କର ଓ ଦେଶର ମଙ୍ଗଳ ହେବ । ସେ ଏହା କହୁ କହୁ ଅନ୍ୟ ଦୁଇଜଣ ଭଦ୍ରଲୋକଙ୍କ ହାତରୁ ଜିନିଷତକ ଛଡାଇନେଲେ ।''

ଶେଷ ପିଢ଼ିର ଯୁବକ ରମେଶ ଉଚ୍ଚଶିକ୍ଷିତ ଥିଲେ । ଉଚ୍ଚଶିକ୍ଷା ପାଇଁ ବିଦେଶ ଯିବାପାଇଁ ବୃତ୍ତି ମଧ୍ୟ ପାଇଥିଲେ । ମାତ୍ର ଏସବୁ ପ୍ରଲୋଭନକୁ ତ୍ୟାଗ କରି ଗୋଟିଏ ପରିବାରର ଅନୁଷ୍ଠାନକୁ ରକ୍ଷା କରିବା ନିମନ୍ତେ ହୋଟେଲ ବ୍ୟବସାୟକୁ ଗ୍ରହଣକରିବା ପଛରେ ଯୁବପିଢ଼ିକୁ ସ୍ୱାବଲମ୍ବୀ ହେବାପାଇଁ ଲେଖକ ପରୋକ୍ଷ ଭାବରେ ପ୍ରୋତ୍ସାହିତ କରିଛନ୍ତି । ସ୍ୱାଧୀନ ଭାରତରେ ବୃଥାଭିମାନୀ ଶିକ୍ଷିତ ଯୁବକମାନେ ସରକାରୀ ଚାକିରି ପଛରେ ଗୋଡାଇ ସେମାନଙ୍କର ମୂଲ୍ୟବାନ ସମୟକୁ ନାନାଭାବରେ ନଷ୍ଟ କରୁଛନ୍ତି । ଯୁବପିଢ଼ିର ଏହି କର୍ମକୁଣ୍ଠ ମନୋଭାବ ପ୍ରଗତିର ଅନ୍ତରାୟ । ଏହାକୁ ଲକ୍ଷ୍ୟକରି ଲେଖକ ସ୍ୱପ୍ନପ୍ରବଣ ରମେଶ ପ୍ରାଣରେ ଚାକିରି ଅପେକ୍ଷା ସ୍ୱାଧୀନ ବ୍ୟବସାୟ ତାଙ୍କ ଆର୍ଶୀବାଦ ସେ ପାର୍କ ଷ୍ଟ୍ରିଟ୍‌ରେ ବଡ଼ ଆକାରରେ "କାଳିନ୍ଦୀ ରେଷ୍ଟୁରାଣ୍ଟ" ଓ ଭମରାନନ୍ଦ ହୋଟେଲ ଖୋଲୁଛନ୍ତି ଓ ସେ ସବୁର ଉଦ୍‌ଘାଟକ ଭାବରେ ଯୋଗଦେବା ପାଇଁ ତାଙ୍କୁ ସଙ୍ଗରେ ଘେନିଯିବାକୁ ଆସିଛନ୍ତି ବୋଲି ନମ୍ରଭାବରେ ପ୍ରକାଶ କଲେ ।

ଔପନ୍ୟାସିକ ଡକ୍ଟର ବିକ୍ରମ ଦାସଙ୍କ ସମସ୍ତ ଉପନ୍ୟାସର ଭାବକେନ୍ଦ୍ରଟି ହେଉଛି, ସ୍ୱଦେଶ ପ୍ରୀତି । ଉଗ୍ରଜାତୀୟତା ତାଙ୍କ ଲେଖନୀକୁ, ସୃଜନଶୀଳତାକୁ ଏକ ବଳିଷ୍ଠ

ଭାବଦ୍ୟୋତନାରେ ଅନୁପ୍ରାଣିତ କରିଛି । କେତେବେଳେ ଏହାର ଭାବପରିଧିଟି ଓଡ଼ିଶାର କେଉଁ ଅଖ୍ୟାତ ପୁରପଲ୍ଲୀରୁ ଆରମ୍ଭ ହୋଇ ସମଗ୍ର ଭାରତଭୂଇଁକୁ ସଂପ୍ରସାରିତ ହୋଇଛି ତ କେତେବେଳେ ଦୂର ବିଦେଶରୁ ସ୍ୱଦେଶକୁ କେନ୍ଦ୍ରାଭିମୁଖୀ ହୋଇଛି । ଜାତୀୟ ଜୀବନ ପ୍ରତି ତାଙ୍କ ସୃଷ୍ଟିରେ ବଳିଷ୍ଠ ଅଙ୍ଗୀକାର ପରିଲିକ୍ଷିତ ହେଇଥାଏ । ଉଦ୍ଦେଶ୍ୟମୂଳକ ଭାବରେ ଔପନ୍ୟାସିକ କିମ୍ବଦନ୍ତୀ, ଇତିହାସ, ଲୋକଗଳ୍ପ, ଲୋକବିଶ୍ୱାସକୁ ଆଧାର କରି ତାଙ୍କ ଉପନ୍ୟାସର ବିଷୟ ସଂଯୋଜନା କରିଛନ୍ତି । ତାଙ୍କ ସୃଜନଶୀଳତାର ମନୋଭୂମି ତେଣୁ ଏକାନ୍ତ ଭାବରେ ଜାତୀୟ ଅନୁରାଗ । ସ୍ୱାଧୀନ ଭାରତରେ ଗଣତନ୍ତ୍ରର ଆଶାନୁରୂପ ସଫଳତା ସମ୍ଭବ ହୋଇପାରି ନାହିଁ । ଅପର ପକ୍ଷରେ ଭୋକ୍ତାବାଦର ପ୍ରବଳ ପ୍ରବାହରେ ଆଧାତ୍ମିକତା ବିଶ୍ୱାସ, ପାରମ୍ପରିକ ମୂଲ୍ୟବୋଧ, ସାଂସ୍କୃତିକ ଚେତନା ନାନାଭାବରେ ଧ୍ୱସ୍ତବିଧ୍ୱସ୍ତ । ତେଣୁ ଜନମାନସର ଚେତନାର ଦିଗବଳୟଟି ଧୂମ୍ରାଭ ହୋଇଉଠିଛି । ଅଶାନ୍ତ ଓଅସ୍ପଷ୍ଟ ହୋଇଉଠିଛି ମଣିଷର ଭାବରାଜ୍ୟ । ବୃହତ୍ତର ଜୀବନର ଆବଶ୍ୟକତା ଗୌଣ ହୋଇଉଠିଛି । ମନୁଷ୍ୟ ଏକାନ୍ତ ଭାବରେ ହୋଇପଡ଼ିଛି ଆତ୍ମସୁଖାନ୍ୱେଷୀ ଏକ ପ୍ରାଣବିଶେଷ । ଏପରି ଏକ ପରିପ୍ରେକ୍ଷୀରେ ବୃହତ୍ତର ସାମାଜିକ ଜୀବନ ପାଇଁ ତାଙ୍କର ସମଗ୍ର ସୃଷ୍ଟିସ୍ୱର ଗଭୀର ଆଶାବାଦର ସ୍ୱାକ୍ଷର । ଚିକିତ୍ସା ବିଜ୍ଞାନରେ ଗଭୀର ପାରଦର୍ଶିତା ଅର୍ଜନ କରିଥିବା ଓ କର୍ମମୟ ଜୀବନରେ ନାନାଭାବରେ ବ୍ୟସ୍ତ ଥିବା ଡକ୍ଟର ବିକ୍ରମ ଦାସ ଜୀବନ ଓ ଜଗତକୁ ଅନ୍ତରଙ୍ଗ ଦୃଷ୍ଟିରେ ଅଧ୍ୟୟନ କରିବାରେ ଯେଉଁ ନିଷ୍ଠା ପ୍ରଦର୍ଶନ କରିଛନ୍ତି,ତାର ପଟାନ୍ତର ନାହିଁ ।

ସମ୍ବେଦନା ଓ ଅନୁକମ୍ପା ସୃଜନଶୀଳତାର ସର୍ବଶ୍ରେଷ୍ଠ ଉପାଦାନ । ଡକ୍ଟର ଦାସଙ୍କର ସମ୍ବେଦନଶୀଳ ହୃଦୟଟି ତାଙ୍କ ସୃଷ୍ଟିରେ ପ୍ରତ୍ୟେକ ପୃଷ୍ଠାରେ ଅଙ୍କିତ । ନିଜ ମା'କୁ ଓ ମାଟିର ଭଲ ପାଇବାର ଅତ୍ୟଧିକ ଭାବପ୍ରବଣତା ଓ କୋମଳ ପ୍ରବୃତ୍ତି ସମସ୍ତ ଉପନ୍ୟାସର ମୁଖ୍ୟ ପ୍ରାଣସ୍ପନ୍ଦନ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱାଧୀନୋତ୍ତର କାଳରେ ନୂଆ ଭାବରେ ଏଦେଶର ଅତୀତକୁ ଚିହ୍ନାଇବା ପାଇଁ ଔପନ୍ୟାସିକ ଡକ୍ଟର ବିକ୍ରମ ଦାସଙ୍କର ନିଷ୍ଠା ଓ ସାଧନା ବାସ୍ତବିକ୍ ପ୍ରଶଂସନୀୟ । ସାହିତ୍ୟ ଇତିହାସ କ୍ଷେତ୍ରରେ ଏହା ଏକ ନିର୍ଦ୍ଦିଷ୍ଟ ମର୍ଯ୍ୟାଦାର ଅଧିକାରୀ ଏହା କହିବା ବାହୁଲ୍ୟ ମାତ୍ର ।

ଜେତବନ, ଶ୍ରୀରାମନଗର,
ବାଦାମବାଡ଼ି, କଟକ

# ପ୍ରଫେସର ଡାକ୍ତର ବିକ୍ରମ ଦାସଙ୍କ ଐତିହାସିକ ଉପନ୍ୟାସ

## ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ

**ଡା**କ୍ତରୀ ଚିକିତ୍ସା ବୃତ୍ତିରେ ନିଷ୍ଠା ରଖିଥିବା ପ୍ରଫେସର ଡକ୍ଟର ବିକ୍ରମ ଦାସ ସାରସ୍ୱତ ସାଧନା ଦେଇ ନିଜ ସର୍ଜନଶୀଳ-ପ୍ରତିଭା-ପ୍ରବୃତ୍ତିର ଚରିତାର୍ଥତା ଲୋଡ଼ିଛନ୍ତି। ଭାବମୁକ୍ତି ପାଇଁ ସେ କଥାରୀତି ଓ ଉପନ୍ୟାସ କଳା- କଳେବରକୁ ସାଧନ ମାଧ୍ୟମଭାବେ ଗ୍ରହଣ କରିନେଇଛନ୍ତି। ତାଙ୍କ ରଚିତ 'ମୋ ନନାଙ୍କ ଦେଶ' (୧୯୮୩) ଭଳି ଜୀବନସ୍ମୃତି ବି ସଦାଶିବ ମିଶ୍ରଙ୍କ ଦ୍ୱାରା 'କାହାଣୀପରି, ଉପନ୍ୟାସ ପରି ଉପଭୋଗ୍ୟ' ହୋଇଛି। ଇତିପୂର୍ବରୁ ତାଙ୍କ ରଚିତ ଓ ପ୍ରକାଶିତ 'ମଣିମାଡିହ' (୧୯୮୧) ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କୁ ମନେ ହୋଇଛି; 'ସତେ କି ଓଡ଼ିଆ ଉପନ୍ୟାସର ଜନ୍ମଦାତା ବ୍ୟାସକବି ଫକୀରମୋହନଙ୍କର ଅପ୍ରକାଶିତ ଆଉ ଗୋଟିଏ ଉପନ୍ୟାସ ସେ ପଢୁଛନ୍ତି।' ଏପରିକି ଏହି ପୁସ୍ତକର ସମୀକ୍ଷା ପର୍ଯ୍ୟାୟରେ କବି ମନମୋହନ ମିଶ୍ର ଲେଖିଛନ୍ତି – "ସତ୍ୟବାଦୀ- ସାକ୍ଷୀଗୋପାଳ ଗଜପତି ବଂଶର ଗୋପାଳପ୍ରାଣ ଶେଷ ମଣିମାଙ୍କର ମର୍ମସ୍ପର୍ଶୀ କାହାଣୀ ଛଳରେ କୁଶଳୀ ଲେଖକ ଏଥିରେ ସେହି ବିଲୋପପ୍ରାୟ ସମାଜର ଓ ଜନ୍ମମାଟିର ସମବେଦନାମୟ ଚିତ୍ରର ସାବଲୀଳ ନିଖୁଣଚିତ୍ର ଆଙ୍କିଛନ୍ତି।" ଡାକ୍ତର ଦାସଙ୍କ 'ଅଲିଭା ଇତିହାସ' (୧୯୮୨) ଉପନ୍ୟାସର 'ମୁଖବନ୍ଧ'ରେ ବିପ୍ଳବୀ କବି ମନମୋହନ ମିଶ୍ର ସୂଚାଇଛନ୍ତି "ବିକ୍ରମ ଦାସଙ୍କ ବାଲ୍ୟକାଳ କୈଶୋର ଓ ପ୍ରଥମ ଯୌବନ ପ୍ରତ୍ୟକ୍ଷ ରାଜନୈତିକ ସଂଗ୍ରାମ ମଧ୍ୟରେ ହିଁ ଗଢ଼ି ଉଠିଥିଲା। ବାରମ୍ବାର ସେହି ସଂଗ୍ରାମର ନିଆଁର ଝାସ ତାଙ୍କ ଦେହରେ ଲାଗିଛି। ସେହି କାରଣରୁ 'ଅଲିଭା ଇତିହାସ' ଭଳି ଏକ କାହାଣୀ ଲିବିବଦ୍ଧ କରିବା ପାଇଁ ତାଙ୍କର ଆଗ୍ରହ, ବ୍ୟାକୁଳତା ଏହି ବହିଟିର ପୃଷ୍ଠା ଅନୁରଞ୍ଜିତ କରିଛି।" ୧୯୮୮ ମସିହାରେ ପ୍ରକାଶ ପାଇଛି ତାଙ୍କ ରଚିତ 'ନିର୍ବାସିତ ଗଜପତି' ପୁସ୍ତକ। ବହିଟିର 'ମୁଖବନ୍ଧ'ରେ ବିଶିଷ୍ଟ ପ୍ରତ୍ନତାତ୍ତ୍ୱିକ ଓ

ଐତିହାସିକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଦର୍ଶାଇଛନ୍ତି; "ପୃଥିବୀରେ ଏକ ସଭ୍ୟ ଶିକ୍ଷିତ, ଗଣତାନ୍ତ୍ରିକ ଓ ନୀତି ପରାୟଣ ବୋଲାଉଥିବା ବ୍ରିଟିଶ୍ ଜାତି ନିଜର ସ୍ୱାର୍ଥସିଦ୍ଧ ନିମନ୍ତେ କିପରି ଜଘନ୍ୟ ଉପାୟରେ ଭାରତର ଧର୍ମ ଓ ସ୍ୱାଧୀନତାପ୍ରେମୀଙ୍କ ବିରୁଦ୍ଧରେ ହୀନ-ରୋମାଞ୍ଚକର ଚକ୍ରାନ୍ତ କରିବାକୁ ପଛାଉନଥିଲେ ତାହା ଏହି "ନିର୍ବାସିତ ଗଜପତି" ପୁସ୍ତକରେ ବର୍ଣ୍ଣନା କରି ଶ୍ରଦ୍ଧେୟ ବିକ୍ରମ ଦାସ ଓଡ଼ିଶାର ଅତି ଦୁର୍ଦ୍ଦିନକାଳୀନ ଇତିହାସର ଏକ ବେଦନାମୟ ପୃଷ୍ଠା ଉନ୍ମୋଚନ କରିଅଛନ୍ତି। ++ ପୁସ୍ତକଟି ମୁଖ୍ୟତଃ ଐତିହାସିକ ଭିତ୍ତିରେ ଲେଖା ହୋଇଥିଲେ ମଧ୍ୟ ତାଙ୍କର ନିଜସ୍ୱ ଔପନ୍ୟାସିକ ଲେଖା ଚାତୁରୀରେ ଏହା ଏକ ଜୀବନ୍ତ ରୋମାଞ୍ଚକର ଡିଟେକ୍‌ଟିଭ୍ ଉପନ୍ୟାସର ରୂପ ନେଇଛି। ଏହାର ତଥ୍ୟ ଓ ବର୍ଣ୍ଣନା ଅତି ପ୍ରାଞ୍ଜଳ ଓ ହୃଦୟଗ୍ରାହୀ ହୋଇପାରିଛି।" ଏତଦ୍‌ଭିନ୍ନ ତାଙ୍କ ଜାତିପ୍ରାଣାବେଗ ଓ ଐତିହ୍ୟର ଆସ୍ପୃହା ସମ୍ଭାବନାମୟ ସ୍ୱତନ୍ତ୍ର କଳାଚାତୁରୀରେ ପ୍ରମୂର୍ତ୍ତ ହୋଇଉଠିଛି 'ବୁଦ୍ଧଖୋଲର ମାୟା' (୧୯୮୬), 'ସ୍ୱପ୍ନର ପାଞ୍ଚାଳୀ' (୧୯୮୬), 'ଭଲେ ବିରାଜୋଜୀ' (୧୯୮୬), 'ତିନିପିଡ଼ିର ହୋଟେଲ' (୧୯୯୨) ଉପନ୍ୟାସମାନଙ୍କରେ। କ'ଣ ପାଇଁ ସେ ଏତେଗୁଡ଼ାଏ ଉପନ୍ୟାସ ଲେଖିଛନ୍ତି ? ସବୁଥିରେ ପୁଣି ଜାତିର ଗୌରବଗାଥା କେମିତି ନା କେମିତି ବାଗରେ ଆସିଛି ? ପୁଣି ସେ ଲେଖାଲେଖିରେ ଦୁଇ ଆଙ୍ଗୁଠିର ଅନୁଭବକୁ ପରଖିଛନ୍ତି ଭାରତବର୍ଷ ସ୍ୱାଧୀନତା ପାଇବାର ପଇଁତିରିଶି ବର୍ଷ ଉତ୍ତାରେ। ସ୍ୱାଧୀନତା ପାଇଁ ଯେଉଁ ରାଜନୈତିକ ସଂଗ୍ରାମ ଆରମ୍ଭ ହୋଇଥିଲା ଯୌବନକାଳରେ ତହିଁର ନିଆଁଝାସକୁ ସେ ଅନୁଭବି ଥିଲେ। ହୁଏତ ସେଦିନର ଭାବନା ଓ ସ୍ୱପ୍ନର ଅଚରିତାର୍ଥତାକୁ ସେ ଭେଟିଛନ୍ତି ସ୍ୱାଧୀନ ରାଷ୍ଟ୍ରରେ। ହୋଇପାରେ ସେଇଥିପାଇଁ ସେ ନିଜର ଭୋଗନୀୟ ଇଚ୍ଛାକୁ ସୁଖପାଠ୍ୟ ଇତିହାସ ରଚନାଦେଇ ପ୍ରକାଶ କରିବାକୁ ଉପଯୁକ୍ତ ମନେ କରିଛନ୍ତି। ସ୍ମୃତିରେ ସଞ୍ଚିତ ଥିବା, କିଛି ଶୁଣା ତଥା ଅଙ୍ଗେନିଭା ରାଜନୈତିକ ସଂଗ୍ରାମ କାହାଣୀକୁ ପାଠକକୁ ସ୍ୱର୍ଣ୍ଣ କଳାଭଳି ଭଙ୍ଗୀ ଓ ଭାଷାରେ ଉପସ୍ଥାପନ କରିଅଛନ୍ତି। ଔପନ୍ୟାସିକ ଡକ୍ଟର ଦାସ ଏକ ରାଜନୈତିକ ସଂଗ୍ରାମୀ ପରିବାରରେ ଜନ୍ମିଥିଲେ। ଜାତୀୟତାବାଦୀ ଭାବବୋଧରେ ତାଙ୍କ ଯୌବନ-ସ୍ୱପ୍ନ ଅନୁଷିକ୍ତ ହୋଇଥିବା ସ୍ୱାଭାବିକ। ସେବେଳର ଘଟଣାକୁ ପରକାଳର କ୍ରିୟା ସହିତ ସମନ୍ୱିତ କରି ସେକାଳର ସଂଗ୍ରାମୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଠାଏ ଲେଖିଛନ୍ତି- "ଗାନ୍ଧିଜୀ ୧୯୩୩ ମସିହାରେ ସତ୍ୟାଗ୍ରହ ଆନ୍ଦୋଳନ ବନ୍ଦ କରିଦେଲେ। ସେ ବର୍ଷକ ଲାଗି ହରିଜନ ଉଦ୍ଧାର କାର୍ଯ୍ୟରେ ଲାଗିଲେ। ଓଡ଼ିଶାରେ ମଧ୍ୟ ସେ ପଦଯାତ୍ରା ଆରମ୍ଭ କରିଥିଲେ। ସେହି ସମୟରେ ଭଦ୍ରକର ଜଣେ ଓଡ଼ିଆ ଏସ୍.ଡି.ଓ. 'ସଚ୍ଚା ଯୋହୁକୁମ'ର ପରିଚୟ ଦେବାକୁ ଗାନ୍ଧିଜୀଙ୍କ ଉପରେ ୧୪୪ ଧାରା କରିଥିଲେ। ଓଡ଼ିଶା ଛଡ଼ା ଅନ୍ୟ

କୌଣସିଠାରେ ଗାନ୍ଧିଜୀଙ୍କ ପ୍ରତି କେହି ଅସୌଜନ୍ୟ ବ୍ୟବହାର ପ୍ରଦର୍ଶନ କରି ନଥିଲେ। ମାତ୍ର ଓଡ଼ିଶାରେ ଏହା ଘଟିଲା। ସବୁଠାରୁ ଦୁଃଖ ଦାୟକ କଥା ହେଉଛି, ୧୯୩୬ ମସିହାରେ ଯେତେବେଳେ ଶ୍ରୀ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଓଡ଼ିଶାରେ ପ୍ରଥମେ କଂଗ୍ରେସ ମନ୍ତ୍ରୀମଣ୍ଡଳ ସ୍ଥାପିତ ହେଲା, ସେହି ଅଫିସର ଜଣଙ୍କୁ ଶାସ୍ତିଦେବା ପରିବର୍ତ୍ତେ ଜିଲ୍ଲା ମାଜିଷ୍ଟ୍ରେଟ୍ ପଦକୁ ଉନ୍ନୀତ କରାଗଲା। ନିମକ ହାରାମିର ପୁରସ୍କାର ମିଳିଲା - ପୁଣି ଜଣେ ଜାତୀୟତାବାଦୀଙ୍କଠାରୁ (ଅଗଷ୍ଟ ବିପ୍ଲବ (୧୯୭୨) -ପୃ.୧୧)। ଦେଶ ସ୍ୱାଧୀନ ହୋଇଛି। ତା'ପରେ ଯେଉଁମାନେ ଘର ଓ ପରିବାରକୁ ପଛରେ ପକେଇ ତହିଁକି ଉହୁଁକି ଯାଇଥିଲେ କ'ଣ ହୋଇଛି ସେମାନଙ୍କ ଅବସ୍ଥା ? ସେମାନଙ୍କ ଉତ୍ତରାଧିକାରୀ ଏ କିପରି ଅଛନ୍ତି - କିଏ ବା ହୋଇଛି ବା ଖୋଜିଛି ସେମାନଙ୍କୁ ? ଏଭଳି ଘଟଣାସବୁ କମ୍ ବ୍ୟଥିତ କରି ନଥିବ ଡାକ୍ତର ଦାସଙ୍କୁ। ସାହିତ୍ୟ ରଚନା ବ୍ୟତୀତ ଏଭଳି ମର୍ମାନ୍ତିକ ଯନ୍ତ୍ରଣାରୁ ସାମୟିକଭାବେ ଆଶ୍ୱସ୍ତ ହେବାରେ ଅନ୍ୟ କ'ଣ କରିପାରିଥାନ୍ତେ ସିଏ ? ତେଣୁ ସେ ଲେଖିଚାଲିଛନ୍ତି କଥା ପରେ କଥା। ଘଟଣାଗୁଡ଼ିକୁ ସଠିକ୍ ତାରିଖ ମସିହା ସହ ସେ ଅନର୍ଗଳଭାବେ ବର୍ଣ୍ଣନା କରିପାରିଛନ୍ତି। କାହାରି କାହାରି ଜୀବନର ବାସ୍ତବ ଘଟଣା ଜରିଆରେ ନିଜ ମନୋଦଶାକୁ ନ କହି- କହିପାରିବାର ଛଟାରେ ଅଭିବ୍ୟକ୍ତ କରିବାର କଳାକୃତି ହୋଇଯାଇଛି ତାଙ୍କ ରଚିତ ଉପନ୍ୟାସଗୁଡ଼ିକର ବିଶେଷତ୍ୱ। 'ଅଲିଭା ଇତିହାସ'ରେ ହାଟସାହି ବାସିନ୍ଦା ନାମଜାଦା ମାମଲତକାର ପଦ୍ମନାଭ ସେନାପତିକୁ ଭେଟିଲେ ଔପନ୍ୟାସିକ ଭିତ୍ତିରେ ମନଟିକୁ ଠଉରେଇ ହୁଏ। ଗାଁ ଲୋକଙ୍କ ପାଖରେ ପଦନବାବୁ ରୂପେ ସମ୍ବୋଧିତ ଚରିତ୍ରଟି ଅର୍ଦ୍ଧଶିକ୍ଷିତ। ଇଂରାଜୀ ଭାଷା ପ୍ରୟୋଗରେ ହାକିମ ହୁକୁମାଙ୍କ ସଙ୍ଗରେ ମିଶି ପାରୁଥିବାରୁ ସମସ୍ତେ ତାଙ୍କୁ ଡରନ୍ତି। ସେଠିକା ଜମିଦାର ମଧ ପଦନବାବୁଙ୍କ ସାହାଯ୍ୟରେ ଇଂରେଜୀ ଶିଖିବାକୁ ଯାଇ ଯାହା ତ ଶିଖିଲେ ତାହା ନ କହିବା ଭଲ; ବରଂ ପଦନବାବୁଙ୍କ ପତିଆରାକୁ ବଢ଼ାଇଦେଲେ। ତାଙ୍କୁ ଗର୍ଭିଣୀ ଗାଈ ଦେଖିଲେ ବାଟ ଛାଡ଼େ ବୋଲି ପ୍ରଚାର ହୁଏ। ଅପରପକ୍ଷେ ଅବଧାନ ଭିକାରୀ ଚରଣ ମହାନ୍ତିଙ୍କ କଥା ସ୍ମରଣ କରାଯାଉ। ଗାନ୍ଧି ମହାତ୍ମାଙ୍କ ଆଦର୍ଶ ପ୍ରତି ସେ ଥିଲେ ଅନୁରକ୍ତ। ଗୋପବନ୍ଧୁ, ନୀଳକଣ୍ଠ, ପ୍ରଚାରକ ଅନନ୍ତ ମିଶ୍ରଙ୍କ ସହ କାମ କରି ଦେଶ ଏବଂ ଜାତି ପାଇଁ ଇଂରେଜଙ୍କଠାରୁ ସେ ଜେଲ୍‌ଦଣ୍ଡ ଭୋଗିଛନ୍ତି। ତାଙ୍କୁ ସ୍ୱାଧୀନତା ପରେ ଯେଭଳି ପୁରସ୍କାର ମିଳିଛି ତାହା କେତେ ଯନ୍ତ୍ରଣାଦାୟକ କଳନା କରିହେବ ନାହିଁ। ସ୍ୱାଧୀନ ଭାରତରେ ନିର୍ବାଚନ ଲଢ଼ିବାକୁ ତାଙ୍କୁ ଟିକେଟ ମିଳିଲାନି। ଅଥଚ ଟିକେଟ ପାଇଲେ ସେଠିକାର ଜମିଦାର। ସେତେବେଳକୁ ଜମିଦାରେ ଖଦଡ଼ିଆ ସାଜିଲେଣି। ଭୋଗ ଭିତରେ ଟାଉଟରିକୁ ସର୍ବସ୍ୱ କରି ବଞ୍ଚିରହିଥିବା ପଦନବାବୁ ଓରଫ ପଦ୍ମନାଭ ସେନାପତି

ନିଜ ଛତା ଦେଖାଇବା ଦିଗ ବି ବଦଳାଇ ସାରିଲେଣି । ଖଦଡ଼ ପୋଷାକକୁ ସଂଗ୍ରାମୀ କର୍ମୀର ଆଦତ୍ ବାଢ଼ିବାରେ ବେଶ୍ ଅଭିନେତା ବନିଗଲେଣି ସେ । ଏଇଠି ସ୍ୱାଧୀନତା ପ୍ରାକ୍-କାଳର ସଂଗ୍ରାମୀ ବ୍ୟକ୍ତିତ୍ୱ ଓ ସ୍ୱାଧୀନତା ପରେ ଲୋକ ପ୍ରତିନିଧିତ୍ୱ ଗ୍ରହଣ କରିବା ନିମିତ୍ତ ଆଗେଇ ଆସିଥିବା ଉପଭୋଗ-ଲୁବ୍ଧ ଛଦ୍ମବେଶୀ ରାବଣ ସନ୍ୟାସୀମାନେ ବାରିହୋଇ ପଡ଼ିଛନ୍ତି । ଏଭଳି ପରିବେଶ ଜଣେ ଜାତୀୟତାବାଦୀ ପରିବେଶ ମଧ୍ୟରେ ବଢ଼ିଥିବା ଲେଖକ ପ୍ରାଣରେ କିଭଳି ଦ୍ୱନ୍ଦ୍ୱ ସୃଷ୍ଟି କରିଥିବ ତାହା ଅନୁମେୟ । ଔପନ୍ୟାସିକ ଡକ୍ଟର ଦାସ ସ୍ପଷ୍ଟଭାବେ ଲେଖିଛନ୍ତି; ଦଶପଲାମେଳିର ନାୟକ ଗୋବିନ୍ଦ ମିଶ୍ର ନିର୍ବାଚନ ଲଢ଼ିବାକୁ ଟିକେଟ ପାଇଲେ ନାହିଁ; ପାଇଲେ କିନ୍ତୁ ଦଶପଲ୍ଲାର ରାଜା । ଗାନ୍ଧିବାଦୀ ଭିକାରୀ ମହାନ୍ତିଙ୍କ ପୁଅ ନବ ହୋଇଗଲେ ସନ୍ତ୍ରାସବାଦୀ; ପରେ ଅବଶ୍ୟ ଆଜାଦ୍ ହିନ୍ଦ୍ ଫୌଜର ଲଢୁଆ ସୈନିକ । ଏଭଳି ବିରୋଧାଭାସକୁ ସୂଚେଇବା ପାଇଁ ଔପନ୍ୟାସିକ ସେଦିନର ଘଟଣାସବୁକୁ ଇତିହାସ ପରମ୍ପରାରେ ତାରିଖ ମସିହା ସହ ଲିପିବଦ୍ଧ ହୋଇଅଛନ୍ତି । ଯା'ର ଅର୍ଥ ନୁହେଁ, ସେ ଇତିହାସର ପୁନଃକଥନ କରିଅଛନ୍ତି ଅଥବା କଳ୍ପନାରାଗ ରଞ୍ଜିତ ସୁଖପାଠ୍ୟ ଇତିହାସ ସୃଷ୍ଟି କରିଛନ୍ତି । E.M. Fosterଙ୍କ Aspects of the Novelରୁ ପ୍ରସଙ୍ଗୋଚିତ ଅଭିବ୍ୟକ୍ତି ସ୍ମରଣ କରିହୁଏ - A memoir is history, it is based on evidence. A novel is based on evidence + or - x, the unknown quantity being the temperament of the novelist, and the unknown quality always modifies the effects of the evidence and sometimes transforms it entirely. ଘଟଣାସବୁର ବର୍ଣ୍ଣନା ଦୃଷ୍ଟିରୁ ଜୀବନୀ ବି ଇତିହାସ । ଉପନ୍ୟାସ ମଧ୍ୟ ଘଟଣାବଳୀ ଉପରେ ପ୍ରତିଷ୍ଠିତ । ହେଲେ, ତହିଁରେ ଔପନ୍ୟାସିକର ମିଜାଜ ନିଦାନ କିଛି ଯୁକ୍ତ ହୋଇଥିବ ଅଥବା ତହିଁରୁ କିଛି ବାଦ୍ ହୋଇଥିବ । ଏହି ଅଜ୍ଞାତ ସଂଖ୍ୟା ଅର୍ଥାତ୍ ଔପନ୍ୟାସିକଙ୍କ ସ୍ୱଭାବ ବା ମିଜାଜ୍‌ର ପ୍ରଭାବ ଘଟଣାବଳୀର ପ୍ରଭାବକୁ ପରିବର୍ତ୍ତନ ଅଥବା ରୂପାନ୍ତରିତ ବି କରିଦେଇପାରିବ । 'ଅଲିଭା ଇତିହାସ' ଉପନ୍ୟାସରେ ସତ୍ୟମୂଳକ ଘଟଣା ଓ ତଥ୍ୟ ବାସ୍ତବ ଚରିତ୍ରଙ୍କ ନାମୋଚ୍ଚାରଣ ଦେଇ ଆତ୍ମପ୍ରକାଶ କରିଛି । ହେଲେ; ଔପନ୍ୟାସିକଙ୍କ ଆତ୍ମପ୍ରକାଶରୁ ତାଙ୍କ ଭାବଗତ ପ୍ରତିକ୍ରିୟାକୁ ଜାଣି ହୋଇଛି । ଅଥଚ ନିର୍ବାସନ ଦଣ୍ଡ ପାଇଥିବା ଗଜପତି ଠାକୁରରାଜା ଦିବ୍ୟସିଂହଦେବଙ୍କ ଉଦ୍ଦେଶ୍ୟରେ ରଚିତ ଲୋକଗୀତିକା, ଜାତୀୟତା ସଂଗ୍ରାମରେ ଉତ୍ସାହ ଦେବା ପାଇଁ ରଚିତ ବୀରକିଶୋର ଦାସଙ୍କ ସଙ୍ଗୀତ, ନେତାଜୀ ସୁଭାଷ ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜର ମାର୍ଚ୍ଚିଂ ଗୀତାଦିର ଉଦ୍ଧୃତିରୁ ଡକ୍ଟର ଦାସଙ୍କ ମାନସିକତାକୁ ବୁଝିହୁଏ । ଉପନ୍ୟାସ ସମ୍ପର୍କରେ ଉପନ୍ୟାସ ଛଡ଼ା

ଆଉ ବୋଧେ କେହି ଅଧିକ କିଛି କରିପାରିବେ ନାହିଁ। The only thing which can tell us about the novel is the novel. ( Edwin Muir- The Structure of the Novel)

-୨-

ଅନେକେ ଭାବନ୍ତି ଇତିହାସର କଥାବସ୍ତୁକୁ କାଳ୍ପନିକ ଭାବରେ ଗଦ୍ୟଭାଷାରେ ବର୍ଣ୍ଣନା କରିଦେଲେ ତାହା ଐତିହାସିକ ଗଳ୍ପ ଅଥବା ଐତିହାସିକ ଉପନ୍ୟାସ ହୋଇଯାଏ। କିନ୍ତୁ ଏଭଳି ଅଭିମତ ସର୍ବାଂଶରେ ଠିକ୍ ନୁହେଁ। କାହିଁକି ନା "ଉପନ୍ୟାସ ଇତିହାସ ନୁହେଁ। ଐତିହାସିକ ଉପନ୍ୟାସରେ ମଧ୍ୟ ଉପନ୍ୟାସ ଓ ଇତିହାସର ମିଳନ ଘଟେ ନାହିଁ।" (ଐତିହାସିକ ଉପନ୍ୟାସ- ଦାଶରଥି ଦାସ) ଯେହେତୁ ଇତିହାସକୁ ଅତୀତ ଭାବେ ଗ୍ରହଣ କରିବାର ଏକ ପାରମ୍ପରିକ ଧାରା ଚଳି ଆସିଛି; ତହିଁରେ ବର୍ତ୍ତମାନର ସଙ୍କେତ ଓ ଭବିଷ୍ୟତର ଇଙ୍ଗିତ କିଭଳି ନିହିତ ସେ ଘେନି କେହି ମୁଣ୍ଡ ଖେଳାନ୍ତି ନାହିଁ। ଐତିହାସିକ ଉପନ୍ୟାସରେ ଇତିହାସର ଅତୀତତା ସାମ୍ପ୍ରତିକ ଉପଯୋଗିତା ଦୃଷ୍ଟିରୁ ଭବିଷ୍ୟତ ପ୍ରତି ନୀରବ ବାକ୍‌ରେ ବହୁକିଛି ଶୁଣାଉଥିବାର କଳାତ୍ମକ ଚାତୁରି ଦେଇ ଫୁଟେ। ଜଣେ ଆଲୋଚକ କହିଛନ୍ତି; ଧରନ୍ତୁ ଉପନ୍ୟାସ ହେଉଛି ଏକ ଦର୍ପଣ। ଏଥିରେ ପ୍ରତିବିମ୍ବିତ ହେବ ଇତିହାସ। ଇତିହାସକୁ ପ୍ରତିବିମ୍ବିତ କରିଦେଲେ କ'ଣ ଉପନ୍ୟାସ-ଦର୍ପଣର ଗୁରୁତ୍ୱ ବଢ଼ିଯିବ। ଆଦୌ ନୁହେଁ। ବରଂ ଦର୍ପଣର ପଛରେ Quick-Silverକୁ ଠିକ୍‌ଭାବେ ବୋଳିପାରିଲେ ଦର୍ପଣର ସମ୍ବେଦନଶୀଳତା ବଢ଼ିବ। ତେଣୁ ଐତିହାସିକ ଉପନ୍ୟାସରେ ବସ୍ତୁବର୍ଣ୍ଣନାର ଲେଖକୀୟ ସାମର୍ଥ୍ୟ ହେଉଛି ବଡ଼ କଥା। ଯଦିଓ ଉପନ୍ୟାସକୁ କେହି କେହି ଆଲୋଚକ ବ୍ୟକ୍ତି ଜୀବନର ତାରିଖ ମସିହା ମସିହା ଶୂନ୍ୟ ଇତିହାସ, ଆଉ କେହି fictitious history ଅର୍ଥାତ୍ କାଳ୍ପନିକ ଇତିହାସ କହିଅଛନ୍ତି; ତେବେ ଐତିହାସିକ ଉପନ୍ୟାସଟି ସଂରଚନା ରୀତି ଏବଂ ଆବେଦନ ଧର୍ମଦୃଷ୍ଟିରୁ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ। ଅବଶ୍ୟ ଜର୍ମାନର ରୋମାଣ୍ଟିକକରଣ ଐତିହାସିକ ଉପନ୍ୟାସରେ ଇତିହାସକୁ ଅବିକୃତ ରଖିବା ପାଇଁ ତାଗିଦ୍ କରନ୍ତି।

'ନିର୍ବାସିତ ଗଜପତି' ଉପନ୍ୟାସରେ ଇତିହାସ କେଉଁଟା ? ତତ୍‌କାଳୀନ ବ୍ରିଟିଶ୍ ଓଡ଼ିଶାରେ ଉପଲବ୍ଧ ଇଂରେଜମାନଙ୍କ ଦସ୍ତାବିଜ, କେସ୍ ରେକର୍ଡ଼ ସମ୍ବାଦପତ୍ରଦେଇ ପ୍ରକାଶ ପାଉଥିବା ସମ୍ବାଦ ବା ଲୋକେ ନ କହିପାରିଲେ ବି ବିଶ୍ୱାସ କରୁଥିବା ଅନ୍ୟ କିଛି ଉପାଦାନ; ଯାହା ସେକାଳ ପତ୍ରପତ୍ରିକାରେ କବିତା ଅଥବା ସମ୍ବାଦ ଦେଇ ପ୍ରକାଶ ପାଇଛି ? ସରକାରୀ କାଗଜପତ୍ର ଅନୁଯାୟୀ ଦିବ୍ୟସିଂହ ଦେବ (୧୮୬୩-୧୮୭୮) ବଡ଼ଖେମୁଣ୍ଡି

ରାଜ୍ୟରୁ ଗଜପତି ବୀରକେଶରୀ ଦେବଙ୍କୁ (୧୮୫୫-୫୯) ପୋଷ୍ୟପୁତ୍ର ରୂପେ ଆଣନ୍ତି। ପୁରୀ ଗଜପତି ବଂଶର ସିଂହାସନ ପାଆନ୍ତି ୧୮୬୩ରେ। ୧୮୭୭ରେ ମହାରାଜା ପଦବୀ ପା'ନ୍ତି। ୨୩-୨-୧୮୭୮ ତାରିଖରେ ଜଣେ ବୈଷ୍ଣବଙ୍କୁ ମାରିଦେଇଥିବା ଅଭିଯୋଗରେ ସେ ଗିରଫ ହୋଇ ହାଜତକୁ ଯାଆନ୍ତି। ନ୍ୟାୟାଳୟର ବିଚାରମତେ ସେ ନିର୍ବାସନ ଦଣ୍ଡରେ ଦଣ୍ଡିତ ହୋଇ କଳାପାଣି ଶାସ୍ତି ଅର୍ଥାତ୍ ଆଣ୍ଡାମାନ ନିକୋବରରେ ରହନ୍ତି। ଯକ୍ଷ୍ମାରୋଗରେ ତାଙ୍କର ୨୫-୮-୧୮୮୭ ତାରିଖରେ ମୃତ୍ୟୁ ଘଟିଥିବା ସମ୍ବାଦ ପ୍ରଚାରିତ ହୁଏ। କିନ୍ତୁ ବିକ୍ରମଦାସ ଦିବ୍ୟସିଂହ ଦେବଙ୍କୁ ଲୋକ ବିଶ୍ୱାସମତେ ଓଡ଼ିଶା ଅଣାଇଛନ୍ତି। ସେ ରଥଯାତ୍ରା ଦେଖିଛନ୍ତି। ରାଜମାତା ସୂର୍ଯ୍ୟମଣି ପାଟମହାଦେବୀଙ୍କ ସହିତ ସାକ୍ଷାତକରି ସନ୍ନ୍ୟାସୀବେଶୀ ଦିବ୍ୟସିଂହ ଅନ୍ତର୍ଦ୍ଧାନ ହେବା ସହିତ ଉପନ୍ୟାସଟି ଶେଷ ପର୍ଯ୍ୟାୟରେ ଉପନୀତ ହୋଇଛି। ଏଥିରେ ଏଭଳି ପରିଣତିକୁ "ଯାହା ଇତିହାସ ହୋଇ ବି ଇତିହାସ ନୁହେଁ, ଇତିହାସ ନ ହୋଇ ବି ଇତିହାସ। ତାହା କଳ୍ପନା ସହିତ ସ୍ୱଚ୍ଛନ୍ଦରେ ବାସ କରେ। ସଂଗୋପନରେ ନିଜ ଭିତରେ ଇତିହାସର ଧର୍ମକୁ ବି ରକ୍ଷା କରିପାରେ। ଯାହା ଠିକ୍ ଇତିହାସ ନୁହେଁ, ଏରିଷ୍ଟଟଲଙ୍କ ଭାଷାରେ କହିଲେସମ୍ଭବପର ଇତିହାସ ବା କଳ୍ପନାତ୍ମକ ଇତିହାସ। ଇତିହାସ ଉପରେ ଉପନ୍ୟାସ ଶ୍ରେଷ୍ଠତ୍ୱ ଏଇଠି। ତଥ୍ୟର ବନ୍ଧନରୁ ତାହା ସମ୍ପୂର୍ଣ୍ଣ ମୁକ୍ତ ଓ ସ୍ୱାଧୀନ। ସାହିତ୍ୟ କ'ଣ ତଥ୍ୟ ଚାହେଁ? ସାହିତ୍ୟ ମଣିଷକୁ ଚାହେଁ। ତେଣୁ ଐତିହାସିକ ପରିବେଶ ସୃଷ୍ଟି ଓ ଚରିତ୍ରଚିତ୍ରଣ ତଥା ଗାର୍ହସ୍ଥ୍ୟ ଜୀବନର ତଥ୍ୟ ବନ୍ଧନମୁକ୍ତ ଅଥଚ ଭାବସତ୍ୟ ନିୟମିତ ରସସିକ୍ତ ଓ ମାନବିକ ଆବେଦନ ସମୃଦ୍ଧ ସଂଯୋଜକ ଘଟଣାବଳୀର ସୁସ୍ଥ ବ୍ୟବସ୍ଥିତ ବିନ୍ୟାସ ଓ ସମନ୍ୱୟରେ ହିଁ ଐତିହାସିକ ଉପନ୍ୟାସର ସାର୍ଥକତା।" (ଐତିହାସିକ ଉପନ୍ୟାସ - ଦାଶରଥି ଦାସ) ଅବଶ୍ୟ 'ନିର୍ବାସିତ ଗଜପତି' ଭଳି ଇତିହାସ ପ୍ରସଙ୍ଗକୁ ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ଐତିହାସିକ ଉପନ୍ୟାସ କଳାରେ ପ୍ରକାଶ କଲେ ତାହା ସେକାଳ ଭଳି ମାନବିକ ସମବେଦନା ସୃଷ୍ଟି କରିପାରିବନାହିଁ ବୋଲି ଐତିହାସିକ ଓ ସାହିତ୍ୟ ସମାଲୋଚକ ଡକ୍ଟର କୈଳାସ ଚନ୍ଦ୍ର ଦାସ ଦର୍ଶାଇଛନ୍ତି (ଇସ୍ତାହାର -୬୧, ମାର୍ଚ୍ଚ-୧୯୯୪)। କିନ୍ତୁ ଐତିହାସିକ ଉପନ୍ୟାସ ହେବାରେ 'ନିର୍ବାସିତ ଗଜପତି'; ବିଷୟବସ୍ତୁର ଅଭିବ୍ୟକ୍ତି, ଚରିତ୍ର ସମାବେଶ ଓ ଘଟଣାବିନ୍ୟାସ ଦୃଷ୍ଟିରୁ ସାର୍ଥକ ହୋଇଛି କହିବା ଅଯୌକ୍ତିକ ନୁହେଁ।

'ମଣିମା ଡିହ' ଉପନ୍ୟାସରେ ଲେଖକଙ୍କ ଲକ୍ଷ୍ୟ ପାଠକଙ୍କ ପ୍ରାଣରେ ସମବେଦନା ସୃଷ୍ଟି। ସାଧନ ଉପକରଣ ହେଉଛି ଇତିହାସ ଓ କିମ୍ବଦନ୍ତୀ। କାଳଗତ ସାମ୍ୟ ରହିଛି। ଅତୀତର ସାମନ୍ତେ ଅଛନ୍ତି, ପାଖେ ପାଖେ ଅଛନ୍ତି କୁଚକ୍ରୀ ବତୀପେଲା ପଦମୁକ୍ତାର। ଆଉ ବର୍ତ୍ତମାନର ସଙ୍କେତ ତ ପଦମୁକ୍ତାରର ପୁତ୍ର ପୀତବାସ ଦେଇ ଫିଟିପଡ଼ିଛି। ପାପଗ୍ରସ୍ତ

ମନର ଅନନ୍ତ ଧର୍ମପିପାସା ନୀଳମଣି ଚରିତ୍ର ନେଇ ଭବିଷ୍ୟତକୁ ଇଙ୍ଗିତ କରିଛି । କୁହାଯାଏ; ଐତିହାସିକ ଉପନ୍ୟାସରେ ଅଖଣ୍ଡ ଇତିହାସକୁ ଖୋଜିବା ବିଡ଼ମ୍ବନାର କଥା । ଐତିହାସିକ ଭ୍ରମ ତ ଲେଖକକୁ ସୌନ୍ଦର୍ଯ୍ୟମୟୀ ସାହିତ୍ୟ ସୃଷ୍ଟିରେ ସହାୟକ ହୁଏ ।

କେହି କେହି ଉପନ୍ୟାସକୁ ତାରିଖ, ମସିହାହୀନ ବ୍ୟକ୍ତିଜୀବନର ସାମାଜିକ ଇତିହାସ ଭାବେ ଦର୍ଶାଇଥିବାରୁ ଫକୀରମୋହନ ସେନାପତିଙ୍କ ଚାରୋଟିଯାକ ଉପନ୍ୟାସକୁ ସମାଲୋଚକ ନଟବର ସାମନ୍ତରାୟ ଦୀର୍ଘ ୨୦୦ ବର୍ଷର ଇତିହାସ ବୋଲି ପ୍ରମାଣିତ କରିଥିଲେ । ହେଲେ 'ଲଛମା'କୁ ବାଦ୍‌ଦେଇ ଅନ୍ୟ ତିନୋଟି ଉପନ୍ୟାସକୁ କେହିକେବେ ଐତିହାସିକ ଉପନ୍ୟାସ କହିବା ଶୁଣାଯାଏ ନାହିଁ । ତେଣୁ ଐତିହାସିକ ଉପନ୍ୟାସ ହେଉଛି ଏକ ପ୍ରକାରର ଉପନ୍ୟାସ । ଏ ଧରଣର ଉପନ୍ୟାସରେ ଇତିହାସରେ ଇତିହାସ ପ୍ରସଙ୍ଗ ଏଭଳି ଉପସ୍ଥାପିତ ହୁଏ ଯହିଁରୁ ମଣିଷର ପ୍ରକୃତ ସ୍ୱରୂପ ସହଜବାରିତ ହୁଏ । ଏପରିକି କାଳବୋଧଦେଇ ଇତିହାସ ପ୍ରସଙ୍ଗର ପୁନର୍ଗଠନ ପ୍ରକ୍ରିୟାରେ ମଣିଷର ସାମ୍ପ୍ରତିକ ବାସ୍ତବତା ଓ ସର୍ବକାଳୀନ ମୂଲ୍ୟବୋଧ ଜନିତ ସତ୍ୟତା ତହିଁରୁ ଅବଧାରିତ ହୋଇଥାଏ ।

ପରିଶେଷରେ ଏତିକି କୁହାଯାଇପାରେ; ଡକ୍ଟର ବିକ୍ରମ ଦାସ ଉପନ୍ୟାସ ରଚନା କରିଛନ୍ତି; କାହାଦ୍ୱାରା ପ୍ରସ୍ତୁତ ଉପନ୍ୟାସ ଛାଞ୍ଚକୁ ସେ ଅନୁସରିଥିବା ଜଣାଯାଏ ନାହିଁ । ବରଂ ସେ ଇତିହାସକୁ ଅନର୍ଗଳ କହି ଚାଲିବାରେ ଯେଉଁଳି ନିଷ୍ଠା ତାଙ୍କ ବର୍ଣ୍ଣନା ମାଧ୍ୟମରେ ଦର୍ଶାଇଛନ୍ତି ତାହା ଏକାନ୍ତ ଭାବେ ତାଙ୍କର ସ୍ୱନିର୍ମାଣ କୌଶଳ । ଏହି ପରିପ୍ରେକ୍ଷୀରେ ତାଙ୍କ ରଚିତ ଉପନ୍ୟାସଗୁଡ଼ିକ 'ଓଡ଼ିଆ ଐତିହାସିକ ଉପନ୍ୟାସ' ଧାରାରେ ଗୋଟିଏ ଗୋଟିଏ ବିକଶିତ କୃତି କୁହାଯାଇପାରିବ । *(ଉତ୍କଳ ସାହିତ୍ୟ ସମାଜରେ ୧୮ଫେବୃଆରୀ ୨୦୧୧ରିଖରେ 'ପ୍ରଫେସର ଡକ୍ଟର ବିକ୍ରମ ଦାସ ବକ୍ତୃତାମାଳା'ରେ ପ୍ରଦତ୍ତ ପ୍ରଥମ ଅଭିଭାଷଣ)।*

୧-୧ବି/୪୯, ସେକ୍ଟର-୮,
ସିଡିଏ, କଟକ-୧୪

# 'ଦେଶପ୍ରାଣ ସ୍ୱାଧୀନଚେତା ବିଚାରପତି ଏମ୍.ସି. ଚଗଲା' ଜୀବନୀ ପୁସ୍ତକ ଓ ଡାକ୍ତର ବିକ୍ରମ ଦାସ

## ଡକ୍ଟର ବିଜୟାନନ୍ଦ ସିଂହ

ଡକ୍ଟର ବିକ୍ରମ ଦାସ ବହୁମୁଖୀ ପ୍ରତିଭାର ଅଧିକାରୀ। ସେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ବେଶ୍ ସଫଳତା ଅର୍ଜନ କରିଛନ୍ତି। ଉତ୍ତରାଧିକାର ସୂତ୍ରରେ ସାହିତ୍ୟ ସାଧନା ତାଙ୍କ ଜୀବନର ପରମବ୍ରତ ବୋଲି ମନେହୁଏ। ବିକ୍ରମ ଦାସ ବୃତ୍ତିରେ ଡାକ୍ତର ଥିଲେ, କିନ୍ତୁ ସାହିତ୍ୟ ଥିଲା ତାଙ୍କ ଜୀବନର ମଧୁର ସ୍ୱପ୍ନ, ସଂକଳ୍ପ ଓ ସାଧନା। ଓଡ଼ିଆ ସାହିତ୍ୟରେ ଅନେକ ଜୀବନ, ଆତ୍ମଜୀବନୀ ବି ପ୍ରକାଶିତ ହୋଇଛି। ବିକ୍ରମ ଦାସ କିନ୍ତୁ ସାହିତ୍ୟକୁ ସାଧାରଣ ଭାବେ ଗ୍ରହଣ କରିନାହାଁନ୍ତି। ସମୟ ଓ ସମାଜର ଆବଶ୍ୟକତାକୁ ସେ ଉପଲବ୍ଧି କରି ସାହିତ୍ୟ ରଚନା ପାଇଁ ପ୍ରୟାସ କରିଛନ୍ତି।

ଲେଖକର ସ୍ରଷ୍ଟାମାନସ ତା'ର ବ୍ୟକ୍ତିତ୍ୱର ଆଭାସ ମାତ୍ର। ବ୍ୟକ୍ତି ଜୀବନ ଯେତେବେଳେ ସାମାଜିକ ଚିନ୍ତାଚେତନାରେ ଅଭିମନ୍ତ୍ରିତ ହୋଇଥାଏ - ସେତେବେଳେ ବ୍ୟକ୍ତିଟି ଆନୁଷ୍ଠାନିକ ଲାଭ କରେ। କାରଣ ବ୍ୟକ୍ତି ସେତେବେଳେ ହିଁ ସାମାଜିକ ସତ୍ତାକୁ ଉପଲବ୍ଧି କରି ସାମୂହିକ ବିକାଶ ପାଇଁ ଚେଷ୍ଟିତ ହୁଏ। ଡାକ୍ତର ଦାସଙ୍କ ସୁଯୋଗ ପିତା ପଣ୍ଡିତ ନୀଳକଣ୍ଠ ଥିଲେ ଓଡ଼ିଆ ଜାତୀୟତାର ମୂର୍ତ୍ତିମନ୍ତ ପ୍ରତୀକ। ସାହିତ୍ୟ ସାଧନା ଥିଲା ତାଙ୍କ ପ୍ରଚଣ୍ଡ ପ୍ରତିଭାର ଏକ ଉଜ୍ଜ୍ୱଳ ଦିଗ। ସାହିତ୍ୟ ଯେ ସାମାଜିକ ପରିବର୍ତ୍ତନର ଏକ ବଳିଷ୍ଠ ମାଧ୍ୟମ, ସେ ଏହା ଅନୁଭବ କରିଥିଲେ। ତେଣୁ ଡକ୍ଟର ଦାସ ମଧ୍ୟ ଅନୁପ୍ରାଣିତ ହୋଇଛନ୍ତି ତାଙ୍କ ପିତାଙ୍କ ଦ୍ୱାରା।

ଡକ୍ଟର ବିକ୍ରମ ଦାସଙ୍କ ଅନ୍ୱେଷଣ ଓ ଅନୁଶୀଳନ ଥିଲା ତାଙ୍କ ସାହିତ୍ୟିକ ଜୀବନର ଏକ ବିଶିଷ୍ଟ ଦିଗ । ସେ ଥିଲେ ବହୁପାଠୀ । ପଠନ ଓ ଅଧ୍ୟୟନ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ । ସାହିତ୍ୟ ପ୍ରତି ଥିବା ରୁଚି ହିଁ ତାଙ୍କ ଅନନ୍ୟ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ କୃତି । ଡକ୍ଟର ଦାସଙ୍କ ରଚିତ ଦେଶପ୍ରାଣ-ସ୍ୱାଧୀନଚେତା ବିଚାରପତି ଏମ୍.ସି. ଚଗଲା ହିଁ ତାଙ୍କ ଅନନ୍ୟ ସାରସ୍ୱତ କୃତିର ସୂଚନା ପ୍ରଦାନ କରେ । ଏପରି ବହିଟି ରଚନା କରିବା ଅବସରରେ ସେ ଯେଉଁ ଅଭିମତ ପ୍ରଦାନ କରିଛନ୍ତି ତାହା ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରେ - "ଦେଶର ଘଡ଼ିସନ୍ଧି ବେଳେ ଆମ ଦେଶର ଯେଉଁ ମହାପୁରୁଷମାନେ ଜାତୀୟତା ଓ ଧର୍ମନିରପେକ୍ଷତାର ଆଦର୍ଶ ଦେଖାଇ ଯାଇଛନ୍ତି ଓ ଦେଶର ଐତିହ୍ୟ, ସଂସ୍କୃତି ଓ ସୁସ୍ଥ ପରମ୍ପରାକୁ ରକ୍ଷା କରିବା ପାଇଁ ନିର୍ଭୀକ ଭାବରେ ଦେଶ ଆଗରେ ସେମାନଙ୍କର ମହତ୍ ଆଦର୍ଶ ରଖିଯାଇଛନ୍ତି ସେହିମାନଙ୍କ ଜୀବନୀ ଆଲୋଚନା କରି ସେମାନଙ୍କୁ ସ୍ମରଣ କରିବା ଆଜି ଦେଶବାସୀଙ୍କର ପ୍ରଥମ କର୍ତ୍ତବ୍ୟ । ଏ ଦେଶକୁ ସ୍ୱାଧୀନ କରିବାରେ ଓ ନୂଆକରି ଗଢ଼ିବାରେ ଯେତେ ବଡ଼ ବଡ଼ ସଂପୃକ୍ତ, ସେମାନେ ପ୍ରାୟ ସମସ୍ତେ ଖଦଡ଼ ପିନ୍ଧିଛନ୍ତି, କାରାବରଣ କରିଛନ୍ତି । ସେହିମାନଙ୍କ ଭିତରେ ଚଗଲା ଏକମାତ୍ର ବ୍ୟତିକ୍ରମ କହିଲେ ଅତ୍ୟୁକ୍ତି ହେବନାହିଁ ।"(ବହିଟି ବିଷୟରେ ସୂଚନା -ଦେଶପ୍ରାଣ ସ୍ୱାଧୀନଚେତା ବିଚାରପତି ଏମ୍.ସି. ଚଗଲା - ଡାକ୍ତର ବିକ୍ରମ ଦାସ -୧୯୮୫, ପୃ. କ-ଖ)

ଜଷ୍ଟିସ୍ ଏମ୍.ସି. ଚଗଲା ଭାରତୀୟ ଇତିହାସରେ ଏକ ବ୍ୟତିକ୍ରମ କହିଲେ ଅତ୍ୟୁକ୍ତି ହେବନାହିଁ । ଭାରତର ସ୍ୱାଧୀନତା, ସାର୍ବଭୌମତ୍ୱ, ନ୍ୟାୟବିଚାର ଓ ଏକତାରକ୍ଷା ପାଇଁ ସେ ସମଗ୍ର ଜୀବନକୁ ନିୟୋଜିତ କରିଛନ୍ତି । ସେଥିଲେ ଧର୍ମନିରପେକ୍ଷ । ଭାରତର ସମୃଦ୍ଧି ପାଇଁ ହିନ୍ଦୁ ମୁସଲମାନଙ୍କ ଏକତା ଏକାନ୍ତ ଅପରିହାର୍ଯ୍ୟ । ସେ ଏହା ଉପଲବ୍ଧି କରିଥିଲେ । ଛାତ୍ରାବସ୍ଥାରୁ ହିନ୍ଦୁ ମୁସଲମାନ ଏକତା ପାଇଁ ମୁସ୍‌ଲିମ୍ ଲିଗ୍‌କୁ ଜାତୀୟ ସ୍ରୋତରେ ସାମିଲ୍ କରିବାପାଇଁ ସେ ଚେଷ୍ଟା କରିଥିଲେ । ସେ ବମ୍ବେ ହାଇକୋର୍ଟର ବିଚାରପତି ପରେ ପ୍ରଧାନ ବିଚାରପତି ଓ ପୃଥିବୀ ଅଦାଲତର ବିଚାରପତି ଭାବରେ ସେ କାର୍ଯ୍ୟକରି ଉଚ୍ଚ ମୂଲ୍ୟବୋଧ ପ୍ରତିଷ୍ଠା କରିଯାଇଛନ୍ତି ।

ଜାତିସଂଘର ପ୍ରତିନିଧି ଭାବରେ ଏକ ସଂକଟ କାଳରେ ବିଚାରପତି ଚଗଲା ପାକିସ୍ତାନ ଓ ଭାରତ ବିରୋଧୀ ଦେଶକୁ ଉଚିତ୍ ଜବାବ ଦେଇଛନ୍ତି । ସେ ବମ୍ବେର ରାଜ୍ୟପାଳ, ଆମେରିକା ଓ ବ୍ରିଟେନ୍‌ରେ ଭାରତର ରାଷ୍ଟ୍ରଦୂତ, ଭାରତର ଶିକ୍ଷାମନ୍ତ୍ରୀ

ବୈଦେଶିକ ମନ୍ତ୍ରୀ ପ୍ରଭୃତି ବହୁ ଉଚ୍ଚପଦମଣ୍ଡନ କରି ସ୍ୱକୀୟ ପ୍ରତିଭାର ପ୍ରମାଣ ଦେଇଯାଇଛନ୍ତି। ଏପରିକି ନୂତନ ଆଞ୍ଚଳିକ ଶିକ୍ଷାନୀତିରେ ଭାରତର ଏକତା ଓ ସଂହତିରେ ଆଞ୍ଚ ଆସିବା କଥା ଉପଲବ୍ଧ କରି ତା'ର ପ୍ରତିବାଦରେ ବୈଦେଶିକ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ। ଆଇନ୍ ସଂସ୍କାର କମିଟି ଓ ମୁଦ୍ରା କମିଶନ ପ୍ରଭୃତିରେ ସେ ନିଜର ନିର୍ଭୀକ ମତ ଉପସ୍ଥାପନ କରି ସ୍ମରଣୀୟ ହୋଇଛନ୍ତି।

କୌଣସି ପ୍ରଲୋଭନର ସେ ବଶବର୍ତ୍ତୀ ହୋଇନାହାନ୍ତି। ଭାରତମାତାର ସୁଯୋଗ୍ୟ ସନ୍ତାନ, ଧର୍ମ ନିରପେକ୍ଷ ବ୍ୟକ୍ତି, ନିଃସ୍ୱାର୍ଥପର, ଜାତୀୟ ନେତା ଏମ୍. ସି. ଚଗଲାଙ୍କ ସଂପର୍କରେ ଓଡ଼ିଆରେ ପୁସ୍ତକ ରଚନା କରି ଡକ୍ଟର ବିକ୍ରମ ଦାସ ଯଥାର୍ଥ କର୍ତ୍ତବ୍ୟ ସଂପାଦନ କରିଯାଇଛନ୍ତି। ବିଚାରପତି ଏମ୍.ସି. ଚଗଲାଙ୍କର ଜୀବନ-ସାଧନା ସଂପର୍କିତ ବହିଟି ଅତି ସୁନ୍ଦର ଭାବରେ ରଚିତ। ଡକ୍ଟର ଦାସ ତାଙ୍କର ବାଲ୍ୟ ଜୀବନ ଓ ସ୍କୁଲ, କଲେଜ ବିଲାତରେ ଶିକ୍ଷା ଅର୍ଜନ କଥା କହିଛନ୍ତି। ଡକ୍ଟର ଚଗଲାଙ୍କ ଓକିଲାତି, ଓକିଲାତିରୁ ବିଚାରପତି, ପ୍ରଧାନ ବିଚାରପତି ଦାୟିତ୍ୱ, ନ୍ୟାୟଦାନ, ଅସ୍ଥାୟୀ ଲାଟ୍, ଜୀବନବୀମା କମିଶନ, ପୃଥିବୀ ଅଦାଲତର ବିଚାରପତି, ଆମେରିକାର ରାଷ୍ଟ୍ରଦୂତ, ବିଲାତରେ ରାଷ୍ଟ୍ରଦୂତ, ସ୍ୱାସ୍ଥ୍ୟମନ୍ତ୍ରୀ, ଜାତିସଂଘ କାଉନ୍‌ସିଲ୍, ବୈଦେଶିକ ମନ୍ତ୍ରୀ ପଦରୁ ଇସ୍ତଫାକୁ ବିକ୍ରମ ଦାସ ଅତି ଆନ୍ତରିକତାର ସହିତ ପ୍ରକଟ କରିଛନ୍ତି, ଯାହା ପାଠକକୁ ଅଭିଭୂତ କରିଦିଏ। ଗୋଟିଏ ପ୍ରସଙ୍ଗ ପଢ଼ିସାରିଲା ପରେ ଅନ୍ୟ ପ୍ରସଙ୍ଗ ପଢ଼ିବା ପାଇଁ ଉକ୍ରଣ୍ଠା ପ୍ରକାଶ ପାଏ। ତାହା ଡାକ୍ତର ଦାସଙ୍କ ରଚନାର ବୈଶିଷ୍ଟ୍ୟ। ସହଜ ଭାଷା, ସରଳ ଶୈଳୀ ବର୍ଣ୍ଣନାରେ ପ୍ରାଞ୍ଜଳତାରେ ଚଗଲାଙ୍କ ଜୀବନୀ ଆକର୍ଷଣୀୟ ହୋଇଛି। ଡକ୍ଟର ଦାସ ଚଗଲାଙ୍କ ଜୀବନ ଓ କର୍ମଧାରା କଥା ରୂପାୟନ କଲା ବେଳେ ତତ୍କାଳୀନ ଭାରତବର୍ଷର ବିଚାରଧାରା, ହିନ୍ଦୁମୁସଲମାନ ରାଜନୀତି, ଜାତୀୟ ମୁସଲିମ୍ ଦଳ ସଂପର୍କରେ ସୁବିସ୍ତୃତ ତଥ୍ୟ ଭିତ୍ତିକ ଆଲୋଚନା ମଧ୍ୟ ସେ ନିପୁଣତାର ସହ କରିଛନ୍ତି। ବ୍ୟକ୍ତିର ବ୍ୟକ୍ତିତ୍ୱ କେବଳ ନୁହେଁ, ଜୀବନଦର୍ଶନ ହିଁ ଇତିହାସ ପାଇଁ ଉପାଦାନ ହୁଏ। ଏହି ଦୃଷ୍ଟିକୋଣରୁ ଡକ୍ଟର ଦାସ ଏମ୍.ସି. ଚଗଲାଙ୍କ ଜୀବନଦର୍ଶନର କଥା କହିବାକୁ ଯାଇ ସାର୍ବଜନୀନ ସତ୍ୟକୁ ଉନ୍ମୋଚନ କରିଛନ୍ତି। ଅନ୍ୟକୁ ସମ୍ମାନ ଦେଇ ତା'ର ମତ ଓ ଜୀବନଧାରାକୁ ସହିନେବା ହିଁ ସହନଶୀଳତା। ଏହି ସହନଶୀଳତା ପ୍ରତ୍ୟେକ ବ୍ୟକ୍ତିର ନିଜ ଜୀବନକୁ ନିଜ ବାଟରେ ଚଳାଇବାର ଅଧିକାରକୁ ସ୍ୱୀକାର କରେ। "ପର୍ବତ ଗୁମ୍ଫାରେ ବାସ କରୁଥିବା କୌଣସି ମାନବର ତୈଳଦୀପଟି ତା'

ପାଇଁ ଆଲୋକର ଉତ୍ସ। ସହରର ବଡ଼ ବଡ଼ ଆଲୁଅ ତାକୁ ଆଲୋକ ଦିଏ ନାହିଁ। ତାହା ପାଇଁ ସେଗୁଡ଼ିକ ଅଳୀକ ମାତ୍ର। ତେଣୁ ଉଜ୍ଜ୍ୱଳବତୀରେ ଗତାୟାତ କରୁଥିବା ବ୍ୟକ୍ତି ଅନ୍ୟର ତୈଳଦୀପର ଆଲୋକକୁ ତୁଚ୍ଛ ମନେ କରିବା ଉଚିତ୍ ନୁହେଁ। ଗଣତନ୍ତ୍ର ଶାସନରେ ଶାସକ ଦଳ ବିରୋଧୀ ମତ ପ୍ରତି ସହନଶୀଳ ହେବା ଉଚିତ୍।" ଡକ୍ଟର ଚଗଲା ବାସ୍ତବରେ ଭାରତୀୟ ଜାତୀୟ ଜୀବନର କୀର୍ତ୍ତିମାନ ପୁରୁଷ, ତାହା ପ୍ରତିଫଳିତ ହୋଇଛି ଡକ୍ଟର ବିକ୍ରମ ଦାସଙ୍କ ରଚନାରେ।

"ଦେଶ ଓ ବ୍ୟକ୍ତିର ଉଚ୍ଚାକାଂକ୍ଷା ନ ରହିଲେ ଦେଶ ଅଗ୍ରଗାମୀ ହୋଇପାରିବ ନାହିଁ ବୋଲି ସେ ଉପଲବ୍ଧି କରିଥିଲେ। ସଂସ୍କାର ଜଞ୍ଜାଳକୁ ସହି ମଧ୍ୟ ସମସ୍ତେ ଉଚ୍ଚାକାଂକ୍ଷୀ ହେବା ଉଚିତ୍ । ଆମେ ଚନ୍ଦ୍ରକୁ ହାତରେ ପାଇବା ଅସମ୍ଭବ ହେଲେ ମଧ୍ୟ ଚନ୍ଦ୍ରକୁ ହାତ ବଢ଼ାଇବାରେ ହିଁ ଆମକୁ ଆନନ୍ଦ ଓ ଉତ୍ସାହ ମିଳେ।"

ବିଚାରପତି ଚଗଲାଙ୍କ ଜୀବନୀ ଓଡ଼ିଆରେ ଯେ ଏକ ଉଚ୍ଚମାନର ରଚନା ବୋଲି କୁହାଯାଇପାରେ, ତାହା ଡାକ୍ତର ଦାସଙ୍କ ରଚନାରୁ ଉପଲବ୍ଧ କରିହୁଏ। ଡାକ୍ତର ଦାସଙ୍କ ତାଙ୍କ ମହନୀୟ ଜୀବନୀକୁ ଅବତାରଣା କରିବା ସହ ନିଜର ବଳିଷ୍ଠ ମତକୁ ଉପସ୍ଥାପିତ କରିଯାଇଛନ୍ତି- "ସଂସାର ଦୁଃଖରେ ଅସ୍ତବ୍ୟସ୍ତ ହୋଇ ସାମାଜିକ ଦାୟିତ୍ୱକୁ ପଛରେ ପକାଇ ସଂସାର ଛାଡ଼ି ସନ୍ନ୍ୟାସୀ ହୋଇଯିବା ଆଦର୍ଶ କାର୍ଯ୍ୟ ନୁହେଁ।"

ବହିଟିର ନାମକରଣକୁ ଡାକ୍ତର ବିକ୍ରମ ଦାସ ଯଥାର୍ଥ ଭାବରେ ପ୍ରତିପାଦିତ କରିଛନ୍ତି। ବିଚାରପତି ଏମ୍.ସି. ଚଗଲା ବାସ୍ତବରେ ଥିଲେ ପ୍ରଚଣ୍ଡ ଦେଶଭକ୍ତ ଓ ସ୍ୱାଧୀନଚେତା ବିଚାରପତି। ବହିର ଶେଷ ଭାଗରେ ଚଗଲାଙ୍କ ତିରୋଧାନରେ ଭାରତର ତତ୍କାଳୀନ ରାଷ୍ଟ୍ରପତି ସଂଜୀବ ରେଡ଼ି, ଉପରାଷ୍ଟ୍ରପତି ଏମ୍ ହିଦାୟତୁଲ୍ଲା, ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ, ଆଚାର୍ଯ୍ୟ ଜେବି କୃପାଳିନୀ ପ୍ରଭୃତି ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ବାର୍ତ୍ତା ରହିଛି।

ଡାକ୍ତର ବିକ୍ରମ ଦାସ ଯେ ଜଣେ ପ୍ରତିଷ୍ଠିତ ଜୀବନୀ ଲେଖକ ତାହା ସାବ୍ୟସ୍ତ ହୋଇଛି 'ଦେଶପ୍ରାଣ-ସ୍ୱାଧୀନଚେତା ବିଚାରପତି ଏମ୍.ସି. ଚଗଲା" ପୁସ୍ତକରେ।

**ମାହାଙ୍ଗା, କଟକ**

# ଡାକ୍ତର ବିକ୍ରମ ଦାସ ଔପନ୍ୟାସିକ ଓ ଜୀବନୀକାର : ଏକ ଶ୍ରଦ୍ଧାର୍ପଣ

ଡକ୍ଟର ପ୍ରକାଶ କୁମାର ପରିଡ଼ା

ଡାକ୍ତର ବିକ୍ରମ ଦାସ ଓଡ଼ିଶାର ନବଯୁଗ ନିର୍ମାତାମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ, ବିପ୍ଳବୀ- ସଂସ୍କାରମୁକ୍ତ ଓ ନୂଆଧାରାର ଅଗ୍ର ସାରଥୀ- ଶିକ୍ଷକ ଓ ସେବକ- ନେତା ଓ ନୀତିଜ୍ଞ କବି ଓ ପ୍ରାବନ୍ଧିକ ମନୀଷୀ ନୀଳକଣ୍ଠଙ୍କ ସୁପୁତ୍ର ଭାବେ; ଜଣେ ବିଶିଷ୍ଟ ଓ ବିଶେଷଜ୍ଞ ବିଶେଷତଃ ବିଦେଶୀ ଡିଗ୍ରୀଯୁକ୍ତ ଚିକିତ୍ସକ ଭାବେ ମଧ୍ୟ ଏବର ସାମାଜିକ କ୍ଷେତ୍ରରେ ସ୍ମରିତ, ଆଲୋଚିତ ହେବାର ଯୋଗ୍ୟତା ରଖନ୍ତି । ମାତ୍ର ଆମେ ତାଙ୍କୁ ତାଙ୍କର ସେହି ପରିଧି ବାହାରେ ଜଣେ ଔପନ୍ୟାସିକ ଭାବେ ହିଁ ସାହିତ୍ୟ କ୍ଷେତ୍ରରେ ସ୍ମରଣ କରୁଛେ ।

'ମଣିମାଡିହ', 'ଅଲିଭା ଇତିହାସ', ସ୍ୱପ୍ନର ପାଞ୍ଚାଳି', 'ତିନିପିଢ଼ିର ହୋଟେଲ' ଭଳି ଉପନ୍ୟାସ ଲେଖକ ଓଡ଼ିଆ ସାହିତ୍ୟର ଇତିହାସରେ ଆପଣା ସ୍ଥାନ ସୁରକ୍ଷିତ ରଖନ୍ତି । ତାଙ୍କର ପିତୃ ପରିଚୟରେ 'ପଣ୍ଡିତଜୀ' କିମ୍ବା ବୃତ୍ତି ପରିଚୟରେ 'ଡାକ୍ତରଜୀ'ର ଆଦୌ ଆବଶ୍ୟକ ରହେ ନାହିଁ, ଥାଇ ତାହା ତାଙ୍କୁ ଦୀପ୍ତ କରେ । ମାତ୍ର ସେ ଯେ, ସତ୍ୟବାଦୀ ସାହିତ୍ୟ ଯୁଗର ମଉଡ଼ମଣି ଓଡ଼ିଆ ସାହିତ୍ୟର ଜାତୀୟବାଦୀ କବି-ନବଚେତନାର ପ୍ରାବନ୍ଧିକ ଓ ସାହିତ୍ୟ ଇତିହାସର ନବବିଶ୍ଳେଷକ ପଣ୍ଡିତ ନୀଳକଣ୍ଠଙ୍କ ଜୀବନୀଟିଏ, ଆତ୍ମଜୀବନୀ ପ୍ରତିମାନରେ ନିଜକୁ ଲେଖୁ ଲେଖୁ, ଲେଖିଯାଇଛନ୍ତି; ଲେଖି ପଣ୍ଡିତଜୀଙ୍କ 'ଆତ୍ମକାହାଣୀ'ର ଅପୂର୍ଣ୍ଣତାକୁ ଯଥେଷ୍ଟ ପୂରଣ କରିପାରିଛନ୍ତି- ଏହି ସାରସ୍ୱତ ଅବଦାନ 'ମୋ ନନାଙ୍କ ଦେଶ' ପାଇଁ ସେ ସୁଦ୍ଧା ଆମ ଜାତୀୟ ଇତିହାସରେ ସ୍ଥାନ ପାଆନ୍ତେ ।

ଆମ ଭାଷା-ସାହିତ୍ୟ-ସମାଜ ଜୀବନ-ଇତିହାସକୁ ବହୁମତେ ଋଦ୍ଧିମନ୍ତ କରିଥିବା ମାତ୍ର ତାଙ୍କ ଅବଦାନ ତୁଳନାରେ ଅଳ୍ପ ଆଲୋଚିତ ପ୍ରଶଂସିତ ହେଇଥିବା ଡାକ୍ତର ବିକ୍ରମ

ଦାସ ଜନ୍ମ ହୋଇଥିଲେ ସାକ୍ଷୀଗୋପାଳର ଶ୍ରୀରାମଚନ୍ଦ୍ରପୁର ଶାସନରେ ୧ ୯ ୨ ୧ ମସିହା ଫେବୃଆରୀ ୧୩ ତାରିଖରେ। ସାହିତ୍ୟିକ ବିକ୍ରମ ଦାସ ମହୋଦୟ ଜଣେ ଔପନ୍ୟାସିକ ବିଶେଷତଃ ଇତିହାସ ପଣ୍ଡିତ, ଅତୀତ ଉଦ୍‌ବୋଧକ, ଜାତୀୟ ଭାବନା ଶବଳିତ, ସଂସ୍କୃତି ପ୍ରଖ୍ୟାପକ ଉପନ୍ୟାସକାର ଭାବେ ଆମର ପରିଚିତ। ମାତ୍ର ସେ ମଧ୍ୟ ଓଡ଼ିଆ କ୍ଷୁଦ୍ରଗଳ୍ପ, ଶିଶୁ ସାହିତ୍ୟ ଏବଂ ପ୍ରବନ୍ଧ ବିଭାଗକୁ ନିଜର ଯଥାଶକ୍ତି ଅବଦାନ ରଖିଛନ୍ତି।

ଡାକ୍ତର ଦାସଙ୍କ ଗଳ୍ପ ଗ୍ରନ୍ଥ ଭିତରେ ଅଛି- 'ସାତ ତିରିକି ସତର', 'ଅଖଇରିଆ କଡ଼ା' ଭଳି ଦୁଇଟି ଶିରୋନାମା ଏବଂ ଶିଶୁ ସାହିତ୍ୟ ବିଭାଗକୁ ସେ ଦେଇଛନ୍ତି 'ରସଗୋଲା ବାହାଘର', 'ଟିଣିଟିଣିଆ ଭୂତ'। 'ମୋ ନନାଙ୍କ ଦେଶ' ଏବଂ 'ଆଦି ଜ୍ୟୋତି ହରିହର' ପୁସ୍ତକ ଦୁଇଟି ତାଙ୍କର ପ୍ରବନ୍ଧ ସାହିତ୍ୟକୁ ବିଶିଷ୍ଟ ଅବଦାନ ବିବେଚିତ ହୁଏ।

ଜଣେ ଲେଖକ ଭାବେ ଡାକ୍ତର ବିକ୍ରମ ଦାସ ଡାକ୍ତର ହୋଇ ମଧ୍ୟ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଉପନ୍ୟାସ, ଏକାଧିକ ଗଳ୍ପଗ୍ରନ୍ଥ, ଏକାଧିକ ପ୍ରବନ୍ଧ ଗ୍ରନ୍ଥ ଓ ଶିଶୁ ସାହିତ୍ୟରେ ସମୃଦ୍ଧ କରିଥିବାରୁ ସ୍ୱଭାବତଃ ଶ୍ରେୟ ଓ ପ୍ରଶଂସା ପାଇବେ କିମ୍ବା ବୃତ୍ତି ସର୍ବଶେଷରେ ଜଣେ ଲେଖକ ଭାବେ ତାଙ୍କ ସୃଷ୍ଟି ସଂପଦର ଗୁଣବତ୍ତା ପାଇଁ ନିର୍ବିବାଦରେ ସାହିତ୍ୟ ଇତିହାସରେ ସ୍ଥାନ ପାଇବେ ତାହା ଗବେଷଣାର ସାମଗ୍ରୀ।

ମୋର ସଦୟ ମତ ଯେ, ବିକ୍ରମ ଦାସ ଔପନ୍ୟାସିକ, ଓଡ଼ିଆ ସାହିତ୍ୟର ଇତିହାସରେ ଆପଣା ସ୍ଥାନ ସୁରକ୍ଷିତ କରିପାରିଛନ୍ତି।

୧ ୯ ୮ ୧ ମସିହାରେ 'ମଣିମା ଡିହ' ପ୍ରକାଶ ପାଇଲାବେଳେ ମୁଁ ସେ ବହିଟି ଆଖିରେ ଦେଖିଛି ଓ କୁଞ୍ଜବିହାରୀ ଦାଶଙ୍କ ଦ୍ୱାରା ତାହାର ସମୀକ୍ଷା ମଧ୍ୟ ମୋ ଆଖିରେ ପଡ଼ିଛି। ସେବେ ମୁଁ ଲେଖକଙ୍କୁ ପଣ୍ଡିତଙ୍କ ପୁଅ ବୋଲି ଜାଣିନଥିଲି। 'ତିନି ପିଢ଼ିର ହୋଟେଲ' ବହିଟି ପଢ଼ିଲା ପରେ ୧ ୯ ୯ ୨-୯୩ ମସିହାରେ ମଧ୍ୟ ତାହା ଜାଣିବାର ସୁଯୋଗ ନଥିଲା। ମାତ୍ର 'ସ୍ୱପ୍ନର ପାଞ୍ଚାଳି' ଉପନ୍ୟାସ ପଢ଼ିସାରି ମୋର ମନେ ହୋଇଥିଲା ଯେ, ଏହି ଲେଖକଙ୍କୁ ମୁଁ ଏ ଯାଏ ଆଲୋଚନା ପରିସରକୁ ଆଣିନାହିଁ କାହିଁକି ?

ଆମ ସମୀକ୍ଷା ସାହିତ୍ୟ ବହୁ ଦିଗରୁ ସମୃଦ୍ଧ ମାତ୍ର ଆମେ ସେହି ମାନଙ୍କ ଆଲୋଚନା କରୁ ଯେ, ପାଠ୍ୟକ୍ରମକୁ ନିର୍ବାଚିତ, ଯେ ସାହିତ୍ୟ ଅତିରିକ୍ତ ଅନ୍ୟକ୍ଷେତ୍ରରେ ସୁପ୍ରତିଷ୍ଠିତ ଓ ତାଙ୍କଠୁ ପ୍ରତ୍ୟକ୍ଷ/ପରୋକ୍ଷରେ ଆମେ ଏବେ ନ ହେଲେ କେବେ କିଛି ପାଇବା, ଯେ ଶାସନ ବା ପ୍ରଶାସନରେ ଓ ପୁରସ୍କାର କମିଟିରେ ଥା'ନ୍ତି କିମ୍ବା ଏହିପରି କିଛି ବିଶେଷ ଆୟୋଜନରେ ଆମକୁ ଅଗତ୍ୟା କିଛି ଲେଖିବାକୁ ହୁଏ।

ଏହି ଦୁର୍ବଳତା ଭିତରୁ କେତୋଟି ଦ୍ୱାରା ମୁଁ ମଧ କବଳିତ । କିନ୍ତୁ ମାନନୀୟ ପ୍ରାବନ୍ଧିକ ଶିକ୍ଷାବିତ୍ ପଠାଣି ପଟ୍ଟନାୟକଙ୍କୁ ଓ ଆମ ସମୟର ଅନ୍ୟତମ ବିଶିଷ୍ଟ କଥାକାର- ସାହିତ୍ୟ ସମୀକ୍ଷକ ଡକ୍ଟର ସୁଲୋଚନା ଦାସଙ୍କୁ ଧନ୍ୟବାଦ ଦେବା ଯେ, କୌଣସି ଦୁର୍ବଳତାରେ ପୀଡ଼ିତ ନ ହୋଇ ଏ ଦୁହେଁ ଡାକ୍ତର ବିକ୍ରମ ଦାସଙ୍କ ଔପନ୍ୟାସିକ ପ୍ରତିଭାକୁ ପ୍ରାୟ ୪୦ ପୃଷ୍ଠାରେ ସାବ୍ୟସ୍ତ କରିଛନ୍ତି ।

ଲେଖକଙ୍କ ବିଭିନ୍ନ ପୁସ୍ତକରେ ସମକାଳୀନ ବିଶିଷ୍ଟ ଗବେଷକ-ସାହିତ୍ୟିକ-ସାହିତ୍ୟ ଇତିହାସକାର-ସାହିତ୍ୟ ସଂଗଠକ ଯେପରି ଭାବେ ସତ୍ୟନାରାୟଣ ରାଜଗୁରୁ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ର ମହାନ୍ତି, କୁଞ୍ଜବିହାରୀ ଦାସ, କାହ୍ନୁ ଚରଣ ମହାନ୍ତି, ସଦାଶିବ ମିଶ୍ର, ମନମୋହନ ମିଶ୍ର ପ୍ରମୁଖ ସେମାନଙ୍କ ମୂଲ୍ୟବାନ ଓ ନିରପେକ୍ଷ ମତମନ୍ତବ୍ୟମାନ ରଖିଯାଇଛନ୍ତି । ତାହାର ଆଧାରରରେ ଡାକ୍ତର ଦାସଙ୍କ ସୃଷ୍ଟି ଆକଳନ କାର୍ଯ୍ୟ ସୁଗମ ହୋଇଛି ।

ଏଚ୍.ଏନ୍.ଏସ୍ ମହାବିଦ୍ୟାଳୟ,
ଚାନ୍ଦୋଳ, କେନ୍ଦ୍ରାପଡ଼ା

# ପ୍ରଫେସର (ଡାକ୍ତର) ବିକ୍ରମ ଦାସ
# ଏକ ଅମଳିନ ବ୍ୟକ୍ତିତ୍ୱ

## ଡାକ୍ତର ପ୍ରସନ୍ନ କୁମାର ରାଠୋର

ପ୍ରଫେସର (ଡାକ୍ତର) ବିକ୍ରମ ଦାସ, ଏକାଧାରରେ ଜଣେ ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ, ଡାକ୍ତର, ମେଡ଼ିକାଲ କଲେଜ ପ୍ରଫେସର ଓ ସର୍ବୋପରି ଜଣେ ମଣିଷକୁ ଭଲ ପାଉଥିବା ମାନବବାଦୀ ଚରିତ୍ର । ସେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁତ୍ର ରୂପେ ଜନ୍ମ ନେଇଥିଲେ ସତ, କିନ୍ତୁ ଜୀବନର କେଉଁଠାରେ ହେଲେ ସେ ପିତୃ ପରିଚୟର ଚାପ ବା ଛାପର ସାହାରା ନେଇନାହାନ୍ତି । ତାଙ୍କର ଜୀବନ କାହାଣୀ ଉପକୂଳ ଓଡ଼ିଶାର ଜନଜୀବନର ପଞ୍ଚସ୍ତରୀ ବର୍ଷର ଜୀବନ୍ତ ଇତିହାସ ।

ସ୍ୱାଧୀନତା ସଂଗ୍ରାମର ଆଦ୍ୟାବସ୍ଥାରେ ଅର୍ଥାତ୍ ବଙ୍ଗଭଙ୍ଗ ଆନ୍ଦୋଳନର ପାଖାପାଖି ୧୬ ବର୍ଷ ପରେ ତାଙ୍କର ଜନ୍ମ । ସେ ସତ୍ୟବାଦୀର ଗୁରୁକୁଳଙ୍କ ଠାରୁ ଶିକ୍ଷାଲାଭ କରିଥିଲେ । ବିଂଶ ଶତାବ୍ଦୀର ତୃତୀୟ ଦଶକର ବହୁଳାଂଶ 'ପଞ୍ଚସଖା' ନାମରେ ନାମିତ ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର ଓଡ଼ିଶାର ରାଜନୀତି ସାହିତ୍ୟ ଓ ସଂସ୍କୃତି ତଥା ଜୀବନଧାରା ଉପରେ କାଳଜୟୀ ପ୍ରଭାବ ପକାଇପାରିଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ ଓ ପ୍ରଚାରକ ଅନନ୍ତ ମିଶ୍ର ଦିନେ ଭାର୍ଗବୀନଦୀର ଜଳସ୍ପର୍ଶ କରି ଶପଥ କରିଥିଲେ ଯେ ସେମାନେ ସରକାରୀ ପଦ ଓ କ୍ଷମତାରେ ଯୋଗ ନ ଦେଇ ଦେଶ ମାତୃକାର ସେବା କରିବେ ଏବଂ ମରିବା ଆଗରୁ ଦେଶକୁ ଆହୁରି ଉନ୍ନତ ଅବସ୍ଥାରେ ଦେଖି ମରିବେ । ଅତଏବ ଦେଶପାଇଁ ପଣ୍ଡିତ ନୀଳକଣ୍ଠ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ତାଙ୍କର ଦ୍ୱିତୀୟ ସୁପୁତ୍ର ଡାକ୍ତର ବିକ୍ରମ ଦାସଙ୍କୁ ସେ କୌଣସି ଭାବେ ଆଜିକାଲିର ରୀତି (ପ୍ରିୟାପ୍ରୀତି ତୋଷଣ) ଅନୁଯାୟୀ ପ୍ରୋତ୍ସାହନ ଦେଇ

ନଥିଲେ । ପ୍ରଚଣ୍ଡ ପ୍ରତିଭାଶାଳୀ ଯଶସ୍ୱୀ ବିକ୍ରମ ବାବୁ ଗ୍ରାମରୁ ବିଦ୍ୟାଳୟ ଶିକ୍ଷା ଲାଭ ପରେ ରେଭେନ୍ସା କଲିଜିଏଟ୍ ସ୍କୁଲରୁ ମାଟ୍ରିକ ପାଶ କଲେ । ତରୁଣ ବୟସରେ ୨୧.୦୪.୧୯୩୯ରିଖରେ ରେଭେନ୍ସା କଲିଜିଏଟ୍ ସ୍କୁଲର ଛାତ୍ରଥିବା ସମୟରେ ସେ କାରାବରଣ କରିଥିଲେ ।

ପରେ ପରେ ରେଭେନ୍ସା କଲେଜରେ I.Sc. ଶ୍ରେଣୀରେ ନାମ ଲେଖାଇଲେ । କିନ୍ତୁ ତତ୍କାଳୀନ ଇଂରେଜ ଶାସନର ଅଗଣତାନ୍ତ୍ରିକ ସ୍ୱେଚ୍ଛାଚାରୀ ଶାସନର ସେ ଅତ୍ୟନ୍ତ ଅସ୍ଥିର ଅନୁଭବ କରିଥିଲେ । ତାଙ୍କର ରକ୍ତରେ ତ ପିଲାବେଳୁ ସ୍ୱାଧୀନତା ସଂଗ୍ରାମର ବୀଜବପନ ହୋଇସାରିଥାଏ । ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଇଂରେଜ ସରକାରଙ୍କ ବିରୋଧରେ ସେ ଭାଗ ନିଅନ୍ତି । ସେତେବେଳେ ଛାତ୍ରମାନଙ୍କ ଉପରେ ପୋଲିସ ଦମନଲୀଳା ଅତ୍ୟନ୍ତ କଠୋର ଥିଲା । ରେଭେନ୍ସା କଲେଜରୁ ତାଙ୍କୁ ଗିରଫ କରିପା ପାଇଁ ବ୍ରିଟିଶ୍ ପୋଲିସ ଖୋଜିବାକୁ ଲାଗିଲା । ସେ କୌଶଳକ୍ରମେ ସେଠାରୁ ଖସି ପଳାଇଲେ । ୧୯୪୪ ମସିହାରେ ସେ ରେଭେନ୍ସା କଲେଜରୁ ନିଷ୍କ୍ରମଣ ପତ୍ର ନେଇ କଲିକତାର ଜାତୀୟବାଦୀ ଅନୁଷ୍ଠାନ ବଙ୍ଗବାସୀ କଲେଜରୁ I.Sc. ପାଶ୍ କଲେ । ୧୯୪୫ ମସିହା ବେଳକୁ ରାଜନୀତି ପରିବର୍ତ୍ତନ ହେତୁ ବ୍ରିଟିଶ୍ ସରକାର କୋହଳ ନୀତି ଧରିଲେ । ସେ ତତ୍କାଳୀନ ଓଡ଼ିଶା ମେଡ଼ିକାଲ କଲେଜର MBBS ଡିଗ୍ରୀ ପାଠରେ ନାମ ଲେଖାଇଲେ । ମେଡ଼ିକାଲ ପଢ଼ିବା ସମୟରେ ଗୋଟିଏ କଙ୍କାଳକୁ ଚାହିଁ ସେ ଗୋଟିଏ କବିତା ଲେଖିଥିଲେ । ତା'ର ନାମ ହେଉଛି 'ଶେଷ ରାଶିଫଳ' । × × × ୧୯୪୭ ଅଗଷ୍ଟ ୧୫ରେ ଦେଶ ସ୍ୱାଧୀନ ହେବା ପରେ ରାଜନୀତିର ଗୁଣାତ୍ମକ ପରିବର୍ତ୍ତନ ଘଟିଲା । ନିଃସ୍ୱାର୍ଥପର ସେବା ଓ ତ୍ୟାଗ ଲୁଚି ଲୁଚି ଗଲା । ଭୋଗବିଳାସ ଓ ଜଗତ ଦୁଃଖରେ ଥାଉ ପଛେ ମୁଁ ଓ ମୋର ପରିବାର ଭଲରେ ରହୁ ଏହା ଜନଚରିତ୍ରର ଅଂଶ ହୋଇଗଲା । ଏଥିରରେ ମର୍ମାହତ ହୋଇ ବିକ୍ରମବାବୁ ଦୀର୍ଘଦିନରୁ ପିନ୍ଧି ଆସିଥିବା ଖଦଡ଼ ପୋଷାକ ପରିତ୍ୟାଗ କଲେ ଓ କ୍ଷମତା ରାଜନୀତିରୁ ସନ୍ନ୍ୟାସ ନେଲେ ... ।

ସେତେବେଳେ ମେଡ଼ିକାଲ କଲେଜରୁ ଜଣେ ଛାତ୍ର ଏମ୍.ବି.ବି.ଏସ୍. ପାଶ କଲେ, ଜଣେ ସମ୍ପୂର୍ଣ୍ଣ ସାଧାରଣ ଭେଷଜ ଓ ଶଲ୍ୟ ତଥା ସ୍ତ୍ରୀ ପ୍ରସୂତିଠାରୁ ଆରମ୍ଭ କରି ଦାନ୍ତ ନାକ, କାନ ଚର୍ମ ପ୍ରଭୃତିରେ ଚିକିତ୍ସା କରିପାରୁଥିଲେ । କାରଣ ସେତେବେଳେ ବିଶେଷଜ୍ଞ (Specialist) ଡାକ୍ତର ଶ୍ରେଣୀର ପରମ୍ପରା ଆରମ୍ଭ ହୋଇନଥାଏ । ସେତେବେଳେ ଅନ୍ତଃଚିକିତ୍ସକ (Intern) ପ୍ରଥା ନଥାଏ । ୫ ବର୍ଷର ଏମ୍.ବି.ବି.ଏସ୍. ପାଠ ପାଶ୍ ପରେ ପ୍ରାୟତଃ ଡାକ୍ତର ପଦ ପାଇଁ ଛାତ୍ରମାନେ ଯୋଗ୍ୟ ହେଉଥିଲେ ।

ଏମ୍.ବି.ବି.ଏସ୍. ଡାକ୍ତରଙ୍କ ମଧ୍ୟରୁ କୃତୀ ଛାତ୍ରମାନଙ୍କ ମଧ୍ୟରୁ କେତେଜଣ ବଛା ବଛା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ହାଉସ୍ ଫିଜିସିୟାନ ରୂପେ ଯୋଗ ଦେଉଥିଲେ। ଅଧିକ ଜ୍ଞାନ ଓ ଅନୁଭୂତି ଆହରଣ ପାଇଁ ଭଲ ଛାତ୍ରମାନେ ୬ ମାସ ହାଉସ୍ ଫିଜିସିୟାନ ରୂପେ କାର୍ଯ୍ୟ କରୁଥିଲେ। ବିକ୍ରମ ବାବୁ ହାଉସ୍ ଫିଜିସିୟାନ ରୂପେ କାର୍ଯ୍ୟ କରୁଥିବା ସମୟରେ କଠିନ ପରିଶ୍ରମ ଓ ଅଧ୍ୟବସାୟ ଦ୍ୱାରା ଡାକ୍ତରୀ ପାଠର ବ୍ୟବହାରିକ ଦିଗର ଅନେକ ତତ୍ତ୍ୱ ଆହରଣ କରିପାରିଥିଲେ। ତାଙ୍କର ପ୍ରଚଣ୍ଡ ସୌଭାଗ୍ୟ ଯେ ସେ ତତ୍କାଳୀନ ପ୍ରସିଦ୍ଧ ଭେଷଜ ବିଜ୍ଞାନୀ, ପ୍ରଫେସର ପିସାରୋଟିଙ୍କର ପ୍ରିୟ ଛାତ୍ର ଥିଲେ। ସେହି ଉତ୍କୃଷ୍ଟ ତାଲିମ ହେତୁ ପରବର୍ତ୍ତୀ ସମୟରେ କଲେରା ୱାର୍ଡର ତତ୍ତ୍ୱାବଧାରକ (ହାଉସ ଫିଜିସିୟାନ୍) ଥିବା ସମୟରେ ରନ୍ତଲେଇ (ଅନୁଗୁଳ ନିକଟ) ମହାମାରୀରେ ପୀଡ଼ିତ ରୋଗୀମାନଙ୍କର ଚିକିତ୍ସା ସୁଚାରୁରୂପେ ସମ୍ପାଦନ କରିଥିଲେ। ସେତେବେଳେ ଅଗଣିତ ରୋଗୀଙ୍କର ଚିହ୍ନଟ ପାଇଁ ସେ ଟୋକନ୍ ଆକାରରେ ନମ୍ବର ବ୍ୟବସ୍ଥା କରିଥିଲେ। ବିଭିନ୍ନ ରୋଗୀଙ୍କ ଚିହ୍ନଟ ପାଇଁ ଏହା ସେତେବେଳେ ଅତ୍ୟନ୍ତ ସହାୟକ ହୋଇଥିଲା।...

ପରେ ପରେ ସେ ଆମେରିକାରୁ ପାଥୋଲୋଜିରେ ସ୍ନାତକୋତ୍ତର ଡିଗ୍ରୀ ପ୍ରାପ୍ତ ହେଲେ। ଉଚ୍ଚଶିକ୍ଷା ଗ୍ରହଣ କରି ଆମେରିକାରୁ ଫେରି ସେ କ୍ଷମତା ରାଜନୀତିରେ ଯୋଗଦେବା ପାଇଁ ଆସିଥିବା ସୁଯୋଗକୁ ପାଦରେ ଦଳିଦେଇ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଯୋଗ ଦେଇଥିଲେ। ସେତେବେଳକୁ ତାଙ୍କ ପିତା ପଣ୍ଡିତ ନୀଳକଣ୍ଠ ଦାସ ଅସୁସ୍ଥ ଥିଲେ। ତେଣୁ ପିତାଙ୍କ ସେବାଯତ୍ନରେ ସେ ସମୟ ଦେବା ସହ ଡାକ୍ତରୀଛାତ୍ରଙ୍କୁ ତାଲିମ ଦେବାରେ ମନ ଦେଇଥିଲେ। ଓଡ଼ିଶାରେ ପାଥୋଲୋଜି ବିଭାଗକୁ ଏକ ଉନ୍ନତ ସ୍ନାତକୋତ୍ତର ବିଭାଗରେ ପରିଣତ କରିବାରେ ତାଙ୍କର ଭୂମିକା ସର୍ବକାଳୀନ ସ୍ୱୀକୃତ। ଦକ୍ଷିଣ ଓଡ଼ିଶାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟର ପାଥୋଲୋଜି ବିଭାଗର ସେ ପ୍ରଥମ ପ୍ରଫେସର ଥିଲେ। ସେ ବିଭାଗଟିକୁ ଯତ୍ନର ସହ ନିଜ ହାତରେ ଗଢ଼ିତୋଳି ଏକ ପୂର୍ଣ୍ଣାଙ୍ଗ ବିଭାଗରେ ପରିଣତ କଲେ।

୧୯୭୫ ମସିହାରେ ସରକାରୀ ଚାକିରିରୁ ଅବସର ପରେ ଏକ ପରିପକ୍ୱ ଅନୁଭବ ଓ ଅନୁଭୂତିର ବିସ୍ତୃତ କାନ୍‌ଭାସ୍‌ରେ ସେ ନିରାସକ୍ତ ଉଦାସୀନତାର ସ୍ୱର୍ଗୀୟ ଭାବ ନେଇ ଲେଖାଲେଖି ଆରମ୍ଭ କଲେ। ତାଙ୍କର ଅଭିଜ୍ଞତା ଥିଲା ଅସୀମ ଓ ରଚନା ଥିଲା ଅଜସ୍ରସ୍ରାବୀ। ସେ ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ହାତ ଦେଇଛନ୍ତି ଓ ସଫଳ ହୋଇଛନ୍ତି। ପ୍ରଖ୍ୟାତ ସାହିତ୍ୟିକ ହେମିଂୱେ କହିଥିଲେ "ସଫଳତା ହେଉଛି ଏକ ଯାତ୍ରା, ଏହା ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳୀରେ ସୀମିତ ହୋଇନଥାଏ।" ପ୍ରଫେସର ବିକ୍ରମ ଦାସ ଥିଲେ ଜଣେ ସଫଳ

ଯାତ୍ରୀ। ଏକଦା ସଂକ୍ରାନ୍ତି ପୁରୁଷ, ବ୍ୟାସକବି, ସରସ୍ୱତୀ ଫକୀରମୋହନ ତରୁଣ ଲେଖକ ଲକ୍ଷ୍ମୀକାନ୍ତଙ୍କୁ (ପରବର୍ତ୍ତୀ କାଳର ପ୍ରସିଦ୍ଧ 'କାନ୍ତକବି') ଉତ୍ସାହ ଦେଇ କହିଥିଲେ, "ଥକିବୁ ନାହିଁ ବାପା ! ତୁ ଲେଖିଯିବୁ, ଭଲମନ୍ଦ ବିଚାର କରିବୁ ନାହିଁ। ସେ ବିଚାର କରିବ କାଳ। ଯାହା ଶୁଦ୍ଧସୁବର୍ଣ୍ଣ ତାହା କାଳ କାଳକୁ ଉଜ୍ଜ୍ୱଳ ରହିବ, ଯାହା ଖାଦ ତାହା କାଳର ନିଆଁରେ ଜଳିପୋଡ଼ି ଭସ୍ମ ହୋଇଯିବ।" ସେହି କଥା ବିକ୍ରମ ବାବୁଙ୍କ ପ୍ରତି ପ୍ରଯୁଜ୍ୟ। ସେ ପୁରସ୍କାର ପାଇବା ପାଇଁ କେବେ ବି ଲବି କରିନାହାନ୍ତି କି ପୁରସ୍କାର ଯୋଗାଡ଼ରେ ମାତିନାହାନ୍ତି। ସେ କେବଳ ଲେଖି ଚାଲିଛନ୍ତି। ଗଳ୍ପ, ଉପନ୍ୟାସ, ରମ୍ୟରଚନା, ଭ୍ରମଣ କାହାଣୀ, ଜୀବନୀ, କବିତା, ଶିଶୁ ଓ ପ୍ରୌଢ଼ ସାହିତ୍ୟ ପ୍ରଭୃତି ବିଭାଗରେ ସେ ରଚନା କରିଛନ୍ତି ଅନେକ କାଳଜୟୀ ପୁସ୍ତକାବଳୀ। ଇଂରେଜୀରେ ମଧ୍ୟ ସେ ଅନେକ ରଚନା ଲେଖି ଯାଇଛନ୍ତି।

ଦୀର୍ଘ ୭୦ ବର୍ଷର ନିଜ ଜୀବନର ଅନୁଭୂତିକୁ ଅତି ସୁନ୍ଦର ଭାବେ ସେ ପରିବେଷଣ କରିଛନ୍ତି। 'ଜୀବନର ଛାପ ଅନୁଭୂତି ଓ ଅନ୍ୱେଷଣ' ପୁସ୍ତକରେ । ଏଥିରେ ସମସାମୟିକ ଓଡ଼ିଶାର ସାମାଜିକ, ରାଜନୈତିକ ତଥା ସାଂସ୍କୃତିକ ଇତିହାସ ସହ ଓଡ଼ିଶାରେ ମେଡ଼ିକାଲ ଶିକ୍ଷାର ଅୟମାରମ୍ଭରୁ ମେଡ଼ିକାଲ କଲେଜ ଶିକ୍ଷା ପର୍ଯ୍ୟନ୍ତ ଏକ ପର୍ଯ୍ୟାୟ ସମ୍ବନ୍ଧରେ ଜାଣିହୁଏ। ଓଡ଼ିଶାରେ ଡାକ୍ତରଙ୍କର ସମସ୍ୟା ୧୯୪୧ ମସିହାରେ ଯାହାଥିଲା, ଏବେ ମଧ୍ୟ ଊଣା ଅଧିକେ ତାହାହିଁ ରହିଛି। ଏବେ ମଧ୍ୟ ଓଡ଼ିଶାରେ ଡାକ୍ତର ସମାଜ ଉପଯୁକ୍ତ ସ୍ୱୀକୃତି ପାଇନାହାନ୍ତି।

୧୩ ଫେବୃୟାରୀ ୧୯୨୧ ମସିହାରେ ତାଙ୍କର ଜୀବନର ସୃଷ୍ଟି। ଏହା ସୌଭାଗ୍ୟର ସର୍ବୋଚ୍ଚ ଶିଖର ଛୁଇଁଥିଲା। ୨୪ ଜୁନ୍ ୨୦୦୭ରେ ଏହି ମହାପୁରୁଷଙ୍କର ପାର୍ଥୀବ ଶରୀର ପଞ୍ଚଭୂତରେ ବିଲୀନ ହୋଇଯାଇଥିଲା। ଆମ ଆଖି ଆଗରୁ ଅପସରି ଯାଇଥିଲା ଏକ ଆଭୂମନଭସ୍ପର୍ଶୀ ବିରାଟ ଜୀବନ କାହାଣୀର ଉଭାହୋଇଥିବା ରୂପ। ଓଡ଼ିଆ ଭାଷା ସାହିତ୍ୟର ଆକାଶରେ ସେ ଏକ ଅମଳିନ ଜ୍ୟୋତିଷ୍କ। ଯଶୋଦେହେ ସେ ଚିର ଆୟୁଷ୍ମାନ।

**ଆସିଷ୍ଟାଣ୍ଟ ପ୍ରଫେସର**
**ମେଡିସିନ୍ ବିଭାଗ**
**ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜ, କଟକ**

# ଡାକ୍ତର ବିକ୍ରମ ଦାସଙ୍କ ସୃଷ୍ଟିରେ ଅନୁଭୂତି, ଅନ୍ୱେଷଣ ଓ ଅନୁରାଗ

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

ଡାକ୍ତର ବିକ୍ରମ ଦାସଙ୍କ 'ଆମ ଗଜପତି : ଆମ ଗାଁ' ପୁସ୍ତକର 'ପଦେ କଥା'ରେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ଲେଖିଛନ୍ତି, "ଡାକ୍ତର ବିକ୍ରମ ଦାସ ଜଣେ ନିଦାନୀ । ଶରୀରର ବିଭିନ୍ନ ଉପାଦାନ ଓ ନିର୍ଗତଗୁଡ଼ିକର ପରୀକ୍ଷା କରି ରୋଗ ନିର୍ଣ୍ଣୟ କରିବା ଥିଲା ତାଙ୍କ ବୃତ୍ତିଗତ କର୍ତ୍ତବ୍ୟ ।... ରୋଗ ନିର୍ଣ୍ଣୟ କରିବା ଲାଗି ମଣିଷ ଶରୀରକୁ ଛାଡ଼ି ସେ ବର୍ତ୍ତମାନ ସମାଜର ଶରୀରର ରୋଗ ନିର୍ଣ୍ଣୟ କରିବାକୁ ଆରମ୍ଭ କରିଛନ୍ତି । ଏହି ପୁସ୍ତକଟି ସେହି ପ୍ରବୃତ୍ତିର ପରିଣାମ ।" ଠିକ୍ ସେହିପରି ଡାକ୍ତର ବିକ୍ରମ ଦାସଙ୍କ ଆତ୍ମଜୀବନୀ ପୁସ୍ତକ 'ଜୀବନର ଛାପ'ର ମୁଖବନ୍ଧରେ ଡକ୍ଟର ହରିହର ପଟ୍ଟନାୟକ ଉଲ୍ଲେଖ କରିଛନ୍ତି, "... ଏହି ଆତ୍ମଜୀବନୀର ଘଟଣାବଳୀକୁ ସତୁରୀ ବର୍ଷର ଏକ ସୂଚନାତ୍ମକ ଇତିହାସ କୁହାଯାଇପାରେ । ବହୁ କଥା ଏଥିରୁ ଜାଣି ହୁଏ । ଏହା ଏକ ଭିନ୍ନସ୍ୱାଦର ଆତ୍ମଜୀବନୀ ।"ଏହି ଦୁଇ ପୁସ୍ତକରେ ଲେଖକୀୟ ଦୃଷ୍ଟିକୋଣକୁ ମଧ୍ୟ ବିଚାର କରିବାର କଥା । 'ଆମ ଗଜପତି : ଆମ ଗାଁ' ପୁସ୍ତକର 'ମୁଖବନ୍ଧ'ରେ ଶ୍ରୀ ଦାସ ପ୍ରକାଶ କରିଛନ୍ତି, "ଭାରତ ପ୍ରାୟ ଅର୍ଦ୍ଧଶତାବ୍ଦୀ ହେଲା ସ୍ୱାଧୀନତା ଲାଭ କଲାଣି, କିନ୍ତୁ ବାସ୍ତବରେ ଆମେ ପଶ୍ଚିମୀ ପ୍ରଭାବରୁ ନିଜକୁ ଅଲଗା କରିପାରିନାହୁଁ । ସେଥିପାଇଁ ବର୍ତ୍ତମାନ ଆଉ ପଶ୍ଚିମୀ ହାୱାରେ ଭାସି ନଯାଇ ଆମ ଘରକୁ ଆମେ ସଜାଡ଼ିବା ବା ଆମ ପୂର୍ବପୁରୁଷଙ୍କ ଗଢା ଶାସନ ପଦ୍ଧତି ଓ ବିଶେଷରେ ଏ ପର୍ଯ୍ୟନ୍ତ କେତେକାଂଶରେ ଜୀବନ ଥିବା ଗ୍ରାମୀୟ ସମାଜ ଶୃଙ୍ଖଳାକୁ ଆମେ ଆଖିଖୋଲି ଦେଖିବା ଉଚିତ୍ ।" 'ଆମ ଗଜପତି : ଆମ ଗାଁ'ରେ ଓଡ଼ିଶାର ନିର୍ଦ୍ଦିଷ୍ଟ ଗ୍ରାମୀଣ ଜୀବନର ଯେପରି ସ୍ୱଚ୍ଛଚିତ୍ରଟିଏ ସେ ବାଢ଼ିଛନ୍ତି, ଠିକ୍ ସେହିପରି 'ଜୀବନର ଛାପ'ରେ ଦୀର୍ଘ ସତୁରି ବର୍ଷର ସାମାଜିକ ସ୍ଥିତି, ଐତିହାସିକ ଭିତ୍ତିଭୂମି, ରାଜନୈତିକ ଆବହାୱା ଓ ସାଂସ୍କୃତିକ ରୂପଚିତ୍ର ବେଶ୍ ଉଜ୍ଜ୍ୱଳ ।

ସ୍ୱାଧୀନତା ଲାଭର ଅର୍ଦ୍ଧଶତାବ୍ଦୀ ସମୟ ଅତିବାହିତ ହେବା ପରେ ଆମର ଦୃଷ୍ଟିକୋଣ ଯେପରି ମାଟି ଛାଡ଼ିଛି, ସେଥିରେ ବ୍ୟଥିତ ହୋଇଛନ୍ତି ଡାକ୍ତର ଦାସ । ସମୃଦ୍ଧ ଐତିହ୍ୟ ହିଁ ତାଙ୍କ ସୃଷ୍ଟିରେ ସଜୀବ ହୋଇଉଠିଛି । ଜୀବନରେ ରହିଛି ଅନୁଭୂତିର ବର୍ଣ୍ଣିଳ ବର୍ଣ୍ଣବିଭା ଏବଂ ଅତୀତକୁ ଅନ୍ୱେଷଣ କରିବାର ନିଷ୍ଠାପର ପ୍ରୟାସ । ସେଥିପାଇଁ ତ ଅତୀତ କଥା କହିଛି, ଯେଉଁ କଥା ଓଡ଼ିଶା ମାଟିର ମହିମାକୁ ପ୍ରତିପାଦିତ କରିଛି, ଗୌରବମୟ ସମୟର ସଜଳସ୍ମୃତି ହୋଇଛି ଖୁବ୍ ହୃଦୟଗ୍ରାହୀ ।

'ମଣିମାଡିହ'ଠାରୁ 'ନିର୍ବାସିତ ଗଜପତି', 'ଅଲିଭା ଇତିହାସ'ଠାରୁ 'ମୋ ନନାଙ୍କ ଦେଶ', 'ଚିତ୍ରେ ମହାମନୀଷୀ ନୀଳକଣ୍ଠ'ଠାରୁ 'ଆଦିଜ୍ୟୋତି ହରିହର' - ଏମିତି ଇତିହାସକୁ, ଇତିହାସ ଚରିତ୍ରଙ୍କୁ ନେଇ ଲିଖିତ ଉପନ୍ୟାସ, ଜୀବନୀ ଆଦିରେ କ'ଣ କହିବାକୁ ଚାହିଁଛନ୍ତି ଶ୍ରୀ ଦାସ ? କହିବାକୁ ଚାହିଁଛନ୍ତି ଆମେ ଭୁଲିଯାଉଥିବା ଆମ ଉତ୍ତରସୂରୀଙ୍କ ଅମଳିନ କର୍ମକୁ, କହିବାକୁ ଚାହିଁଛନ୍ତି ଇତିହାସର ବିସ୍ମୃତ ପୃଷ୍ଠାରେ ହଜି ହଜି ଯାଉଥିବା ଆମ ସମୃଦ୍ଧ ଐତିହ୍ୟକୁ । ଯାହାକୁ ନେଇ ଅମ୍ଭେ ଗର୍ବ କରିବାର କଥା, ସେଥିପ୍ରତି ସାମାନ୍ୟ ଧ୍ୟାନ ଦେବାରେ ଯେତେବେଳେ ଆମେ ଅସମର୍ଥ; ସେତେବେଳେ କଥା କହିଛି ଡାକ୍ତର ଦାସଙ୍କ ଲେଖନୀ । ସେ କଥାରେ ନିଜ ଗାଁ' ସଂପର୍କରେ କହିବା ବେଳେ ଓଡ଼ିଶାର ସମୃଦ୍ଧମୟ ଅତୀତ, ନିଜ କଥା କହିବା ଭିତରେ ତତ୍କାଳୀନ ସାମାଜିକ ବିଧିବ୍ୟବସ୍ଥା ଓ ରାଜନୈତିକ ସ୍ଥିତି ଅଧିକରୁ ଅଧିକ ସ୍ୱଷ୍ଟ ହୋଇଯାଏ ।

ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱିତୀୟ ପୁତ୍ର ବିକ୍ରମ ଦାସଙ୍କ ପଛରେ ରହିଛି ପିତାଙ୍କ ପ୍ରଭାବ ଓ ପାରିବାରିକ ସଂସ୍କାର । ପରିବାରରୁ ଲେଖନୀ ଚାଳନା କରିବାର ପ୍ରେରଣା ଓ ଜାତୀୟତା ଭାବରେ ଉଦ୍‌ବୁଦ୍ଧ ହେବାର ଅବକାଶ ତାଙ୍କୁ ମିଳିଛି। ଏ ସବୁ ଡାକ୍ତର ଦାସଙ୍କ ରଚନା ସମଗ୍ରରେ ପରିଲକ୍ଷିତ ହେବା ସ୍ୱାଭାବିକ ଏବଂ ତାହାହିଁ ଘଟିଛି ।

'ଆମ ଗଜପତି : ଆମ ଗାଆଁ' ଓ 'ଜୀବନର ଛାପ'କୁ ବିଚାର କଲେ ଏ ଦୁଇଟିକୁ ପରସ୍ପରଠାରୁ ଭିନ୍ନ କରିହେବ ନାହିଁ । ଯେପରି ଅନ୍ୟ ଚାରୋଟି ଜୀବନୀ ପୁସ୍ତକ 'ମୋ ନନାଙ୍କ ଦେଶ', 'ଚିତ୍ରେ ମହାମନୀଷୀ ନୀଳକଣ୍ଠ', 'ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ' ଓ 'ଆଦିଜ୍ୟୋତି ହରିହର' ଏହା ସହ ଗୋଟିଏ ସୂତ୍ରରେ ବନ୍ଧା ବୋଲି ବୁଝିବାକୁ ହେବ । ସବୁଠି ନିଜସ୍ୱ ଅନୁଭୂତିକୁ ଦେଖିବାକୁ ମିଳିଛି, ସବୁଠି ଜୀବନ, ପରିବେଶ ଓ ସମୟକୁ ବୁଝିବାକୁ ପ୍ରଚେଷ୍ଟା କରାଯାଇଛି ।

ଇତିହାସମନସ୍କ ସ୍ରଷ୍ଟା ଡାକ୍ତର ବିକ୍ରମ ଦାସ । ଅତୀତର ପ୍ରେରଣା ବର୍ତ୍ତମାନକୁ ଗଢିବାରେ ସମର୍ଥ ଓ ଭବିଷ୍ୟତ ପାଇଁ ଭାବଭୂମି ପ୍ରସ୍ତୁତି କରିବାରେ ସହାୟକ; ଏହା ହିଁ ବୁଝିଥିଲେ ସ୍ରଷ୍ଟା । ସେଥିପାଇଁ ତାଙ୍କର ଅନ୍ୱେଷଣ ଓ ଏହି ଅନ୍ୱେଷଣରେ ତାଙ୍କୁ ସହାୟତା କରିଛି ତାଙ୍କ ଅନୁଭୂତି,

ବିଶେଷ କରି ଏକ ପରିପୂର୍ଣ୍ଣ ଜୀବନ । ଯେଉଁ ଜୀବନ ହୋଇଛି ସ୍ୱାଧୀନତା ସଂଗ୍ରାମର ଅଂଶବିଶେଷ, ଯେଉଁ ଜୀବନ ଜାତୀୟତାର ମନ୍ଦ୍ରଗାନରେ ନିଜକୁ ନିମଜ୍ଜିତ କରିଛି, ଯେଉଁ ଜୀବନ ଅତୀତରୁ ସାର ସଂଗ୍ରହ କରି ଏକ ସମୃଦ୍ଧ ଭବିଷ୍ୟତର କାମନା କରିଆସିଛି ।

'ଆମ ଗଜପତି : ଆମ ଗାଆଁ'(ଗ୍ରନ୍ଥ ମନ୍ଦିର- ଜାନୁୟାରୀ, ୧୯୯୩)ରେ ଲେଖକଙ୍କ ଗାଁ' ଯେଉଁ ଗାଁ ପଣ୍ଡିତ ହରିହର ଦାସ ଶର୍ମା, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପ୍ରଚାରକ ଅନନ୍ତ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର, ରାଧାମଣି ଦେବୀ ପ୍ରମୁଖଙ୍କର ଜନ୍ମମାଟି ଓ କର୍ମମୟ ଜୀବନର ଏନ୍ତୁଡ଼ିଶାଳ ଥିଲା; ସେହି ମାଟିର ଇତିହାସକୁ ଖୋଜିଛନ୍ତି ଲେଖକ । ଖୋଜିଛନ୍ତି କିପରି ପ୍ରତିଷ୍ଠା ହୋଇଥିଲା ବୀର ରାମଚନ୍ଦ୍ରପୁର , ଶ୍ରୀ ରାମଚନ୍ଦ୍ରପୁର, ପ୍ରତାପ ରାମଚନ୍ଦ୍ରପୁର, ବିଜୟ ରାମଚନ୍ଦ୍ରପୁର, ଉଭୟମୁଖୀ ରାମଚନ୍ଦ୍ରପୁର, ବୀର ଗୋବିନ୍ଦପୁର ଓ ବୀର ପ୍ରତାପପୁର ପରି ସମୃଦ୍ଧ ଗାଁ। ୧୬ ଶାସନ କିପରି ଗଜପତି ରାମଚନ୍ଦ୍ର ଦେବ ବସାଇଥିଲେ ଏବଂ ଏହାର ପୃଷ୍ଠଭୂମିରେ ରହିଛି ସେତେବେଳର ଇତିହାସ, ସମାଜ ଜୀବନ ଓ ରାଜନୈତିକ ପରିବର୍ତ୍ତନ । ଗଜପତି ପ୍ରଥମ ରାମଚନ୍ଦ୍ର ଦେବଙ୍କ ଶାସନ ଓ କ୍ଷମତା ସଂପର୍କରେ ରହିଥିବା ଅଲୋଚନା ଅତୀତର ଅନେକ ତଥ୍ୟର ଉପସ୍ଥାପନ କରିଛି, ଯାହା ବର୍ତ୍ତମାନର ପିଢି ଜାଣିବାର ଅବକାଶ କ୍ଷୀଣ ହୋଇଯାଇଛି । ନିଜ ଗାଁ' ସଂପର୍କରେ ଲେଖନୀଚାଳନା କଲାବେଳେ ଏହା ପୃଷ୍ଠଭୂମିରେ ଓଡ଼ିଆ ସଂସ୍କୃତି ଓ ଐତିହ୍ୟ, ଶାସନ ଗ୍ରାମ, ସ୍ୱାଧୀନତାର ଶେଷଫଳକ ଗଜପତି ରାମଚନ୍ଦ୍ର, ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠା, ମୁକ୍ତିମଣ୍ଡପ ଓ ସେଥିରେ ଷୋଳ ଶାସନର ପ୍ରତିନିଧି ଆଦି ସଂପର୍କର ଆଲୋକପାତ କରିଛନ୍ତି ଲେଖକ । ଏଇଠି ଅନ୍ୱେଷଣ କରିବାର ଅବକାଶକୁ ସଠିକ୍ ଭାବେ ନିର୍ବାହ କରିଛନ୍ତି ସେ । ଏଥିପାଇଁ ମାଦଳା ପାଞ୍ଜିର ତଥ୍ୟକୁ ମଧ୍ୟ ଗୁରୁତ୍ୱ ଦେଇଛନ୍ତି । ତାଙ୍କ ଶାସନଗୁଡ଼ିକ କିପରି ଥିଲା, ସେ ସଂପର୍କରେ ମଧ୍ୟ ଅବତାରଣା କରାଯାଇଛି ଏ ପୁସ୍ତକରେ । ଦୃଷ୍ଟାନ୍ତ ପାଇଁ ପୁରାଣ ଗ୍ରନ୍ଥ ଓ ପୁରାଣ ଚରିତ୍ରମାନଙ୍କ ଅବତାରଣା ଡାକ୍ତର ଦାସଙ୍କ ଧୀ-ଧୀଷଣାକୁ ପ୍ରତିପାଦିତ କରିଛି । ୧୫୯୦-୯୨ରେ ପ୍ରତିଷ୍ଠା ହୋଇଥିଲା ଲେଖକଙ୍କ ଗାଁ' ଶ୍ରୀରାମଚନ୍ଦ୍ରପୁର ସଂପର୍କରେ ସବିଶେଷ ତଥ୍ୟ ଉପସ୍ଥାପନ କରାଯାଇଛି । ଏହାକୁ ଉପସ୍ଥାପନ କଲାବେଳେ ଲେଖକ 'ଲଡୁଆ ଗ୍ରାମ ଯଶୀପୁର', 'ଆମ ଗ୍ରାମର ଗଠନ ଓ ଶାସନ', 'ଲୋକତନ୍ତ୍ର ଶାସନ ଓ ମହାଜନ ସଭା' ସଂପର୍କରେ ଯାହା ଲେଖିଛନ୍ତି, ତାହା ପଢ଼ି ଓଡ଼ିଶାର ଇତିହାସ ଓ ଭୂଗୋଳକୁ ଜାଣିବା ଅବକାଶ ସୃଷ୍ଟି କରିଛି । 'ଗ୍ରାମ ଯୁଗମନୀଷୀ' ଶୀର୍ଷକ ଲେଖାରେ ଲେଖକ ଆଚାର୍ଯ୍ୟ ହରିହର ଦାସଙ୍କଠାରୁ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ପର୍ଯ୍ୟନ୍ତ ଏହି ଗ୍ରାମରେ ଜନ୍ମଗ୍ରହଣ କରିଥିବା ମନୀଷୀଙ୍କ ବିଷୟରେ ସବିଶେଷ ଉଲ୍ଲେଖ କରିଛନ୍ତି । ଏହି ଗାଁ'ର ପର୍ବପର୍ବାଣୀ ସଂପର୍କରେ ଉଲ୍ଲେଖ କଲାବେଳେ ଏହାର ବିଶେଷତ୍ୱକୁ ମଧ୍ୟ ସେ ଦେଖାଇଛନ୍ତି । ଗୋଟିଏ ଗାଁ'କୁ

ନେଇ ଏକଶତ ଛପନ ପୃଷ୍ଠାର ପୁସ୍ତକ 'ଆମ ଗଜପତି : ଆମ ଗାଆଁ' ପ୍ରକୃତରେ ମାଟିକୁ, ଗାଁ'କୁ ଭଲ ପାଉଥିବା ସ୍ରଷ୍ଟାଙ୍କ ମାଟିମନସ୍କ ଭାବଧାରାକୁ ଲକ୍ଷ୍ୟ କରିବାକୁ ହୁଏ । ପୁସ୍ତକରେ ସବୁଠି ଗାଁ' ପ୍ରତି ଅନୁରାଗର ସ୍ପର୍ଶ ହିଁ ରହିଛି ।

'ଜୀବନର ଛାପ' ଆତ୍ମଜୀବନୀରେ ସ୍ରଷ୍ଟାଙ୍କ ମାଟିମନସ୍କ ଦୃଷ୍ଟିକୋଣ ବି ପରିଲକ୍ଷିତ ହୁଏ । ଜୀବନାନୁଭୂତି ଓ ଅନ୍ୱେଷଣ ଏହି ପୁସ୍ତକକୁ ସ୍ୱତନ୍ତ୍ର ଆସନ ଦେଇଛି । ସେଥିପାଇଁ ତ ଡକ୍ଟର ହରିହର ପଟ୍ଟନାୟକ ଯଥାର୍ଥରେ ଏହାକୁ ଭିନ୍ନସ୍ୱାଦ ବୋଲି କହିଛନ୍ତି । ପାରମ୍ପରିକ ରୀତିରେ ଲେଖାଯାଇଛି ଏହି ଆତ୍ମଜୀବନୀ । ଏଥିରେ ବାଲ୍ୟସ୍ମୃତି, ଛାତ୍ର ଅଶାନ୍ତି, ବିବାହ ଗହଳ,'ବିଜ୍ଞବ୍ୟକ୍ତିଙ୍କ ସାନ୍ନିଧ ଓ ସାହିତ୍ୟ ସାଧନା, କାଳର ରୀତି ଓ ଗତି ଆଦି ଶୀର୍ଷକରେ ଡାକ୍ତର ଦାସ ନିଜକଥା କହିବା ଭିତରେ ଓଡ଼ିଶା, ଭାରତ ଓ ବିଦେଶ ସଂପର୍କରେ ଭିନ୍ନ ଭିନ୍ନ ପ୍ରସଙ୍ଗରେ ତାଙ୍କ ମନୋଭାବ କ'ଣ, ତାହା ଉପସ୍ଥାପିତ କରିଛନ୍ତି । ଡାକ୍ତର ଦାସଙ୍କ ଜୀବନ-ଚିତ୍ର ଏକ ବିରାଟ କାନ୍‌ଭାସ ଉପରେ ହିଁ ଅଙ୍କିତ ହୋଇଛି । ସ୍ୱାଧୀନତା ସଂଗ୍ରାମର ଘନଘଟାଠାରୁ ଡାକ୍ତରୀ ଜୀବନ, ବିଦେଶର ଅନୁଭୂତିଠାରୁ ସମାଜକୈନ୍ଦ୍ରିକ ପ୍ରସଙ୍ଗରେ 'ଜୀବନର ଛାପ' କହିଛି ଅନେକ କଥା !

ଚାଟଶାଳୀ ପଢ଼ା ହେଉ ବା ବନ ବିଦ୍ୟାଳୟ ଶିକ୍ଷା ହେଉ; ସେ ସମୟର ନିଛକ ଛବିଟିଏ ସ୍ଥାନ ପାଇଛି 'ବାଲ୍ୟସ୍ମୃତି', 'ମୋ ମାଇନର ପଢ଼ା', 'କଟକ ସ୍କୁଲ ପାଠପଢ଼ା' ଆଦି ଶୀର୍ଷକ ଅଧ୍ୟାୟରେ । ଅନୁଭୂତିକୁ ଯେତେବେଳେ ସେ ନିଜ ବିଚାର ନିକିତିରେ ତଉଲିଛନ୍ତି, ସେତେବେଳେ ଭିନ୍ନ ବିଚାରବୁଦ୍ଧିକୁ ଲକ୍ଷ୍ୟ କରିବାକୁ ହୁଏ । "ବାଳକମାନଙ୍କଠାରୁ ବାଳିକାମାନଙ୍କ ଶିକ୍ଷା ବ୍ୟବସ୍ଥା ଆହୁରି ଶୋଚନୀୟ ଥିଲା । ଆମ ସଙ୍ଗେ ସାତଜଣ ବାଳିକା ନାମ ଲେଖାଇଥିଲେ । ସେଥିରୁ ୩ଜଣ ମୋ ସାଙ୍ଗେ ଉତ୍ତୀର୍ଣ୍ଣ ହୋଇଥିଲେ । ସେମାନେ ବିବାହ ପାଇଁ ପ୍ରସ୍ତୁତ ହୋଇ ପାଠପଢ଼ା ଛାଡ଼ିବାକୁ ବାଧ୍ୟ ହୋଇଛନ୍ତି ! ଶିକ୍ଷାର ଏପରି ଦୟନୀୟ ବ୍ୟବସ୍ଥା ପାଇଁ ବାଲ୍ୟବିବାହ ଲୋକଙ୍କ ଆର୍ଥିକ ଦୂରବସ୍ଥା, ଚାକିରି ଓ ପାଠ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାର ଆବହାୱା ପ୍ରଭୃତି ଦାୟୀ ଥିଲା ।"

ଡାକ୍ତର ବିକ୍ରମ ଦାସଙ୍କ ଜୀବନ ଅନେକ ଅଙ୍କାବଙ୍କା ରାସ୍ତା ଦେଇ ଆଗକୁ ବଢିଛି । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଶିକ୍ଷାକୁ ଛାଡ଼ିଛନ୍ତି । ପରେ ପୁଣି ଶିକ୍ଷା ଆରମ୍ଭ ହୋଇଛି । ଗାନ୍ଧୀ ଓ ସୁଭାଷଙ୍କ ଆହ୍ୱାନ, ତାଙ୍କୁ ଜାତୀୟ ସ୍ରୋତରେ ସାମିଲ କରିଛି । ମାତୃଭୂମି ପ୍ରତି କର୍ତ୍ତବ୍ୟକୁ ସେ ଅଗ୍ରାଧିକାର ଦେଇଥିଲେ । ତତ୍‌କାଳୀନ୍ ଶିକ୍ଷା ବ୍ୟବସ୍ଥାର ସୁନ୍ଦର ଚିତ୍ର ବି ଏଥିରୁ ମିଳିଥାଏ । ଅବଧାନଙ୍କ ଶିକ୍ଷାପଦ୍ଧତି, ବନବିଦ୍ୟାଳୟ ଶିକ୍ଷା ଓ ସରକାରୀ ସ୍କୁଲରେ ଶିକ୍ଷା କିପରି ଥିଲା, ତାହା ଏଥିରେ ଅଙ୍କିତ ହୋଇଛି । କେବଳ ଏତିକି ନୁହେଁ ବଙ୍ଗବାସୀ କଲେଜ ସଂପର୍କରେ ସବିଶେଷ ବର୍ଣ୍ଣନା

ମଧ୍ୟ ଏଥିରୁ ମିଳିଛି । ତେବେ ଛାତ୍ରଜୀବନରେ ଯେଉଁ ଅଭାବକୁ ସେ ସାମ୍ନା କରିଥିଲେ, ତାହାକୁ ନିଷ୍କପଟ ଭାବେ ଉପସ୍ଥାପନ କରିଛନ୍ତି ।

'ମେଡିକାଲ୍ କଲେଜରେ ନାମଲେଖା', 'ମେଡିକାଲ୍ କଲେଜ ବାତାବରଣ', 'ସ୍ୱାଧୀନତାର ଝଲକ ଓ ମେଡିକାଲ୍ ଟ୍ରେନିଂ', 'ମେଡିକାଲ୍ ଶିକ୍ଷାର ଶେଷ ପର୍ଯ୍ୟାୟ' ଆଦି ଶୀର୍ଷକରେ ଜଣେ ଡାକ୍ତରୀ ଛାତ୍ର ଭାବେ ସେ ଯେପରି ସ୍ଥିତିକୁ ସାମ୍ନା କରିଥିଲେ ଓ ସେ ସମୟର ମେଡିକାଲର ସ୍ୱରୂପ ଉଲ୍ଲେଖ ରହିଛି । ଉଚ୍ଚଶିକ୍ଷା ପାଇଁ ଆମେରିକା ଯିବାକୁ ପଡ଼ିଥିଲା ଲେଖକଙ୍କୁ । ସେଠାରେ ସେ ଆହରଣ କରିଥିବା ଅନୁଭୂତି ବେଶ୍ ଚମତ୍କାର ଢଙ୍ଗରେ ସ୍ଥାନିତ ହୋଇଛି ଏହି ପୁସ୍ତକରେ । 'ଆମେରିକାର ତତ୍‌କାଳୀନ ଲୋକଚରିତ୍ର', 'ସ୍ନାତକୋତ୍ତର ଡିଗ୍ରୀ ଓ ଘର ଲେଉଟାଣି' ଶୀର୍ଷକ ଲେଖା ଏହା ହିଁ ପ୍ରମାଣ କରିଛି । "...ଅଳ୍ପ କେତେ ଶହ ବର୍ଷ ତଳେ ବିଦେଶ ବିଶେଷତଃ ୟୁରୋପର ବିଭିନ୍ନ ଅଞ୍ଚଳରୁ ଆସି ସେଠାରେ ମିଶାମିଶି ଜାତି ସୃଷ୍ଟି କରି ବସବାସ କରିଥିବାରୁ ସେମାନଙ୍କ ଧମନୀରେ କେଉଁ ପୁରାତନ ଦେଶବାସୀଙ୍କ ରକ୍ତ ପ୍ରବାହିତ ହୁଏ, ତାହା ସେମାନେ ଜାଣନ୍ତି ନାହିଁ ।"(ଆମେରିକାର ତତ୍‌କାଳୀନ ଲୋକଚରିତ୍ର -ପୃ.୨୮୮)

'ଭେଷଜ ତାଲିମ୍ ଓ ରକ୍ତଲେଇ' ଶୀର୍ଷକ ଅଧ୍ୟାୟଟିରେ ରକ୍ତଲେଇ ବିଭୀଷିକାର ଯେଉଁ ଅନୁଭୂତିମୂଳକ ଆଲେଖ୍ୟଟି ଦେଇଛନ୍ତି, ତାହା ସେ ସମୟର ଚର୍ଚ୍ଚିତ ଘଟଣା ଓ ସମାଜରେ କିପରି ଘୋର କୁ-ସଂସ୍କାରର ପ୍ରଭାବ ଥିଲା, ତାହା ସୁସ୍ପଷ୍ଟ ହୋଇଛି। "ମେଡ଼ିକାଲ କଲେଜ ପରିସରଟା ତମ୍ବୁରେ ଭର୍ତ୍ତି ହୋଇ ଏକ ସୈନ୍ୟଛାଉଣୀ ପରି ଦେଖାଯାଉଥିଲା। ଶୃଙ୍ଖଳାରକ୍ଷା ପାଇଁ ଏକ ଅସ୍ଥାୟୀ ପୋଲିସ୍ ଥାନା ଖୋଲିଥିଲା। ୱାରଲେସ୍ ସାହାଯ୍ୟରେ ଅନୁଗୁଳ ଆଡୁ ଭୟାବହ ଖବର ସବୁ ଆସି ପହଞ୍ଚୁଥିଲା। ଅନୁଗୁଳଠାରେ କଟକ ପର୍ଯ୍ୟନ୍ତ ରାସ୍ତାରେ ସ୍ଥାନେ ସ୍ଥାନେ ରୋଗୀଙ୍କ ଶବସବୁ ପଡ଼ି ରହି ଦୁର୍ଗନ୍ଧମୟ ପରିବେଶ ସୃଷ୍ଟି କରୁଥିଲା।(ପୃଷ୍ଠା -୨୩୫)

କ୍ଷମତା ରାଜନୀତିଠାରୁ ଦୂରେଇ ରହି ଜନସେବାରେ ବ୍ରତୀ ଥିଲେ ଡାକ୍ତର ଦାସ। 'ଜନ୍ମ ନିରୋଧ ବିଭ୍ରାଟ', 'ଚିକିତ୍ସକ ଓ ରୋଗୀଙ୍କ ପୁଣ୍ୟ ସଂପର୍କ' ଆଦିରେ ଡାକ୍ତରୀ ଜୀବନର କଥା ପ୍ରକାଶ ପାଇଛି। କ୍ଷମତା ରାଜନୀତିରୁ ଦୂରରେ ରହିଥିଲେ ମଧ୍ୟ ଏ ସଂପର୍କରେ ସ୍ରଷ୍ଟା ଥିଲେ ସଂପୂର୍ଣ୍ଣ ସଚେତନ। ପୁସ୍ତକରେ ମଧ୍ୟ ରହିଛି ନିଜ ସାହିତ୍ୟ ସାଧନା ସଂପର୍କରେ ସୂଚନା। 'କାଳ ରୀତି ଓ ଗତି', 'ସବାରୀ ଓ ବଳଦଗାଡ଼ିର ସ୍ମୃତି', 'ସେକାଳର ସାଇକେଲ ଓ ମୋଟର ଚଢ଼ା', 'ଘୋଡ଼ା ଓ ଘୋଡ଼ାଗାଡ଼ି'ରେ ଲେଖକଙ୍କ ତୁଳନାତ୍ମକ ବିଚାର ବେଶ୍ ପ୍ରଭାବଶାଳୀ।

ଅନୁଭୂତି ଓ ଅନ୍ୱେଷଣକୁ ଆଧାର କରି ସ୍ରଷ୍ଟାଙ୍କ ସାରସ୍ୱତ ଜୟଯାତ୍ରା। ସାହିତ୍ୟ ପ୍ରତି ଗଭୀର ଅନୁରାଗ ହିଁ ଏହି ଜୟଯାତ୍ରାକୁ ଦେଇଛି ସଫଳତାର ସ୍ୱର୍ଣ୍ଣିମ ସ୍ପର୍ଶ।

ସାଧାରଣ ସଂପାଦକ
ଉତ୍କଳ ସାହିତ୍ୟ ସମାଜ

# ମୁଖବନ୍ଧ

ପ୍ରଫେସର ଡାକ୍ତର ବିକ୍ରମ ଦାଶ ପଣ୍ଡିତ ନୀଳକଣ୍ଠ ଦାସଙ୍କର କନିଷ୍ଠ ପୁତ୍ର, ଆଂଶିକ ଭାବେ ତାଙ୍କ ସାଂସ୍କୃତିକ ଉତ୍ତରାଧିକାରୀ। 'ସାତ ତିରିକି ସତର' ଗଳ୍ପ ସଞ୍ଚୟନରେ ସେ ପ୍ରମାଣ ଦେଇଛନ୍ତି। ବୃତ୍ତି ପ୍ରତିକୂଳ। କିନ୍ତୁ ପ୍ରତିଭା ବାଧାବିଘ୍ନ ବା ପ୍ରତିକୂଳ ପରିସ୍ଥିତି ପ୍ରତି ଭ୍ରୂକ୍ଷେପ ନ କରି ଫୁଟି ଉଠେ। ବଙ୍ଗଳାରେ 'ବନଫୁଲ' ଓଡ଼ିଆରେ କୁନ୍ତଳା କୁମାରୀ ତା'ର ଦୃଷ୍ଟାନ୍ତ। ଛାତ୍ର ଜୀବନରେ ଶ୍ରୀ ବିକ୍ରମ ଦାସଙ୍କ ରଚନା ମଧ୍ୟେମଧ୍ୟେ ମାସିକ 'ନବ ଭାରତ' ପତ୍ରିକାରେ ପ୍ରକାଶ ପାଉଥିଲା। ଏହା ସାମୟିକ ସ୍ଫୁରଣ ମାତ୍ର ଥିଲା। ଏଥିରେ ନଥିଲା ଆନ୍ତରିକତା, ନିଷ୍ଠା ବା ଆତ୍ମପ୍ରତ୍ୟୟ। ପ୍ରତିଭା କେଉଁ ଧାରାରେ ବୋହିବ, ପ୍ରତିଷ୍ଠା ପାଇବ, ସେତେବେଳେ କଳନାରେ ଆଣି ହେଉ ନଥିଲା। 'ସାତ ତିରିକି ସତର' ଗଳ୍ପ ସଞ୍ଚୟକ ଏବେ ସବୁ ସ୍ପଷ୍ଟ କରି ଦେଇଛି। ଜୀବନର ଆଲେଖ୍ୟ ଅଙ୍କନରେ ଏହି ସଞ୍ଚୟନ ଏକ ଦୃଢ଼ ପଦକ୍ଷେପ, ସ୍ୱାତନ୍ତ୍ର୍ୟ ଚିହ୍ନିତ। ଏହା ଅନୁଭୂତିରେ ଯେପରି ଜୀବନ୍ତ, ହାସ୍ୟରସରେ ସେହିପରି ଉଜ୍ଜ୍ୱଳ ଓ ବ୍ୟଙ୍ଗରେ ସେହିପରି ଶାଣିତ। ବିକ୍ରମ ଯେ ସୁରସିକ, ଏହାର ପ୍ରମାଣ ପଦେ ପଦେ।

ଏହି ପୁସ୍ତିକାଟି ମାତ୍ର ଆଠ ଗୋଟି ସତ୍ୟମୂଳକ କ୍ଷୁଦ୍ର ଗଳ୍ପର ସମାହାର। ଲେଖକଙ୍କର ପ୍ରଥମ ପ୍ରୟାସ ହେଲେ ହେଁ ସାଧନା ପଛେ ପଛେ ସିଦ୍ଧି ଗତି କରି ଚାଲିଛି। କ୍ଲିନିକ୍‌ରେ ସେଗୁଡ଼ିକର ଜନ୍ମ, ରୋଗୀ ଚିକିତ୍ସାର ମଧ୍ୟେମଧ୍ୟେ ବିକ୍ରମଙ୍କର ବାଣୀ ପୂଜା। ନାଡ଼ି ଚିପୁଚିପୁ ଛାତି ପରଖୁ ପରଖୁ ସେ ଜୀବନ ନାଟୀ ପରଖୁଥାନ୍ତି, ମଣିଷର ମର୍ମ ଭିତରେ ପଶିଥାନ୍ତି। ପଲ୍ଲୀ ଜୀବନର ଚିତ୍ରଣରେ ସ୍ମୃତି ହିଁ ତାଙ୍କର ସମ୍ବଳ। ସେ ତାଙ୍କର ବିବିଧ ପ୍ରୟାସରେ ଉତ୍ତୋରୀର୍ଣ୍ଣ ହୋଇଛନ୍ତି। ତାଙ୍କ ଭବିଷ୍ୟତ ଯେ ଉଜ୍ଜ୍ୱଳ ବର୍ତ୍ତମାନ ରଚନା ସେହି ଭରସା ଦେଇଥାଏ।

**ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାସ, ପିଏଚ୍.ଡି.**
**ସଭାପତି, ଉତ୍କଳ ସାହିତ୍ୟ ସମାଜ**

# ''ମଣିମାଡ଼ିହ'' ଉପନ୍ୟାସ ଉପରେ

## ଉତ୍କଳ ଲବ୍‌ଧପ୍ରତିଷ୍ଠ ଔପନ୍ୟାସିକ ଶ୍ରୀ କାହ୍ନୁଚରଣ ମହାନ୍ତିଙ୍କ କଲମରୁ

ମଣିମାଡ଼ିହ ଉପନ୍ୟାସର ପାଣ୍ଡୁଲିପିଟି ପଢ଼ିବାର ସୁଯୋଗ ମୁଁ ପାଇଲି। ପଢ଼ିଲାବେଳେ ମୋର ମନେ ହେଉଥିଲା ସତେକି ଓଡ଼ିଆ ଉପନ୍ୟାସର ଜନ୍ମଦାତା ବ୍ୟାସକବି ଫକୀରମୋହନଙ୍କର ଅପ୍ରକାଶିତ ଆଉ ଗୋଟିଏ ଉପନ୍ୟାସ ପଢୁଛି କି ? ସାବଲୀଳ ଗ୍ରାମ୍ୟ-ଭାଷାରେ ଗ୍ରାମ୍ୟ ପ୍ରକୃତି, ଚରିତ୍ର, ପର୍ବପର୍ବାଣି, ରୀତିନୀତିର ନିଖୁଣ ଚିତ୍ର ଏହି ଉପନ୍ୟାସରେ ପ୍ରତିଫଳିତ ହୋଇଛି। ଚରିତ୍ରଗୁଡ଼ିକ ଐତିହାସିକ ରଙ୍ଗଭୂମି ଉପରେ ସେମାନଙ୍କର ଲୀଳାଖେଳା ଦେଖାଇ ଅନ୍ତର ହୋଇଛନ୍ତି। ସେମାନଙ୍କର ପାପ-ପୁଣ୍ୟ, ଧର୍ମ-ଅଧର୍ମ ସବୁ କର୍ମ ବିଲୀନ ହୋଇଛି ମହାକାଳର ବିସ୍ମୃତି ଗର୍ଭରେ। ଏବେଯାଏ ରହିଯାଇଛି କେବଳ ଟିକିଏ ଭୂଇଁ, ଅତୀତର ସ୍ମୃତି ହୋଇ - ଯାହା ଲୋକମୁଖରେ 'ମଣିମାଡିହ' ନାମରେ ପରିଚିତ।

କେତେ ଜାଣନ୍ତି-କେତେ ପୁଣି ଜାଣନ୍ତି ନାହିଁ ଯେ, ସେଇ ଭୂମି ଖଣ୍ଡକ ପୁଣ୍ୟ-ତୀର୍ଥ ସତ୍ୟବାଦୀ ସାକ୍ଷୀଗୋପାଳଙ୍କର ଚନ୍ଦନପୋଖରୀ ନିକଟରେ ଅବସ୍ଥିତ; ତାହା ଦିନେ ମଣିମାଙ୍କର ଆବାସ-ଭୂମି ଥିଲା। ପୁରୀର ଗଜପତି ମହାରାଜା ରାମଚନ୍ଦ୍ରଦେବ(୩ୟ)ଙ୍କର କନିଷ୍ଠ ପୁତ୍ର କଣାସ ଅଞ୍ଚଳର ସାମନ୍ତ ରାଜା ଥିଲେ। ସତ୍ୟବାଦୀ ସେଇ ଅଞ୍ଚଳର ଅନ୍ତର୍ଭୁକ୍ତ।

ତାଙ୍କର ମହାରାଣୀ ଥିଲେ ନିଃସନ୍ତାନ। ତାଙ୍କର ଜଣେ ସହଚରୀ ମନୋହରିଣୀର ଜଠରରୁ ଗୋପାଳଙ୍କର କଲ୍ୟାଣରୁ ଜନମି ଥିଲେ ଯେଉଁ ପୁତ୍ର ସେ ହିଁ ଥିଲେ ଗଜପତି ବଂଶର କଣାସ ଶାଖାର ଶେଷ ରାଜା। ସେ ଥିଲେ ଗୋପାଳଙ୍କର ପରମଭକ୍ତ। ବାଲ୍ୟକାଳରୁ ବୃଦ୍ଧ ହୋଇ ଶେଷ ନିଃଶ୍ୱାସ ଛାଡ଼ିବା ଯାଏ ସେହି 'ମଣିମା' ଗୋପାଳଙ୍କର ସେବା-ପୂଜାରେ ନିଜକୁ ନିୟୋଜିତ କରିଥିଲେ। ସେ ମଧ୍ୟ ନିଃସନ୍ତାନ ଥିଲେ। ଗଜପତିଙ୍କର ସତ୍ୟବାଦୀ ଶାଖା ବିଲୁପ୍ତ ହେଲା ତାଙ୍କରି ତିରୋଧାନରେ। ଅତି ଦୁଃଖରେ

ସେ ସଂସାର ଚଳାଉଥିଲେ। ଅଣ୍ଟା ନଇଁଥିଲା, କିନ୍ତୁ ମୁଣ୍ଡ ନଇଁ ନଥିଲା; ସମ୍ମାନ କମି ନଥିଲା। ସ୍ନେହ ଓ ଉଦାରତାର ସେ ଥିଲେ ଚଳନ୍ତି ପ୍ରତିମା।

ସମସ୍ତଙ୍କୁ ସେ ବଂଶ ବିଶ୍ୱାସ କରୁଥିଲେ। ବନ୍ଧୁରୂପୀ ଜଣେ କୁ-ଚକ୍ରୀ ପ୍ରବଞ୍ଚକ ଚକ୍ରାନ୍ତରେ ଗୋପାଳପ୍ରାଣ, ସହଜବିଶ୍ୱାସୀ 'ପୂର୍ବ ରାଜା' ଚଳନ୍ତି ଓ ଅଚଳନ୍ତି ପ୍ରାୟ ସମସ୍ତ ଧନ-ସମ୍ପତ୍ତି ହରାଇଥିଲେ। ସେ ନିଜେ ମସୀଜୀବୀ ହୋଇ ଯତ୍‌ସାମାନ୍ୟ ଅର୍ଜନ କରି ଖର୍ଚ୍ଚ ଚଳାଉଥିଲେ। ତଥାପି ସେ ସେହି ବିଶ୍ୱାସଘାତକ ବଂଶ ପ୍ରତି ମନରେ ଆକ୍ରୋଶ ଭାବ ଜନ୍ମାଇନଥିଲେ, ପ୍ରତିହିଂସା ପରାୟଣ ହୋଇ ନଥିଲେ; ବରଂ ସେହି କୁଚକ୍ରୀର ଚରିତ୍ରହୀନ କୁଳାଙ୍ଗାର ପୁତ୍ରକୁ ନିଶ୍ଚିତ କାରାଗାରର ଦ୍ୱାରଦେଶରୁ ଫେରାଇ ଆଣିଥିଲେ। ତାଙ୍କର ଉଦାରତା ସତ୍ତ୍ୱେ ସେହି କୁଚକ୍ରୀର ବଂଶରେ କେହି ରହିଲେ ନାହିଁ। ବିଚିତ୍ର କାଳର ଲୀଳା ! ରଘୁପତି ନାହାନ୍ତି, ରାବଣ ବି ନାହିଁ-କିନ୍ତୁ ସେମାନଙ୍କର କୀର୍ତ୍ତି-ଅପକୀର୍ତ୍ତି ଗାଥା ଜୀବନ୍ତ ରହିଛି। ମହାପ୍ରତାପୀ ଗଜପତି ବଂଶର ସତ୍ୟବାଦୀ ଶାଖାର ଶେଷ ଦାୟାଦ 'ମଣିମା' '' ଦିନେ ଥିଲେ'' ପର୍ଯ୍ୟାୟଭୁକ୍ତ ହୋଇଛନ୍ତି। କିନ୍ତୁ ତାଙ୍କର ଡିହଟି ଅଛି, ଯାହା ଅଦୂର-ଅତୀତରେ କେବଳ ମଣିଷ ନୁହେଁ, ପଶୁ-ପକ୍ଷୀଙ୍କର ମଧ୍ୟ ରଙ୍ଗଭୂମି ଥିଲା। ସବୁର ସମାବେଶ ହୋଇଛି 'ମଣିମାଡିହ' ଉପନ୍ୟାସରେ। ତାହା କୁଶଳୀ-ଶିଳ୍ପୀଙ୍କର ଲେଖନୀ ମୁନରେ ଜୀବନ୍ତ।

**କାହ୍ନୁଚରଣ ମହାନ୍ତି,**
**ରାଜାବଗିଚା, କଟକ**

# ବିପ୍ଳବୀ କବି ଶ୍ରୀ ମନମୋହନ ମିଶ୍ରଙ୍କ କଲମରୁ

# ମୁଖବନ୍ଧ

ଡାକ୍ତର ବିକ୍ରମ ଦାସଙ୍କ ଲିଖିତ 'ଅଲିଭା-ଇତିହାସ' ମୁଖବନ୍ଧ ଲୋଡେନାହିଁ। ଏଥିପୂର୍ବରୁ ତାଙ୍କର ଏକାଧିକ ଲେଖା ପ୍ରକାଶିତ ହୋଇସାରିଛି ଓ ମୁଁ ଯେତେଦୂର ଜାଣେ, ପାଠକ ଓ ସମୀକ୍ଷକମାନଙ୍କର ସଶ୍ରଦ୍ଧ ଅଭିନନ୍ଦନ ଲାଭକରିଛି। ଦ୍ୱିତୀୟରେ ଏହି ଉପନ୍ୟାସର ପୃଷ୍ଠା ଏପରି ଉଜ୍ଜ୍ୱଳ ଭାବରେ ବିଗତ ଭାରତୀୟ ସ୍ୱାଧୀନତା ସଂଗ୍ରାମର କାହାଣୀକୁ ଉପସ୍ଥାପିତ କରିଛି ଯେ, ତାହାକୁ ଆହୁରି ଫୋକସ୍‌ରେ ରଖିବା ପାଇଁ ଏକ ମୁଖବନ୍ଧର ଆବଶ୍ୟକତା ନାହିଁ।

ବିକ୍ରମ ଦାସଙ୍କର ବାଲ୍ୟକାଳ, କୈଶୋର ଓ ପ୍ରଥମ ଯୌବନ ପ୍ରତ୍ୟକ୍ଷ ରାଜନୈତିକ ସଂଗ୍ରାମ ଭିତରେ ହିଁ ଗଢ଼ିଉଠିଥିଲା। ବାରମ୍ବାର ସେହି ସଂଗ୍ରାମର ନିଆଁର ଝାସ ତାଙ୍କ ଦେହରେ ଲାଗିଛି। ସେହି କାରଣରୁ 'ଅଲିଭା ଇତିହାସ' ଭଳି ଏକ କାହାଣୀ ଲିପିବଦ୍ଧ କରିବା ପାଇଁ ତାଙ୍କର ଆଗ୍ରହ, ବ୍ୟାକୁଳତା ଏହି ବହିଟିର ପୃଷ୍ଠା ଅନୁରଞ୍ଜିତ କରିଛି।

ଶ୍ରଦ୍ଧେୟ ବିକ୍ରମ ଜଣେ ଡାକ୍ତର। ଚିକିତ୍ସକମାନଙ୍କ ଭିତରେ ସୃଜନଶୀଳ ସାହିତ୍ୟ ସୃଷ୍ଟି ବିସ୍ମୟକର ହେଲେ ମଧ୍ୟ ବିରଳ ନୁହେଁ। ଚିକିତ୍ସକର ଅନୁସନ୍ଧାନ, ନିଦାନ ସଂଗ୍ରହ, ନିଷ୍ଠା ଓ ଅନ୍ତରଙ୍ଗ ନିରୀକ୍ଷା ବା ଡାଏଗୋନିସିସ୍ ଏହି ବହିଟିକୁ ଏକ ସତେଜତା ଓ ମାର୍ମିକତାରେ ଅଭିଷିକ୍ତ କରିଛି। ତେବେ ଗୋଟିଏ ବିଶେଷତ୍ୱ; ତାଙ୍କର ଲିଖିତ, ପ୍ରକାଶିତ 'ସାତ୍ ତିରିକି ସତର୍' ଗଳ୍ପ ସମାହାର ଓ ତାଙ୍କର 'ମଣିମାଡିହ' ସାମାଜିକ ଓ ଐତିହାସିକ ଆଲେଖ୍ୟରେ ଯେଭଳି ଗ୍ରାମୀଣ ଜୀବନଯାତ୍ରାର ଶାଣିତ ଓ ଦରଦୀ ଚିତ୍ରଣ ରହିଛି, ଏହି 'ଅଲିଭା ଇତିହାସ'ରେ ମଧ୍ୟ ତାହାର ସ୍ନିଗ୍ଧ ମଧୁର ଛାୟା ପଡ଼ିଛି।

ଡାକ୍ତର ବିକ୍ରମ ହୁଏତ ଓଡ଼ିଶାର ବହୁ ସାଂପ୍ରତିକ କାଳର ଶିକ୍ଷିତ ବୁଦ୍ଧିଜୀବୀମାନଙ୍କ ଭଳି ମଫସଲରେ ଜନ୍ମିଛନ୍ତି। ଅନ୍ୟାନ୍ୟ ସହସ୍ର ବୁଦ୍ଧିଜୀବୀ ଓ ବୈଷୟିକ ବୃତ୍ତିଧାରୀଙ୍କ ଭଳି ସେ ଗାଁ ଗହଳି ଛାଡ଼ି ସହରରେ ଆପଣାର କର୍ମକ୍ଷେତ୍ର ନିର୍ମାଣ କରିଛନ୍ତି। ତେବେ ତାଙ୍କର ବିଶେଷତ୍ୱ ଏହିଠାରେ ଯେ, ଗ୍ରାମ୍ୟ ଜୀବନର ପ୍ରତ୍ୟେକ ଅଣୁ ପରମାଣୁ ସହିତ ସେ ତାଙ୍କର ହାସ୍ୟରସିକ ଓ ଅନୁଭବ ପିପାସୀ ମନକୁ ସଂଯୁକ୍ତ ରଖିଛନ୍ତି। ତାଙ୍କର ଚରିତ୍ର, କାହାଣୀ, ଉଦାହରଣ, ଉପମା ଦୃଷ୍ଟିକୋଣରେ ଯେଉଁ ପ୍ରସନ୍ନ ନିରାମିସ ଉପହାସ ରହିଛି ଓ ସମାଜର କଳଙ୍କମାନଙ୍କ ପ୍ରତି ଯେଉଁ କଟାକ୍ଷ ରହିଛି, ତାହା ସବୁ ଗ୍ରାମୀଣ ଓଡ଼ିଶାର ମାଟି ଓ ପାଣି ପବନ ଭିତରୁ ହିଁ ଅଙ୍କୁରିତ ଓ ଲାଳିତପାଳିତ।



ସାରସ୍ୱତ ସାଧକ ଡାକ୍ତର ବିକ୍ରମ ଦାସ

ଫକୀରମୋହନ, ନନ୍ଦକିଶୋରଙ୍କ ଯୁଗ ପରେ ଓଡ଼ିଆ ଲେଖାରେ ଗ୍ରାମୀଣ ଜୀବନର ବାତାବରଣ ଏପରି ଦମ୍ଭିଲା ଭାବରେ ଓଡ଼ିଆ ଉପନ୍ୟାସକୁ ଆଚ୍ଛାଦିତ କରିଥିବାର ବହି ପଢ଼ିଥିବାର ମୋର ସ୍ମରଣ ହେଉନାହିଁ। ଉଦାହରଣସ୍ୱରୂପ ମାଟିବଂଶ ଅବଧାନଙ୍କର ସେକାଳର ଶିକ୍ଷକ ବୃତ୍ତି ବିଷୟରେ ତାଙ୍କର ସୂଚନା ପାଠକ ମନରେ ଫକୀରମୋହନ, ନୀଳକଣ୍ଠ, ଗୋଦାବରୀଶଙ୍କର ଆତ୍ମ ଜୀବନୀକୁ ମନେ ପକାଇଦିଏ, ଯଦିଚ ସେଇ ବର୍ଣ୍ଣନାର ଅନୁଭୂତି ତାହାଙ୍କର ଏକାନ୍ତ ନିଜସ୍ୱ।

ଗାଁ ଗହଳ ଭିତରେ ଭାରତର ମୁକ୍ତି ଆନ୍ଦୋଳନ, ଉତ୍କଳଭୂମିର ଏକୀକରଣର ବାତାବରଣ ଭିତରେ ଗାଁ ଗହଳର ନିରୀହ ଜଞ୍ଜାଳି ମଣିଷ, ଜମିଦାର ସାଆନ୍ତ, ଅର୍ଦ୍ଧଶିକ୍ଷିତ, ଉଚ୍ଚାଭିଳାଷୀ, ଅଧା ନେତା-

ଅଧା ଟାଉଟର ଇତ୍ୟାଦିଙ୍କର ପ୍ରବେଶ, ମନେ ହୁଏ ଯେପରି ସମସ୍ତ ବାତାବରଣ ଭିତରେ ଗାଁର ଧୂଳିମାଟି, ଶ୍ୟାମଳିମା, ରୁକ୍ଷତା, ଦୈନ୍ୟ, କରୁଣ, ଜୀବନରକ୍ଷା, ଚତୁର ଶୃଗାଳ ବୁଦ୍ଧି ଦ୍ୱାରା ପଶ୍ଚାତ୍‌ପଦ କୁସଂସ୍କାର-ଜଡ଼ିତ ସରଳ ଗ୍ରାମବାସୀଙ୍କୁ ପ୍ରଲୋଭନ ଇତ୍ୟାଦି ଇତ୍ୟାଦି ଏବେ ଆଉ ମୁଦ୍ରିତ ପୃଷ୍ଠାରେ ମିଳିବ ନାହିଁ। ତାହାକୁ ସାବଲୀଳ, ରଙ୍ଗୁ ଭାଷାରେ ଅନୁଭବର ଅନୁରଞ୍ଜନ ଦେଇ ଲେଖିବାର ଅଭିଜ୍ଞତା ଓ ସ୍ପୃହା କ୍ରମେ ବିରଳ ହୋଇଯିବ। ଏହି ଦିଗରେ ବିକ୍ରମ ଦାସଙ୍କର ଏହି ରଚନା ଓଡ଼ିଆ ସାହିତ୍ୟର ଏକ ଉଜ୍ଜ୍ୱଳ ଦୀପସ୍ତମ୍ଭ ଭଳି କାର୍ଯ୍ୟ କରିବ।

ଭାରତର ଜାତୀୟ ଆନ୍ଦୋଳନର ମହାନାୟକମାନେ ଗାଁ ଗହଳର ଲୋକ ନଥିଲେ। ସେମାନେ ଥିଲେ ଭାରତରେ ବ୍ରିଟିଶ ଶାସନର ଆଧୁନିକତାର ଅବତାରୀ, ସହରର ସନ୍ତାନ। ସେମାନେ ଥିଲେ ସ୍ୱଚ୍ଛଳ ଉଚ୍ଚ-ମଧ୍ୟବିତ୍ତ ବିଭବଶାଳୀ ପରିବାରର ଦାୟାଦ। ଭାରତୀୟ ବିଭିନ୍ନ ଭାଷା- ସାହିତ୍ୟରେ ସ୍ୱାଧୀନତା ଆନ୍ଦୋଳନର ଐତିହାସିକ ପଟ୍ଟଭୂମି ଉପରେ ଚିତ୍ରିତ ସାମାଜିକ ଉପନ୍ୟାସ-କାହାଣୀର ନାୟକ କିମ୍ବା ପ୍ରତି-ନାୟକମାନେ ତେଣୁ ଏହି ଉଚ୍ଚ ଶ୍ରେଣୀର ପ୍ରତିଭୂ। 'ଅଲିଭା ଇତିହାସ' କିନ୍ତୁ ଏଥିରେ ଏକ ଚେତନାଶୀଳ ବ୍ୟତିକ୍ରମ। ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ କ୍ଷତବିକ୍ଷତ ହୋଇଛନ୍ତି, ସର୍ବସ୍ୱ ହାରିଛନ୍ତି ଓ ଆତ୍ମ ବଳିଦାନ ଦେଇଛନ୍ତି, କିନ୍ତୁ ତାହାର ଫଳ ଭୋଗ କରିନାହାନ୍ତି, ସେହି ସାଧାରଣ ହଜାର ହଜାର ଜନତାର ପ୍ରତିନିଧି ମାଟିର ମଣିଷ ଏଇଠାରେ ଆପଣାର ଅବିସ୍ମରଣୀୟ ସ୍ୱାକ୍ଷର ଲେଖିଛନ୍ତି। ସେମାନଙ୍କର ଅତି ସାଧାରଣତା ହିଁ ଏଠାରେ ସେମାନଙ୍କୁ ଅସାମାନ୍ୟ କରିତୋଳିଛି।

ପିଲାଦିନର ବହୁ କଥା ଏହି ବହି ପଢ଼ିଲେ ମନେ ପଡୁଛି। ଯେଉଁ କଥାଗୁଡ଼ିକ ପରେ ଆଲୋଚନା କଲେ ବା ଭୁକ୍ତଭୋଗୀ ମେଳରେ ସ୍ମରଣ କଲେ ବହୁ ହସବୃଷ୍ଟି ହୁଏ। ମନ ହାଲୁକା ହୋଇଯାଏ। ଡାକ୍ତର ବିକ୍ରମ ଠିକ୍ ମନସ୍ତତ୍ତ୍ୱବାଦୀ ଡାକ୍ତର ଭାବରେ ସେମାନଙ୍କ ପାଇଁ ବିଶ୍ରମ୍ଭ ସ୍ମୃତିର ଖୋରାକ ଯୋଗାଇଛନ୍ତି। 'ଅଲିଭା ଇତିହାସର' କନୀୟାନ(ଜୁନିଅର)

ନାୟକ ପାଟଣା କ୍ୟାମ୍ପ ଜେଲରେ ଆପଣାର ଲକ୍ଷ୍ମଣ ପ୍ରତୀମ ସାନ ଭାଇ ଓ କିଶୋର ସୁଲଭ ସରଳ ସ୍ୱପ୍ନକୁ ହରାଇ ଯେତେବେଳେ ନୂତନ ସାଥୀ ଓ ନୂତନ ତତ୍ତ୍ୱଦର୍ଶନ ପାଇଁ କଟକ ସହରରେ ସନ୍ଧାନୀ ହେଲା, ସେତିକିବେଳେ ଜୀବନସଂଗ୍ରାମ, ବୁଭୁକ୍ଷା, ଆଶା, ନିରାଶା ଭିତରେ କଠୋର ଆତ୍ମ ବିଶ୍ୱାସ ଓ ଉଜ୍ଜ୍ୱଳ ପୁରୋଦୃଷ୍ଟି, ସେତେବେଳର ମେସ୍ ଜୀବନ, ଟ୍ୟୁସନ, ରାଜନୀତିର ପହିଲି ପାଠ ଇତ୍ୟାଦିର ବର୍ଣ୍ଣନା ପଢ଼ିଲାବେଳେ ମୋର ମନେ ହୋଇଥିଲା ଯେ ସେପରି ଜୀବନ, ଯାହା ମୋର ଓ ମୋର ଅଗ୍ରଜ ଓ ସମସାମୟିକଙ୍କର, ସାମୁହିକ ଓ ବ୍ୟକ୍ତିଗତ ଜୀବନର ଅତୀତରେ ଭାଗ୍ୟଦଶା ଥିଲା ତାହା ଆମେ ସମସ୍ତେ ଏପରି ଭାବରେ ଲିଖିତ ଭାବରେ ଆଉଥରେ ସେହି ବିଗତ ଅପହୃତ କୈଶୋର ଓ ଯୌବନକୁ ଦେଖିପାରନ୍ତୁ କି ? ଆଜି ସେହି ଅଗ୍ରଜ ଓ ସମସାମୟିକ ସହଯାତ୍ରୀ ସହକର୍ମୀ ଭିତରୁ ଅନେକ ସ୍ୱର୍ଗତ, ଅନେକ ସେ ପଥର ଯାତ୍ରୀ ।

ବିଶାଳ ସଂଖ୍ୟା ବହୁଳ, ବହୁ ବିଭିନ୍ନତା ଓ ଏକତାର ଗନ୍ତାଘର ଭାରତ ପରି ଦେଶର ପ୍ରାୟ ୬୦ ବର୍ଷର ସ୍ୱାଧୀନତା ଆନ୍ଦୋଳନର ଆଲେଖ୍ୟ, ଅନନ୍ତ ଆକାଶର ପ୍ରତିବିମ୍ବ ଗୋଟିଏ ଶିଶିର ବିନ୍ଦୁ ଉପରେ ପ୍ରତିଫଳିତ ହେଲେ ତାହାର ଛବି ଯେପରି ହୁଅନ୍ତା, ସେହିପରି ଏକ ଛବି ଏହି 'ଅଲିଭା ଇତିହାସ' । ସ୍ୱାଧୀନତା ଆନ୍ଦୋଳନରେ ଅଧିକାଂଶ ଭାରତୀୟ ଥିଲେ ବୀତସ୍ପୃହ । କେତେକ ଥିଲେ ତଟସ୍ଥ । ତେଣୁ କାତର କେତେକ ଆନ୍ଦୋଳନ ଭିତରେ ଆଦର୍ଶ ଓ ସ୍ୱାର୍ଥତ୍ୟାଗର ଜ୍ୱଳନ୍ତ ନିଷ୍ଠାରେ ଜୀବନର ସମସ୍ତ ଜଳାଞ୍ଜଳି ଦେଇ ଯେତେବେଳେ ସ୍ୱାର୍ଥପରତା ଓ ସଂକୀର୍ଣ୍ଣତାର କଳଙ୍କିତ ପଥ ଦେଖିବାକୁ ପାଇଥିଲେ, ସେତେବେଳେ ସେମାନେ ଦେଶମାତୃକାର ସେବା ପାଇଁ ଭିନ୍ନ ପଥର ଅନୁସାରୀ ହେଲେ । କେତେକ ଥିଲେ ନିରାଲମ୍ବ ସାଧକ । ଚନ୍ଦ୍ରଭାଗାର ଆବିଳ ଜଳ ସତ୍ତ୍ୱେ ସେଥିରେ ସ୍ନାନ କରି ସ୍ନାନାର୍ଥୀ ଯେପରି ଆପଣାଙ୍କୁ ସୂଚୀମନ୍ତ ମନେ କରିବାକୁ ଶିଖେ, ସେହିପରି ଭାବରେ ସେମାନେ ଆପଣାର ଜୀବନର ଧ୍ରୁବତାରା ଭାବରେ ଯେଉଁ ଦୃଷ୍ଟିକୋଣକୁ ଧରିରଖିଲେ, ତାହାକୁ ଆଉଥରେ ପରୀକ୍ଷା କରିବାକୁ ନୀତିଦ୍ରୋହିତା ବୋଲି ଜ୍ଞାନ କରୁଥିଲେ । ଆଉ ଯେଉଁମାନେ ତାରୁଣ୍ୟର ଉଦାମତାରେ ଆନ୍ଦୋଳନର ଅଚରିତ ପନ୍ଥାରେ ସଫଳତା ବିଷୟରେ ସନ୍ଦିଗ୍ଧ ହୋଇ ନୂତନ ପଥ ଓ ଦିଗ୍‌ଦର୍ଶନର ପିପାସୀ ଥିଲେ, ସେମାନେ ଥିଲେ ଆଉ ଏକ ଗୋଷ୍ଠୀର । ଏହି ସମସ୍ତଙ୍କ ଛଡ଼ା ଥିଲେ ନୀତି ଟାଉଟର ଶ୍ରେଣୀ, ସ୍ୱାର୍ଥାନ୍ୱେଷୀ ମୁଷ୍ଟିମେୟ ଲୋକ ଯେଉଁମାନେ ଆପଣାଙ୍କୁ ବିଲାତ ପାଖରେ ବିକ୍ରି କରିଦେଇଥିଲେ; ତାହାର ଗୋଲାମୀ ଓ ଗୋଏନ୍ଦା ଗିରି କରିବା ହେଲା ସେମାନଙ୍କର ବ୍ୟବସାୟ । ଅହିଂସାବାଦୀ ସାଧକ ଭିକାରୀ ବାବୁ, ଶିକ୍ଷକ, ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ; କାରାବରଣ ପରେ ଆନ୍ଦୋଳନର ଭଟ୍ଟା ଥିବା ସତ୍ତ୍ୱେ ଏକନିଷ୍ଠ ଭାବରେ ଜନସାଧାରଣଙ୍କ ଗହଣରେ ଆପଣାର ସାଧନାର ସୌରଭ ବିକିରଣ କରିଚାଲିଛନ୍ତି । କାରାବାସରେ ନିଜ ପତ୍ନୀଙ୍କୁ ହରାଇଛନ୍ତି । କନିଷ୍ଠ ପୁତ୍ର ସେହି କାରାଗାରରେ

ରୋଗ ଯନ୍ତ୍ରଣାରେ ଇହଲୋକରୁ ବିଦାୟ ନେଇଛନ୍ତି। ସଂସାର ସହିତ ଏକମାତ୍ର ସମ୍ବନ୍ଧସୂତ୍ର ପୁଅ ନବକୁମାର, ଦୁରହ, ଦୁର୍ଗମ, ନୂତନମାର୍ଗ ଅନ୍ୱେଷଣରେ ଚାଲିଛି।

ଏହିଠାରେ ପିତା-ପୁତ୍ର ଭିତରେ ଯେଉଁ ମର୍ମସ୍ପର୍ଶୀ ଅଦର୍ଶ ସଙ୍କଟର ଅବତାରଣା କରାଯାଇଛି। ତାହା ହେଉଛି ପ୍ରତ୍ୟେକ ଗଣଆନ୍ଦୋଳନର ଦୁଇପୁରଷର ସଂମ୍ପର୍କ ଭିତରେ ଏକ ଅଲଘଂନୀୟ ସମସ୍ୟା। ଭାରତୀୟ ସାହିତ୍ୟରେ ବଙ୍ଗଳା, ମରାଠି, ଗୁଜୁରାଟି ଇତ୍ୟାଦି ବିଭିନ୍ନ ଭାଷାରେ ଏହି ଜୀବନ-ଦ୍ୱନ୍ଦ୍ୱର ଉଦାହରଣ ବହୁ ଘଟଣାରେ ଏକ ଅବିସ୍ମରଣୀୟ ସ୍ଥାନ ଅଧିକାର କରିଛି। ଲେଖକ ଏହି ପୁସ୍ତକରେ ସେହି ଦୁଇ ପିଢ଼ିର, ଦୁଇ ଚିନ୍ତାଧାରା ସଂପର୍କକୁ କରୁଣାମୟ ସହାନୁଭୂତି ଓ ସଂଯମ ସହିତ ଚିତ୍ରଣ କରିଛନ୍ତି। ଏହି ଇତିହାସ ମଞ୍ଚର ଯବନିକାରେ ସରଳ ଗ୍ରାମ୍ୟ ବାଳିକା ପୁତ୍ରବଧୂ ଯେଉଁଭଳି ଜୀବନ ସଂଗ୍ରାମର ଦୁର୍ଭୋଗ ଓ କଷାଘାତକୁ ନୀରବ ସାହାସ ଓ ସହିଷ୍ଣୁତା ସହିତ ସମ୍ମୁଖୀନ ହୋଇଛି, ଶ୍ୱଶୁରଙ୍କ ଦେହାବସାନରେ ତାଙ୍କର ସ୍ଥାନ ପୂରଣ କରିଛି ଓ ଶେଷରେ ଜାଣି ନହବତରେ ମୁକ୍ତି ଦୁନ୍ଦୁଭି ବାଜିବାବେଳେ ଆପଣାର ବହୁ ଆକାଙ୍‌କ୍ଷିତ ସ୍ୱାମୀଙ୍କର ଶେଷ ନିଃଶ୍ୱାସ ଆପଣାର ବକ୍ଷରେ ସମ୍ଭାଳିନେଇଛି, ତାହା ଏହି ଚିରତ୍ରଗୁଡିକର ମାନବୋଚିତ ମହିମା ପ୍ରକଟିତ କରୁଛି। ମୋଟ ଉପରେ ଏହି ବହି 'ଅତିଭା ଇତିହାସ' ଇତିହାସର ବୈଜ୍ଞାନିକ ରଚନା ସତ୍ୟ ସନ୍ଧାନ ଉପରେ ଆଧାରିତ ହୋଇଛି। ଏହାର ଲେଖକ, ରାଜା, ରାଣୀ, ସାମନ୍ତ ନବାବ ଓ ଉଚ୍ଚ ମଧ୍ୟବିତ୍ତଙ୍କର ସୋଭାଯାତ୍ରକ ଶୋଭାଯାତ୍ରାକୁ ଇତିହାସ ବୋଲି ଗ୍ରହଣ ନକରି, ସାଧାରଣ ଜନତାର ନିରନ୍ନ, ଦୈନ୍ୟତାଡିତ ପ୍ରତିନିଧିଙ୍କୁ ଇତିହାସର ବିଧାତା ଭାବରେ ଗ୍ରହଣ କରିଛନ୍ତି। ତାଙ୍କର ଉପନ୍ୟାସ(ଜବାହାରଲାଲ ନେହେରୁଙ୍କ ଠାରୁ ଏ. ଟଏନବିଙ୍କ ଯାଏଁ ବର୍ତ୍ତମାନ ସ୍ୱୀକୃତି ଓ ଗୃହୀତ ପଦ୍ଧତିଦ୍ୱାରା, ସତ୍ୟାଶ୍ରିତ ଓ ବିଜ୍ଞାନସମ୍ମତ ହୋଇପାରିଛି। ଶେଷରେ ଏହା କ'ଣ ଜୀବନର ଏକ ଅଦ୍ଭୂତ ଯୋଗସୂତ୍ର ଯେ, ଏହି ପୁସ୍ତକ ମୁଖବନ୍ଧ ଲେଖିବାର ଭାର ମୋ ଉପରେ ପଡିଲା ? କାରଣ ଲେଖକ ଯେଉଁ ରଙ୍ଗଭୂମିରେ ତାଙ୍କର ନାୟକକୁ ଅତିକ୍ରମ କରାଇଛନ୍ତି, ସେହି ସମସ୍ତ ରଙ୍ଗ ଭୂମି ସହିତ ମୋର ପରିଚୟ ଏକାନ୍ତ ନିବିଡ। ବିଶେଷତଃ ଆସାମର ଚା ବଗିଚାର ଶ୍ରମିକ ମୁଲକ। ଭାରତରୁ ବିଟ୍ରିଶ ରାଜର ଅବସାନର ଠିକ୍ ପ୍ରାକ୍ କାଳରେ ୧୯୪୬ ମସିହାରେ, ବଙ୍ଗଳାଦେଶ ଓ ଆଶାମରେ ସୁରମ୍ୟ ଉପତ୍ୟାକା, ନାଜିରା, ତିନ୍‌ସୁକିଆର ଚାହା ବଗିଚାରେ ଯେଉଁ ହଜାର ହଜାର ଓଡିଶାର ଓଡିଆ ଅଦିବାସୀ ଓ ଛତିଶଗଡ କୁଲିମାନେ କାମ କରି ବଂଶ ପରମ୍ପରା କ୍ରମେ ସେଇ ମାଟିକି ଆଦରି ନେଇଛନ୍ତି, ତାଙ୍କରି ସଂଗଠନ ଗଢ଼ିବା ପାଇଁ ମୋତେ ସୁଯୋଗ ମିଳିଥିଲା। ସେତେବେଳେ ସେ ଥିଲା ଭିତର ଓ ବାହାର ଅନ୍ଧାରରେ ତମସାବୃତ ମୁଲକ ବିଲାତିରାଜ ଭିତରେଆଉ ଏକ ଗୋରା ସାହେବ ରାଜ। ସେଇଠାରେ ଚାହା ବାଗାନର ଜେନେରାଲ ମ୍ୟାନେଜରର ଦରମା ଓ ଅନ୍ୟାନ୍ୟ ଭତ୍ତା ଆସାମର ଲାଟର

ମୋଟପାରିଶ୍ରମିକର ଦୁଇ ଗୁଣ। ରେଳ ଷ୍ଟେସନ ଛାଡ଼ି ଚାହା ବଗିଚାର ଟ୍ରଲି ରାସ୍ତାରେ ତ୍ରିପୁରାର ପାହାଡ଼ଯାଏ ଲମ୍ବିଥିବା ଚାହା ବଗିଚା ଭିତରେ ରାସ୍ତାଘାଟ, ପାଣି ପବନ, ନିଶ୍ୱାସ ପ୍ରଶ୍ୱାସ ସବୁ ସାହେବ କମ୍ପାନୀର ଓ ତାହାର କର୍ତ୍ତା 'ମେରି ସାହେବ'ର। ସେହି ଦୁନିଆକୁ ସେତେବେଳେ ପ୍ରତ୍ୟକ୍ଷ ନକରି ମଧ୍ୟ ଶ୍ରଦ୍ଧେୟ ବିକ୍ରମ କିପରି ଯେ ତାହାର ଏପରି ବାସ୍ତବ ଜ୍ୱଳନ୍ତ ଚିତ୍ର ଦେଇପାରିଲେ ତାହା ମୋତେ ବିସ୍ମିତ କରିଛି। ଚାହା ବାଗାନର ସେହି ଗୋରା ସାହୁକାର-କମ୍ପାନୀ-ରାଜ ବିଷୟରେ ପୂର୍ଣ୍ଣାଙ୍ଗ ଚିତ୍ରର ଇତିହାସ ଏପର୍ଯ୍ୟନ୍ତ ଲେଖାହୋଇନାହିଁ।

ମୁଲକ ରାଜ ଆନନ୍ଦଙ୍କର 'ଦୁଇଟି ପତ୍ର ଓ ଗୋଟିଏ କଢ଼ି' (Two leaves and a bud) ତାହାର ଗୋଟିଏ ଛାତ୍ର ହିଁ ଉଦ୍‌ଘାଟନ କରିଛି। ଲେଖକ ବିକ୍ରମ ଦାସ ମଧ୍ୟ ସେହି ସଂସାରର ବୀଭତ୍ସ ନାରକୀୟ ଚିତ୍ର, ସେଠାରେ କୁମ୍ଭିପାକର ଶୋଷଣ, ଯେତିକି ତାଙ୍କର ଉପନ୍ୟାସ ଗଣ୍ଡିରେ ସମ୍ଭାଇବା ସମ୍ଭବ, ସେତିକି ଦେଇଛନ୍ତି। କିନ୍ତୁ ଯାହା ଆସିପାରିଛି ତାହା ତାଙ୍କର ଏକ ଶ୍ରେଷ୍ଠ ସାହିତ୍ୟିକ ଅବଦାନ।

ମହାକବି କାଳିଦାସ କେବେ ଆକାଶରୁ ପୃଥିବୀକୁ ଦେଖିନଥିଲେ। ତଥାପି ପୁଷ୍ପକ ବିମାନରେ ରାମଚନ୍ଦ୍ର ଆକାଶରେ ଉଡ଼ିଗଲାବେଳେ ସୀତାଙ୍କୁ ସେତୁବନ୍ଧ ରାମେଶ୍ୱର ଦେଖାଇଲାବେଳେ ଯାହା କହିଛନ୍ତି- ଦୂରରେ ଏହି ଯେଉଁ ସୁନ୍ଦର ତମାଳି ତାଳି ବନରାଜିରେ ନୀଳ ଦିଶୁଥିବା ବେଳାଭୂମି ଓ ଲବଣାମ୍ବୁ ରାଶି ଦେଖାଯାଉଛି ସେଇଠି, ସେଇଠି ସେତୁବନ୍ଧ ଗଢ଼ା ହୋଇଥିଲା....ଇତ୍ୟାଦି। ବିମାନରେ ଯେ କେହି ଆକାଶ-ପଥିକ ଆଜି ବି ସେଇ ବାଟରେ ଦିନବେଳେ ଯିବାର ସୌଭାଗ୍ୟ ଲାଭ କରିଥିଲେ- ଯାହା ମୁଁ ପାଇଥିଲି- କାଳିଦାସଙ୍କର ସେହି ବର୍ଣ୍ଣନା କେତେ ସତ୍ୟାଶ୍ରୟୀ, କେତେ ପ୍ରତ୍ୟକ୍ଷୀଭୂତ ପ୍ରାୟ ଅନୁଭୂତି ତାହା ଜଣାପଡ଼ିବ। କିନ୍ତୁ କାଳିଦାସଙ୍କର ପୁଷ୍ପକ ଯାନ ଆରୋହଣ ଥିଲା କବିର କଳ୍ପନା ନେତ୍ରର ଅବଲୋକନ। ତେଣୁ କାଳିଦାସ କବି ସାହିତ୍ୟିକ। ସେହି କାରଣରୁ ଡାକ୍ତର ବିକ୍ରମ ଦାସଙ୍କ କଳ୍ପନାପ୍ରସୂତ ବର୍ଣ୍ଣନାରାଜି ସାହିତ୍ୟ ରାଜ୍ୟରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିଛି। ଏହି ମୁଖବନ୍ଧ ଏହି ବହି ବିଷୟରେ ଶେଷକଥା ନୁହେଁ। କାରଣ ଏହି ବହି ବହୁ ପ୍ରସାଦଗୁଣ, ସ୍ମାରକ ଗାଥା, ଗ୍ରାମୀଣ ଜୀବନର ଅନୁଲେଖ ଇତ୍ୟାଦି କାରଣରୁ ଭାରତର ସ୍ୱାଧୀନତା ଆନ୍ଦୋଳନର 'ଅଲିଭା ଇତିହାସ' ସହିତ ଜଡ଼ିତ ରହିବ। ତେଣୁ ଏହି ଅଲିଭା ଇତିହାସ ସଂକ୍ରାନ୍ତରେ ବହୁ ଆଲୋଚନା ଭବିଷ୍ୟତରେ ହେବ। ଏହି ବହି ଓ ଏହି ମୁଖବନ୍ଧ ଏହି ଐତିହାସିକ କର୍ତ୍ତବ୍ୟରେ ଏକ ଛୋଟ ପଦକ୍ଷେପ। ଅୟମାରମ୍ଭାୟ ଶୁଭାୟ ଭବତୁ।

**ମନମୋହନ ମିଶ୍ର,**

**ରାଣୀହାଟ**

## ‘ବୁଢଖୋଲର ମାୟା’ଉପନ୍ୟାସଟି ସମ୍ବନ୍ଧରେ
### ଓଡ଼ିଆ ସାହିତ୍ୟ ଏକାଡେମୀର ସଭାପତି, ବିଶିଷ୍ଟ ଔପନ୍ୟାସିକ
### ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ କଲମରୁ...

ଡକ୍ଟର ବିକ୍ରମ ଦାସ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଇତିପୂର୍ବରୁ ‘‘ମଣିମାଡିହ’’ ଓ ‘‘ଅଲିଭା ଇତିହାସ’’ ରଚନା କରି ପାଠକମାନଙ୍କର ଶ୍ରଦ୍ଧାଶୀଳ ଦୃଷ୍ଟି ଆକର୍ଷଣ କରି ପାରିଛନ୍ତି। ତାଙ୍କର ‘ମଣିମାଡିହ’ ଉପନ୍ୟାସ, ପ୍ରଥମେ ପାଠ କରିବା ପରେ ବିଷୟବସ୍ତୁର ଅଭିନବତ୍ୱ ମୋ ପରି ଅନେକ ପାଠକଙ୍କୁ ମୁଗ୍ଧ କରିଥିଲା। ଗଜପତି ବଂଶର ଜଣେ ଦାୟାଦ ‘ମଣିମା’ ତାଙ୍କୁ ଘେରି ରହିଥିବା ଜନଶ୍ରୁତି ସାକ୍ଷୀ ଗୋପାଳରେ ଗୋପାଳଙ୍କ ପ୍ରତିଷ୍ଠା ପ୍ରଭୃତି କିମ୍ବଦନ୍ତୀକୁ ଅବଲମ୍ବନ କରି ଡକ୍ଟର ଦାସ ଏହି ଉପନ୍ୟାସରେ ଏକ ଅଭିନବ ବିଷୟବସ୍ତୁ ଓ ପରିବେଶର ଅବତାରଣା କରିଛନ୍ତି। ‘‘ଅଲିଭା ଇତିହାସ’’ରେ ସେହିପରି ଅଛି ଇତିହାସର ପାଦପ୍ରଦୀପ, ସମ୍ମୁଖରେ ନଥିବା ବହୁ ନେପଥ୍ୟ ନାୟକ, ଯେଉଁମାନଙ୍କ ଅକ୍ଳାନ୍ତ ଉଦ୍ୟମ ଓ ଅତିନ୍ଦ୍ର କୃଚ୍ଛ ସାଧନାରେ, ଏ ଦେଶର ସ୍ୱାଧୀନତା ସମ୍ଭବ ହୋଇଛି। ଏହାକୁ ଏକଧାରାରେ ଇତିହାସ ଓ ରାଜନୈତିକ ଉପନ୍ୟାସ ରୂପେ ମଧ୍ୟ ଗ୍ରହଣ କରାଯାଇପାରେ।

ସାମ୍ପ୍ରତିକ ଓଡ଼ିଆ ଉପନ୍ୟାସର ଦିଗ୍‌ବଳୟ ଅତ୍ୟନ୍ତ ସୀମାବଦ୍ଧ। ଏଥିରେ ନୂତନ ଅଭିଜ୍ଞତାର ପରିବେଷଣ ନାହିଁ। ନୂତନ ପରିସ୍ଥିତିର ବର୍ଣ୍ଣନା ନାହିଁ- ନୂତନତାର ଉଦ୍ୟମ ନାହିଁ। ସେଇ ଚିରନ୍ତନ ପ୍ରେମ କଥା, ଯୁବକ ଯୁବତୀଙ୍କ ମଧ୍ୟରେ ଦେହଜ ପ୍ରେମ ଓ ତା’ର ଶତ ବିକୃତି ମଧ୍ୟରେ ଅଧିକାଂଶ ଉପନ୍ୟାସ ସୀମିତ। ସେଥିପାଇଁ ସ୍ୱାଧୀନତାର ପରବର୍ତ୍ତୀ କାଳରେ ଓଡ଼ିଆ ଉପନ୍ୟାସ ଯେଉଁ ବିପୁଳ ସମ୍ଭାବନାର ଦ୍ୱାର ଉନ୍ମୋଚନ କରିଥିଲା, ଆଜି ତାହା ବହୁ ପରିମାଣରେ ସଂକୁଚିତ ହୋଇ ପଡ଼ିଛି କହିଲେ ଅତ୍ୟୁକ୍ତି ହେବ ନାହିଁ। ଡକ୍ଟର ବିକ୍ରମ ଦାସ, କିନ୍ତୁ ଉପନ୍ୟାସକୁ ସେହି ସୀମାବଦ୍ଧ ମୁକ୍ତି ଦେଇ, ଏକ ନୂତନ ପ୍ରତିଶ୍ରୁତି ଓ ସମ୍ଭାବନାର ସଂକେତ ଦେଇଛନ୍ତି।

'ବୁଦ୍ଧଖୋଲର ମାୟା' ଡକ୍ଟର ଦାସଙ୍କ ସେହି ଉଦ୍ୟମର ଅନ୍ୟ ଏକ ସଫଳ ପ୍ରତିଶ୍ରୁତି। ଡକ୍ଟର ଦାସଙ୍କ ରଚନା ଶୈଳୀ ସହିତ ପ୍ରଥମେ ପରିଚିତ ନହେଲେ, ତାଙ୍କର ଉପନ୍ୟାସର ରସାସ୍ୱାଦନ ସମ୍ଭବ ହେବ ନାହିଁ। ଚିରାଚରିତ ପଦ୍ଧତିରେ ଉପନ୍ୟାସ ଗୋଟିଏ ନିର୍ଦ୍ଦିଷ୍ଟ ପ୍ଲଟ୍‌କୁ ଆଶ୍ରୟ କରି ଘଟଣା ଓ ଚରିତ୍ରମାନଙ୍କର ସହାୟତାରେ ବିକଶିତ ହୋଇ, ପରିଣତିରେ ପହଞ୍ଚିଯାଏ। ଘନ ପୀନବଦ୍ଧ ଆଙ୍ଗିକ ମଧ୍ୟରେ ହିଁ ଉପନ୍ୟାସ ସଫଳ ହୋଇଥାଏ, କିନ୍ତୁ ଡକ୍ଟର ଦାସଙ୍କ ଉପନ୍ୟାସର ପ୍ଲଟ ଅପେକ୍ଷାକୃତ ଗୌଣ। ଏଥିରେ ମୁଖ୍ୟ ହେଲା ବିଭିନ୍ନ ଚରିତ୍ର, ଘଟଣା, ଏପରିକି ସ୍ମୃତି କଥାର ବର୍ଣ୍ଣନା। ଏହି ବର୍ଣ୍ଣନା ବିକାଶ ମଧ୍ୟରେ, ଲେଖକଙ୍କର ବହୁ ନିମଜ୍ଜିତ ସ୍ମୃତି ଯେପରିକି ପ୍ରକାଶ ପାଇଁ ପଥ ଖୋଜି ପାଇଛନ୍ତି।

''ବୁଦ୍ଧ-ଖୋଲର ମାୟା''ରେ ମଧ୍ୟ ତାହାର ବ୍ୟତିକ୍ରମ ହୋଇନାହିଁ। ଏଥିରେ କାଠଯୋଡ଼ି ନଦୀରେ ବନ୍ୟାର ବିସ୍ତୃତ ବର୍ଣ୍ଣନା ଠାରୁ ଆରମ୍ଭ କରି ଦକ୍ଷିଣ ଓଡ଼ିଶାର ଭ୍ରମଣ କାହାଣୀ, ଏପରିକି ଓଡ଼ିଶାର ଇତିହାସ ମଧ୍ୟ ବର୍ଣ୍ଣିତ ହୋଇଛି। ଏ ସବୁର ନେପଥ୍ୟରେ ରହିଛି ଲେଖକଙ୍କ ଆଦର୍ଶବାଦୀ ବ୍ୟକ୍ତିତ୍ୱର ପ୍ରେରଣା। ଏଇ ଉପନ୍ୟାସର ନାୟକ ରାମଶଙ୍କର ଓ ନାୟିକା ଚନ୍ଦ୍ରମା। କିନ୍ତୁ ସନ୍ନ୍ୟାସୀ ରୂପେ ପରିଚିତ ଆଦର୍ଶବାଦୀ ଦେଶବ୍ରତୀ ରୁଦ୍ର ବାବୁ ହିଁ ଏହି ଉପନ୍ୟାସର ପ୍ରତି ପୃଷ୍ଠାରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି। କେବଳ ମନୋରଞ୍ଜନ ନୁହେଁ ଲୋକଶିକ୍ଷା ଓ ଲୋକ ଜାଗରଣ, ନିଜର ଐତିହ୍ୟ, ସଂସ୍କୃତି ସମ୍ପର୍କରେ ସଚେତନ ହେବା ପାଇଁ ଆହ୍ୱାନ ଡକ୍ଟର ଦାସଙ୍କ ରଚନାରେ ଅତି ସୋଚ୍ଚାର।

ଆଜି ସାହିତ୍ୟରୁ ହାସ୍ୟରସ ବିଦାୟ ନେଇଛି। ହାସ୍ୟରସ ନାମରେ ଯାହା ପ୍ରାୟତଃ ଦୃଷ୍ଟିରେ ପଡ଼ିଛି, ସେସବୁ କୁତୁକୁତୁ କରି ହସାଇବାର ଉଦ୍ୟମ। ମାତ୍ର, ସେଥିରେ ହାସ୍ୟରସର ବ୍ୟଞ୍ଜନା ନାହିଁ। ତାହା ସ୍ୱତସ୍ଫୁର୍ତ୍ତ ଭାବରେ ପାଠକକୁ ହାସ୍ୟମୁଖର କରେ ନାହିଁ। ଚରିତ୍ର ଓ ଘଟଣାର ବିଶିଷ୍ଟ ସଂସ୍ଥାପନ ରୀତି ମଧ୍ୟରେ ହିଁ ହାସ୍ୟରସ ବିକଶିତ ହୋଇଥାଏ। ଏଥିପାଇଁ ଏକ ବିଶିଷ୍ଟ ଦୃଷ୍ଟିଭଙ୍ଗୀର ପ୍ରୟୋଜନ। ସେ ଦୃଷ୍ଟିଭଙ୍ଗୀ ନଥିଲେ, ହାସ୍ୟରସ ସୃଷ୍ଟି ସମ୍ଭବ ନୁହେଁ। ଡକ୍ଟର ଦାସଙ୍କ ଉପନ୍ୟାସର ବହୁ ସ୍ଥାନରେ ସେହିପରି ହାସ୍ୟରସ ପରିବେଷିତ ହୋଇଥିବାରୁ ସେସବୁ ସୁଖ ପାଠ୍ୟ ହୋଇ ପାରିଛି। ଉପନ୍ୟାସର ଆରମ୍ଭରେ ଗୋଟିଏ ମେସ୍‌ର ବର୍ଣ୍ଣନା ପ୍ରସଙ୍ଗରେ ରାଜକୁମାରଙ୍କ 'କେଶଗୁଚ୍ଛ କର୍ତ୍ତନ' ଉଦ୍ଦେଶ୍ୟରେ ଚାକର ଦ୍ୱାରା ନାପିତର ସନ୍ଧାନ ଓ ନାପିତମାନେ କାଠଯୋଡ଼ିରେ ବନ୍ୟା ଦେଖାରେ ବ୍ୟସ୍ତ ଥିବାରୁ, ଜଣେ ଅନାଡ଼ି ହାତରେ 'କାଉ ଖୁମ୍ପିବା' ତାଙ୍କର ଚୁଳକଟା ଓ

ତା'ର ପରିଣତି ପ୍ରଭୃତି ବହୁ ଘଟଣା ଯେପରି ବାସ୍ତବ, ସେହିପରି ହାସ୍ୟୋଦ୍ଦୀପକ। ବର୍ଣ୍ଣନା ଭଙ୍ଗୀରେ ସେହିପରି ଅଛି ଚଟୁଳତା... ରାଜକୁମାର ଗରମ ମିଜାଜରେ ଭାତ ଥାଳି ପାଖରେ ବସିବାବେଳେ ତରକାରୀ ଗିନାରୁ ଖଣ୍ଡେ ପୋଚରା ଆଳୁ ପାଟିରେ ପଡ଼ିଯିବାରୁ କ୍ରୋଧରେ ଥାଳି, ଗିନା ସବୁ ଫିଙ୍ଗି ଦେଇଛନ୍ତି... ''ଗୋଟିଏ ସ୍ଥାନରେ ଭାତ ବଢ଼ା ହୋଇଥିଲା ପରି ଜଣା ପଡୁଥିଲା। ଭାତଗୁଡ଼ିକ ଆହତ ସୈନିକମାନଙ୍କ ପରି ଥାଳିରୁ ଡେଇଁ ଚାରିପଟେ ଗଡୁଥିଲେ। ତରକାରୀ, ଡାଲିଗିନା, ପ୍ରଭୃତି ଛତ୍ରଭଙ୍ଗ ଆହତ ଅଶ୍ୱ ପରି ଆଣ୍ଠୁ ମାଡ଼ି କାନ୍ଥ ନିକଟରେ ପଡ଼ିଥିଲେ ଓ ସେମାନଙ୍କ ସବାର ତରକାରୀ ପତ୍ର ସବୁ କାନ୍ଥ ବାଡ଼ରୁ ତଳକୁ ଓହ୍ଲାଇବାକୁ ଚେଷ୍ଟା କରୁଥିଲେ।''

ଏହି ଉପନ୍ୟାସରେ କେତେକ ଗୌଣ ଚରିତ୍ରର ବର୍ଣ୍ଣନା ମଧ୍ୟ ସେହିପରି ହାସ୍ୟୋଦ୍ଦୀପକ। ସୀମାଚଳବାବୁଙ୍କ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା ଓ 'କମଳାରଙ୍ଗ' ବାକ୍ସରେ ତାଙ୍କୁ ଭୋଟ ଦେବା ପାଇଁ ଝଟକା ଗାଡ଼ିରେ ଦାସକାଠିଆବାଲାଙ୍କ ପ୍ରଚାର ପ୍ରଭୃତି ଅତ୍ୟନ୍ତ ବାସ୍ତବ। ମାତ୍ର ତାହାକୁ ପର୍ଯ୍ୟବେକ୍ଷଣ କରିବା ଦୃଷ୍ଟିଭଙ୍ଗୀ ଓ ବର୍ଣ୍ଣନା, ଏହାକୁ ଶୁଦ୍ଧ ହାସ୍ୟରସରେ ନିର୍ଜିତ କରିପାରିଛି।

ଏହି ଉପନ୍ୟାସଟି ପାଠକ ସମାଜରେ ବହୁ ଆଦୃତ ହେବ, ଏଥିରେ ସନ୍ଦେହ ନାହିଁ।

ସୁରେନ୍ଦ୍ର ମହାନ୍ତି
ଶିବାନୀ, କଟକ-୭୫୩୦୦୮

# ''ନିର୍ବାସିତ ଗଜପତି''ର ମୁଖବନ୍ଧ

## ବିଶିଷ୍ଟ ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ଡକ୍‌ଟର ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ କଲମରୁ...

ଓଡ଼ିଶାରେ ସୁଦୃଢ ଶାସନ ବିସ୍ତାର କରିବାକୁ ଯାଇ ଇଂରେଜ ଶାସକମାନେ ଓଡ଼ିଶାରେ ରାଜପରିବାର ଓ ପ୍ରଜାଙ୍କ ଉପରେ ଯେଉଁ ଅମାନୁଷିକ ଅତ୍ୟାଚାର କରିଥିଲେ ତହିଁର ଏକ କରୁଣଚିତ୍ର ଏହି ଉପନ୍ୟାସରେ ବର୍ଣ୍ଣିତ ହୋଇଛି। ପୃଥିବୀରେ ଏକ ସଭ୍ୟ ଶିକ୍ଷିତ ,ଗଣତାନ୍ତ୍ରିକ ଓ ନୀତି ପରାୟଣ ବୋଲାଉ ଥିବା ବ୍ରିଟିଶ ଜାତି ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ କିପରି ଜଘନ୍ୟ ଉପାୟରେ ଭାରତର ଧର୍ମ ଓ ସ୍ୱାଧୀନତା ପ୍ରେମୀଙ୍କ ବିରୁଦ୍ଧରେ ହୀନ-ରୋମାଞ୍ଚକର ଚକ୍ରାନ୍ତ କରିବାକୁ ପଛାଉ ନଥିଲେ ତାହା ଏହି 'ନିର୍ବାସିତ ଗଜପତି' ପୁସ୍ତକରେ ବର୍ଣ୍ଣନା କରି ଶ୍ରଦ୍ଧେୟ ଡକ୍ଟର ବିକ୍ରମ ଦାସ ଓଡ଼ିଶାର ଅତି ଦୁର୍ଦ୍ଦିନକାଳୀନ ଇତିହାସର ଏକ ବେଦନାମୟ ପୃଷ୍ଠା ଉନ୍ମୋଚନ କରିଛନ୍ତି।

ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଲିଖିତ 'ନିର୍ବାସିତ' ଉପନ୍ୟାସରେ ଦିବ୍ୟସିଂହଦେବଙ୍କ ବନ୍ଦୀତ୍ୱ ସମ୍ପର୍କରେ ଏକ ପ୍ରାଣସ୍ପର୍ଶୀ ଆଭାଷ ମାତ୍ର ଦେଇଥିଲେ। ଡକ୍ଟର ବିକ୍ରମ ଦାସଙ୍କ ଏହି 'ନିର୍ବାସିତ ଗଜପତି' ପୁସ୍ତକଟି ମୁଖ୍ୟତଃ ଐତିହାସିକ ଭିତ୍ତିରେ ଲେଖା ହୋଇଥିଲେ ମଧ୍ୟ ତାଙ୍କର ନିଜସ୍ୱ ଔପନ୍ୟାସିକ ଲେଖା ଚାତୁରୀରେ ଏହା ଏକ ଜୀବନ୍ତ ରୋମାଞ୍ଚକର ଡିଟେକ୍ଟିଭ୍ ଉପନ୍ୟାସର ରୂପ ନେଇଛି। ଏହାର ତଥ୍ୟ ଓ ବର୍ଣ୍ଣନା ଅତି ପ୍ରାଞ୍ଜଳ ଓ ହୃଦୟଗ୍ରାହୀ ହୋଇପାରିଛି।

ପୁସ୍ତକଟି ଆରମ୍ଭ କଲେ ଶେଷ ନକରି ଛାଡ଼ି ହୁଏ ନାହିଁ। ତାହା କେବଳ ଅତି କରୁଣ ରସର ଅବତାରଣା ହେତୁ ନୁହେଁ, ଓଡ଼ିଶାର ଏକ ମର୍ମନ୍ତୁଦ ଜାତୀୟ ସମସ୍ୟା ଏହି ପୁସ୍ତକର ଛତ୍ରେ ଛତ୍ରେ ପ୍ରକଟିତ ହୋଇଥିବାରୁ ଏହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି।

ବାସ୍ତବରେ ଓଡ଼ିଶାର ଜାତୀୟ ଦେବତା ଶ୍ରୀ ଜଗନ୍ନାଥ ଓ ତାଙ୍କ ପ୍ରତିନିଧି ଠାକୁର ରାଜାଙ୍କୁ ଲୋକ ଚକ୍ଷୁରେ ହୀନ ପୂର୍ବକ ଚିତ୍ରିତ ପାଇଁ ବିଦେଶୀ ବିଧର୍ମୀ ସରକାର ଯେଉଁ ଷଡ଼ଯନ୍ତ୍ର କରିଥିଲେ ଏବଂ ଓଡ଼ିଆ ଜାତି ଓ ଜଗନ୍ନାଥ ସଂସ୍କୃତିର ମେରୁଦଣ୍ଡ ଚୂର୍ଣ୍ଣ ବିଚୂର୍ଣ୍ଣ କରିବା ପାଇଁ କେତେକ ନିରପରାଧ ନିରୀହ ବ୍ୟକ୍ତିଙ୍କୁ ଯେପରି ଦାରୁଣ ନିର୍ଯାତନା ଭୋଗ କରାଇଥିଲେ, ତାହା ଇତିହାସ ବକ୍ଷରେ ଚିରସ୍ମରଣୀୟ ହୋଇରହିବ। ସେହି ଐତିହାସିକ ଚକ୍ରାନ୍ତର ଏକ ନଗ୍ନଚିତ୍ର ଏହି ପୁସ୍ତକରେ ପ୍ରଦର୍ଶନ କରି ଶ୍ରଦ୍ଧେୟ ବିକ୍ରମ ଦାସ ଧନ୍ୟବାଦାର୍ହ ହୋଇଛନ୍ତି।

ଲେଖକଙ୍କର ଏହି ଲେଖା ପାଇଁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି।

**ସତ୍ୟନାରାୟଣ ରାଜଗୁରୁ**

# 'ଜୀବନର ଛାପ' ପୁସ୍ତକର ମୁଖବନ୍ଧରେ

## ଡକ୍ଟର ହରିହର ପଟ୍ଟନାୟକ, ପୂର୍ବତନ କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

'ସହକାର' ମାସିକ ପତ୍ରିକାରେ 'ଜୀବନର ଛାପ' ନାମଦେଇ ଡାକ୍ତର ଦାସ ବତିଶିଟି ଲେଖାରେ ନିଜର ସତୁରୀ ବର୍ଷର ସ୍ମୃତି ମନ୍ଥନ କରିଛନ୍ତି । ସେଥିରେ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ସାମାଜିକ ଇତିହାସର ଅବତାରଣା କରାଯାଇଛି ।

ଐତିହାସିକ ଓ ସମାଲୋଚକଙ୍କ ମତ ଯେ, ଗୋଟିଏ ଜୀବନ ଚରିତ୍ରରେ ସମସାମୟିକ, ସାମାଜିକ, ରାଜନୈତିକ ଓ ଜାତୀୟ ଚରିତ୍ରମାନ ପ୍ରତିଫଳିତ ହୋଇଥାଏ । ପ୍ରସିଦ୍ଧ କବି ଗେଟେଙ୍କ ମତରେ, ଆତ୍ମଚରିତ ମାନବ ସଭ୍ୟତାର ଚିନ୍ତା ଓ ଚେତନାକୁ ଉନ୍ନତ କରିବାରେ ସହାୟକ ହୁଏ ।

ଆତ୍ମଜୀବନୀ, ଲେଖକଙ୍କ ଜୀବନର ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣାବଳୀର କଳାତ୍ମକ ପରିପ୍ରକାଶ । ସେ ସମୟର ଅର୍ଥାତ ଦୀର୍ଘ ସତୁରୀ ବର୍ଷର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଘଟଣାବଳୀ ଏଥିରେ କିଞ୍ଚିତ୍ ରୂପାନ୍ତରିତ ହୋଇଛି । ହିଟ୍‌ଲରଙ୍କ "Main Kampf" ଚର୍ଚ୍ଚିଲଙ୍କ "War Memoirs" ମହାତ୍ମାଗାନ୍ଧିଙ୍କର "My Experiment with truth" ପଣ୍ଡିତ ଜବାହାରଲାଲ ନେହେରୁଙ୍କ "Autobiography" ଗୋଟିଏ ଗୋଟିଏ ଯୁଗର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଦୀର୍ଘ ସତୁରୀ ବର୍ଷର ଅଭିଜ୍ଞତାକୁ ବିକ୍ରମ ବାବୁ ଏଥିରେ ଉପସ୍ଥାପନା କରିଛନ୍ତି । ପିଲାଦିନର ଗାଁରେ ପାଠପଢ଼ା।, ମାଇନର ସ୍କୁଲ ଘଟଣାବଳୀ, କଲେଜ ପାଠପଢ଼ା, କଲିକତାରେ କିଛି ଦିନର ଛାତ୍ର ଜୀବନ, ମେଡିକାଲ କଲେଜର ଛାତ୍ର ଜୀବନ ଓ ସୁଦୂର ଆମେରିକାର ଛାତ୍ର ଜୀବନ ଆଦି ବିଷୟରେ ବର୍ଣ୍ଣନା କରିଛନ୍ତି । ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସଙ୍କର ପୁତ୍ର ଓ ସ୍ୱର୍ଗତ ବିପ୍ଳବୀ ଅଶୋକ ଦାସଙ୍କ ଭାଇ ହୋଇଥିବାରୁ ସେ ବହୁ ଅଭିଜ୍ଞତା ଅର୍ଜନ କରିଛନ୍ତି । ବହୁ ଦେଶପ୍ରେମୀ ବିପ୍ଳବୀଙ୍କ ସଂସ୍ପର୍ଶରେ ଆସିଛନ୍ତି । ସେତେବେଳର ଛାତ୍ର ଅଶାନ୍ତିରେ ସେ ଭାଗ ନେଇଛନ୍ତି । ୧୯୩୯ ମସିହାରେ ପ୍ରଥମ ଛାତ୍ର ସତ୍ୟାଗ୍ରହବେଳେ ସେ ସତ୍ୟାଗ୍ରହ ଭାବରେ କାରାବରଣ କରିଛନ୍ତି । ଏଥିପାଇଁ ତାଙ୍କର ସ୍ୱାସ୍ଥ୍ୟ ହାନି ଘଟିଛି, ତଥାପି ସେ ଦବି ଯାଇନାହାନ୍ତି ।

ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଛନ୍ତି ସେ। ତାଙ୍କ ଓଡ଼ିଶା ଯାତ୍ରାରେ ଭାଗ ନେଇଛନ୍ତି। ସେହି ସମୟରେ ସବୁ ଶ୍ରେଣୀର ଲୋକଙ୍କ ସଙ୍ଗେ ମିଶିବାର ସୁଯୋଗ ମଧ୍ୟ ପାଇଛନ୍ତି। ଗ୍ରାମସବୁ ବୁଲି ଲୋକଙ୍କ ଭିତରେ ସୁଭାଷଙ୍କ ମତ ପ୍ରଚାର କଲାବେଳେ, ଚିଲିକା ନିକଟସ୍ଥ ଗ୍ରାମବାସୀଙ୍କର ଦୁଃଖଦୁର୍ଦ୍ଦଶାରେ ସେ ବ୍ୟଥିତ ହୋଇଛନ୍ତି। ଗ୍ରାମ୍ୟ ଜୀବନର ଏକ ନିଖୁଣ ଚିତ୍ର ଏଥିରେ ଦେଇଛନ୍ତି। ଏହିସବୁ କାର୍ଯ୍ୟରେ ବ୍ୟସ୍ତ ରହି ସେ ବାଧ୍ୟ ହୋଇ କିଛି ଦିନ ପାଠ ପଢ଼ା ବନ୍ଦ କରିଛନ୍ତି।

ପାଠପଢ଼ାରୁ କିଛି ଦିନ ବିରତି ପରେ ସେ ପୁନଶ୍ଚ ପାଠପଢ଼ା ଆରମ୍ଭ କରିଛନ୍ତି। ସତ୍ୟବାଦୀ ଆଦର୍ଶ ବନବିଦ୍ୟାଳୟରେ ପାଠ ପଢ଼ିବାର ସୁଯୋଗ ପାଇଛନ୍ତି। ସେତେବେଳେ ସେଠାରେ ପୂର୍ବତନ ବନ ବିଦ୍ୟାଳୟର ନିଃସ୍ୱାର୍ଥପର ଛାତ୍ରମାନଙ୍କୁ ଶିକ୍ଷକ ଭାବରେ ପାଇ ସେମାନଙ୍କ ସମ୍ପର୍କରେ ଆସିବାର ସୁବିଧା ପାଇଛନ୍ତି। ସେହି ଦିନ ବନ ବିଦ୍ୟାଳୟରେ ଚରିତ୍ର ଗଠନ "Simple Living" ଓ "High Thinking" ଉପରେ ବିଶେଷ ଦୃଷ୍ଟି ଦିଆଯାଉଥିଲା।

ସେ ମଝିରେ ମଝିରେ ପିତା ନୀଳକଣ୍ଠଙ୍କ ସଙ୍ଗେ ଦିଲ୍ଲୀ, ବମ୍ବେ ପ୍ରଭୃତି ସ୍ଥାନକୁ ଯାଇ ଭାରତର ଅନେକ ନେତାମାନଙ୍କର ସମ୍ପର୍କରେ ଆସିଥିଲେ ଓ ସେହି ଦେଶପ୍ରେମୀ ନେତାଙ୍କ ସଙ୍ଗେ ସମ୍ପର୍କ ରଖିବାର ସୁଯୋଗ ପାଇଥିଲେ। ଏ ସୁଯୋଗ କେତେଜଣଙ୍କୁ ମିଳେ ?

କଟକ ରେଭେନ୍ସା କଲେଜରେ ଆଇ.ଏସ୍‌ସି. ଦ୍ୱିତୀୟ ଶ୍ରେଣୀରେ ପଢୁଥିବାବେଳେ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ସେ ଭାଗ ନେଇଛନ୍ତି। ରେଭେନ୍ସା କଲେଜରୁ ଏକ ଛାତ୍ର ଶୋଭାଯାତ୍ରା ବାହାରି କଟକ ମେଡିକାଲ ସ୍କୁଲ ହତାରେ ପହଞ୍ଚିବା ସମୟରେ ବ୍ରିଟିଶସରକାରଙ୍କ ଦ୍ୱାରା ଛାତ୍ରମାନଙ୍କ ଉପରେ ହୋଇଥିବା ଦମନଲୀଳାର ଏକ ଜୀବନ୍ତ ବିବରଣୀ ସେ ତାଙ୍କ ଲେଖାରେ ଦେଇଛନ୍ତି। ସେଠାରେ ଛାତ୍ରମାନଙ୍କୁ ଭୀଷଣ ମାଡ଼ ଦେବା କଥା ସେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି। ଏହି ମୁଖବନ୍ଧ ଲେଖକ ଜଣେ ସହପାଠୀ ଭାବେ ବିକ୍ରମ ବାବୁଙ୍କ ସହିତ ସେହି ଶୋଭାଯାତ୍ରାରେ ଯୋଗ ଦେଇଥିଲେ। ଏବେ ମଧ୍ୟ ଲେଖକଙ୍କର ଗୋଡ଼ରେ ମାଡ଼ର ଚିହ୍ନ ରହିଛି। ସେହି ସମୟରେ ରେଭେନ୍ସା କଲେଜର ଅବସ୍ଥା ଓ ଆତଙ୍କବାଦ ବିଷୟରେ ବିକ୍ରମବାବୁ ପ୍ରାଞ୍ଜଳ ଭାବରେ ଲେଖିଛନ୍ତି। ସେତେବେଳେ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଛି। ତାଙ୍କ ପାଠ ପଢ଼ାରେ ବାଧା ପଡ଼ିଛି।

ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ କିପରି ବ୍ରିଟିଶ ଓ ତାଙ୍କ ସହଯୋଗୀ ରାଷ୍ଟ୍ରମାନଙ୍କର ପରାଜୟର ସମ୍ଭାବନା ଦେଖାଯାଇଥିଲା, ସେ କଥା ବର୍ଣ୍ଣନା କରିବାକୁ ସେ ଭୁଲି ନାହାନ୍ତି।

ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାରୁ ଓ ବିପ୍ଳବୀ ସୁଭାଷପନ୍ଥୀ ଥିବାରୁ ବ୍ରିଟିଶ ପୋଲିସ ତାଙ୍କ ଉପରେ କଡ଼ା ନଜର ରଖିଥିଲେ ମଧ୍ୟ ତାଙ୍କୁ ବନ୍ଦୀ କରିପାରିନଥିଲେ।

ଦୁଇ ବର୍ଷ ପାଠରେ ବ୍ୟାଘାତ ଘଟିଲେ ମଧ୍ୟ ସେ ଦବି ଯାଇନଥିଲେ। ୧୯୪୪ରେ ଗୁପ୍ତରେ କଟକରୁ (ଉତ୍କଳ ବିଶ୍ୱବିଦ୍ୟାଳୟରୁ) ମାଇଗ୍ରେସନ ସାର୍ଟିଫିକେଟ ନେଇ କଲିକତାର ଜାତୀୟବାଦୀ ଅନୁଷ୍ଠାନ ବଙ୍ଗବାସୀ କଲେଜରେ ନାମ ଲେଖାଇ ସେଠାରୁ କୃତିତ୍ୱର ସହିତ ଆଇଏସସି ପାସ କରିଛନ୍ତି।

୧୯୪୫ ବେଳକୁ ପାଶ୍ଚାତ୍ୟ ରାଜନୀତିରେ ବହୁ ପରିବର୍ତ୍ତନ ଘଟିଲା। ଭାରତରେ ମଧ୍ୟ ବ୍ରିଟିଶ ଶାସକମାନେ କୋହଳ ନୀତି ଧରିଲେ। ସେହି ସମୟରେ ସେ କଟକ ମେଡିକାଲ କଲେଜରେ ନାମ ଲେଖାଇ ପାରିଲେ। ସୁଭାଷଙ୍କ ଜାତୀୟ ବାହିନୀର ପରାଜୟ ଓ ଦିଲ୍ଲୀରେ ବିଚାରବେଳେ ସେ ' ଜାତୀୟ ବାହିନୀର' ଇତିହାସ ଲେଖି ସେହି ବନ୍ଦୀମାନଙ୍କ ସାହାଯ୍ୟ ପାଇଁ ଦାନ କରିବାକୁ ଆହ୍ୱାନ ଦେଇଥିଲେ। କଟକ ମେଡିକାଲ କଲେଜରେ ପଢୁଥିଲାବେଳେ ସେ 'ଶେଷ ରାଶିଫଳ' ନାମକ ଦାର୍ଶନିକ କବିତାଟି ଲେଖିଛନ୍ତି। ଗୋଟିଏ କଙ୍କାଳକୁ ଚାହିଁ ଲେଖିଥିବା ସେହି କବିତାରୁ ତାଙ୍କ ଦରଦୀ କବି ହୃଦୟର ଆଭାସ ମିଳେ।

୧୯୪୭ ଜୁନ୍ ୨୮ରେ ସେ ବିବାହ କରିଥିଲେ। ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା। ଦେଶ ସ୍ୱାଧୀନ ହେବାର ପୂର୍ବରୁ ନେତାମାନେ ବଦଳିବାକୁ ଲାଗିଲେ। ଲଢୁଆ ରାଜନୀତି, କ୍ଷମତା ରାଜନୀତିରେ ପରିଣତ ହେଲା। ଅଧିକାଂଶ ନେତାଙ୍କର କ୍ଷମତା ଲିପ୍‌ସା ବଢ଼ିଲା। ଖଦଡ଼ ପୋଷାକ ପିନ୍ଧି ସୁବିଧାବାଦୀ ନେତାମାନେ ଦେଶ ସେବା ନାଁରେ ଦେଶକୁ ଶୋଷଣ କରିବାକୁ ତତ୍ପର ହେଲେ। ଏଥିପାଇଁ ସେ ଦୁଃଖିତ ହୋଇ, ଶୈଶବରୁ ପିନ୍ଧି ଆସୁଥିବା ଖଦଡ଼ ଲୁଗା, ଯାହାକୁ ସେ ରାଜନୈତିକ ସୈନିକର ପୋଷାକ ଭାବରେ ପରିଧାନ କରି ଆସୁଥିଲେ ତାକୁ ତ୍ୟାଗ କଲେ ଓ କ୍ଷମତା ରାଜନୀତିରୁ ଦୂରେଇ ରହିଲେ।

ସେହି ସମୟରେ 'ନବଭାରତ' ମାସିକ ପତ୍ରିକାର ସ୍ୱାଧୀନତା ସଂଖ୍ୟାରେ ଭବିଷ୍ୟତ ବଂଶଧରଙ୍କ ପାଇଁ 'ସମାପ୍ତ ନୁହେଁ ତବ କାହାଣୀ' ନାମକ ଏକ ମର୍ମସ୍ପର୍ଶୀ କବିତା ସେ ଲେଖିଥିଲେ।

ତା' ପରେ ସେ ପୂର୍ଣ୍ଣ ପ୍ରାଣରେ ଚିକିତ୍ସା ଶାସ୍ତ୍ର ଓ ରୋଗୀ ସେବାରେ ମନୋନିବେଶ କଲେ। ସେ ମେଡିକାଲ କଲେଜରୁ ଉତ୍ତୀର୍ଣ୍ଣ ହୋଇ କଲେରା ୱାର୍ଡ଼(ଆଠ ଦଶଟି ବେଡ୍)ର ତତ୍ତ୍ୱାବଧାରକ (House Physician) ଥିବାବେଳେ 'ରନ୍ତଲେଇ' ବିଭ୍ରାଟ ଘଟିଥିଲା। ଲୋକଙ୍କ ମତାନ୍ଧତା ଓ ସରକାରଙ୍କ ଉଦାସୀନତା ଯୋଗୁଁ ଅନୁଗୁଳ ନିକଟସ୍ଥ ରନ୍ତଲେଇରୁ ସହସ୍ରାଧିକ ଲୋକ ହଇଜା ରୋଗରେ ଆକ୍ରାନ୍ତ ହୋଇ କିପରି ତାଙ୍କ କଲେରା ୱାର୍ଡ଼କୁ ବୁହା ହୋଇ ଆସିଲେ, ସେସବୁର ହୃଦୟସ୍ପର୍ଶୀ କାହାଣୀ ସେ ବର୍ଣ୍ଣନା କରିଛନ୍ତି।

ମେଡିକାଲ କଲେଜରୁ ତାଲିମ ନେବା ପରେ ସେ ଉଚ୍ଚତର ଶିକ୍ଷା ପାଇଁ ମନୋନୀତ ହୋଇ ଆମେରିକା ଯାତ୍ରା କରିଥିଲେ। ବିକ୍ରମ ବାବୁ ଆମେରିକା ଯାଇ ତତ୍କାଳୀନ ଲୋକ ଚରିତ୍ର ବିଷୟ ବର୍ଣ୍ଣନା କରିଛନ୍ତି। ସେଠାରେ ସାଧାରଣ ଲୋକ ସ୍ୱାର୍ଥପର ହେଲେ ମଧ୍ୟ କେବେ ଅସାଧୁ ନଥିଲେ। ସେମାନଙ୍କ ଭିତରୁ ବହୁ ବଡ଼ ବୈଜ୍ଞାନିକ ଓ ମାନବବାଦୀଙ୍କ ସମ୍ପର୍କରେ ଆସିବାର ମଧ୍ୟ ସେ ସୁଯୋଗ ପାଇଥିଲେ।

ଉଚ୍ଚଶିକ୍ଷା ପାଇ ସାରି ଆମେରିକାରୁ ସ୍ନାତକୋତ୍ତର ଡିଗ୍ରୀ ସହିତ ଫେରି ଆସିବା ବେଳକୁ ତାଙ୍କ ପିତା ନୀଳକଣ୍ଠ ଅସୁସ୍ଥ ଥିଲେ। ସେ ତାଙ୍କର ସେବା କରିବା ସଙ୍ଗେ ସଙ୍ଗେ କଟକ ବିନୋଦ ବିହାରୀରେ ଥିବା ତାଙ୍କ ପୁରାତନ କ୍ଲିନିକ୍‌ରେ କିଛିଦିନ ରୋଗୀ ଚିକିତ୍ସା ଆରମ୍ଭ କରିଥିଲେ। ସେତେବେଳେ କ୍ଷମତା ରାଜନୀତିରେ ଯୋଗ ଦେବା ପାଇଁ ତାଙ୍କୁ ଆହ୍ୱାନ ଆସିଥିଲା, କିନ୍ତୁ ସେ ତାହା ପ୍ରତ୍ୟାଖ୍ୟାନ କରି ଡାକ୍ତରୀ ଶିକ୍ଷାରେ ଛାତ୍ରମାନଙ୍କୁ ତାଲିମ ଦେବା ପାଇଁ କଟକ ମେଡିକାଲ କଲେଜରେ ଶିକ୍ଷକ ଭାବରେ ଯୋଗ ଦେଇଥିଲେ। ଡାକ୍ତରୀ ଶିକ୍ଷାଦାନ ସଙ୍ଗେ ସଙ୍ଗେ ସେ ନାନା ପ୍ରକାର ରୋଗୀଙ୍କ ଚିକିତ୍ସା କରି ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି। ସେ ଜଣେ ସଚ୍ଚୋଟ ଚିକିତ୍ସକ ଭାବେ ପରିଚିତ ଓ ପ୍ରଶଂସିତ ହେଲେ।

କିଛି ବର୍ଷ ପରେ ୧୯୬୭ରେ ପିତାଙ୍କ ତିରୋଧାନ ଘଟିବାରୁ ସେ କଟକ ଛାଡ଼ିଲେ। ପରେ ପରେ ନୂତନ ବ୍ରହ୍ମପୁର ମେଡିକାଲ କଲେଜର ପାଥୋଲୋଜି ବିଭାଗର ପ୍ରଥମ ପ୍ରଫେସର ତଥା ବିଭାଗୀୟ ମୁଖ୍ୟ ଭାବେ ଯୋଗ ଦେଇ ସେ ବିଭାଗର ଉନ୍ନତି ସାଧନ କରି ସୁନାମ ଅର୍ଜନ କରିଥିଲେ।

ସେ ଛାତ୍ର ଜୀବନରୁ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ। କବିତା, ଭ୍ରମଣ କାହାଣୀ, ପ୍ରବନ୍ଧ, ଗଳ୍ପ, ଉପନ୍ୟାସ, ରମ୍ୟରଚନା, ଜୀବନୀ, ଐତିହାସିକ ନିବନ୍ଧ ଓ ବିଜ୍ଞାନ ସମ୍ପର୍କିତ ବହୁ ପୁସ୍ତକ ସେ ରଚନା କରିଛନ୍ତି। ତାଙ୍କ ପରି ଜଣେ ସୁଚିକିତ୍ସକ ଓ ଡାକ୍ତରୀ ବିଦ୍ୟାର ଶିକ୍ଷକ କର୍ମମୟ ଜୀବନ ଓ ଅବସର ଗ୍ରହଣ ପରେ ସେ ଏପରି ସୁଲେଖକ ହେବେ ତାହା କଳ୍ପନାର ବାହାରେ। ଖୁବ୍ କମ୍ ଚିକିତ୍ସକ ଏପରି ସୁନାମ ଅର୍ଜନ କରିଛନ୍ତି।

ତାଙ୍କ ସାହିତ୍ୟିକ ଜୀବନ କୌତୁହଳ ପୂର୍ଣ୍ଣ। ସେ ପୂର୍ବରୁ ସାମୟିକ ଭାବରେ ଆଲୋଚନା, ଗଳ୍ପ ଓ କବିତା ରଚନା କରୁଥିଲେ। ପ୍ରଥମେ ତାଙ୍କର ରସାତ୍ମକ ଗଳ୍ପ ପୁସ୍ତକ ''ସାତ ତିରିକି ସତର'' ଆତ୍ମ ପ୍ରକାଶ କଲା। ତା' ପରେ ପରେ ସେ ବହୁ ପୁସ୍ତକର ରଚୟିତା ହୋଇ ଉତ୍କଳ ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି। ଏ ପର୍ଯ୍ୟନ୍ତ ତାଙ୍କ ରଚନା ବନ୍ଦ ହୋଇନାହିଁ। ଉପାଦେୟ ପୁସ୍ତକ ଲେଖିବା। ତାଙ୍କର ଏକ ନିଶାରେ ପରିଣତ ହୋଇଛି। ତାଙ୍କର ବହୁ ଅପ୍ରକାଶିତ ପାଣ୍ଡୁଲିପି ମଧ୍ୟ ଏ ପର୍ଯ୍ୟନ୍ତ ପଡ଼ିରହିଛି।

ସେ ଲେଖିଛନ୍ତି ଯେ ଲେଖକର ଆତ୍ମସନ୍ତୋଷ ହେଲା, ଯଦି କେହି ତା'ର ଲେଖା ପଢ଼ି ସେ ବିଷୟରେ ଦୁଇପଦ କହେ ବା ଲେଖେ। ତାହାହିଁ ଯଥେଷ୍ଟ। ସେଥିପାଇଁ ପଣ୍ଡିତ ନୀଳକଣ୍ଠଙ୍କ 'କୋଣାର୍କେ' କାବ୍ୟରେ ଲେଖାଥିବା ଉକ୍ତିର ଉଲ୍ଲେଖ କରିଛନ୍ତି।

''ଗ୍ରାହକତା ସିନା କବି ସ୍ୱର୍ଗ ସୁଖ
ଆମ ମୂଲେ କବି ତୋଷଇ କେହିଁ''

ଡାକ୍ତର ବିକ୍ରମ ଦାସ ତାଙ୍କର ଐତିହାସିକ ତଥ୍ୟଗୁଡ଼ିକ ସହିତ ସେ କାଳର ଗତି ଓ ରୀତି ବିଷୟରେ ବହୁ ସ୍ମୃତିଚାରଣ କରିଛନ୍ତି। ବଳଦଗାଡ଼ିରୁ କ୍ରମେ ଆମେ କିପରି ମଟରଗାଡ଼ି ଗଢ଼ିଲୁ ସେହି କ୍ରମ ବିବର୍ତ୍ତନର ବିଷୟ ମଧ୍ୟ ସେ ଲେଖିଛନ୍ତି। ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ଆମ ରାଜ୍ୟରେ ସାଇକେଲ, ମୋଟର ଗାଡ଼ି, ବସ, ଟ୍ରକ ପ୍ରଭୃତି ଯାନଗୁଡ଼ିକର ଯେପରି ପ୍ରଭୂତ ପ୍ରଚଳନ ହୋଇଛି, ପ୍ରଥମାର୍ଦ୍ଧରେ ତାହା ନଥିଲା।

ଭାରତ ଓ ଭାରତ ବାହାରେ ବହୁ ସ୍ଥାନ ପରିଭ୍ରମ କରି ସେ ବହୁ ଅଭିଜ୍ଞତା ଅର୍ଜନ କରିଛନ୍ତି ଓ ଲେଖା ମାଧ୍ୟମରେ ତାହା ପ୍ରକାଶ କରିଛନ୍ତି।

ମୋଟ ଉପରେ ଏହି ଆତ୍ମଜୀବନୀର ଘଟଣାବଳୀକୁ ସତୁରୀ ବର୍ଷର ଏକ ସୂଚନାତ୍ମକ ଇତିହାସ କୁହାଯାଇପାରେ। ବହୁ କଥା ଏଥିରୁ ଜାଣି ହୁଏ। ଏହା ଏକ ଭିନ୍ନ ସ୍ୱାଦର ଆତ୍ମଜୀବନୀ। ଏହାକୁ ଥରେ ପଢ଼ିବା ଆରମ୍ଭ କଲେ ସବୁ ନପଢ଼ି ରହି ହୁଏ ନାହିଁ। ଏହି ଜ୍ଞାନଦୀପ୍ତ ବିବରଣୀ ପାଠ କରି ମୁଁ ଆନନ୍ଦରେ ବିଭୋର ହୋଇ ପଡ଼ିଥିଲି। ପାଠକ ପାଠିକାଙ୍କ ଜାଣିବା ପାଇଁ ତାହାର ସଂକ୍ଷିପ୍ତ ସୂଚନା ମାତ୍ର ପ୍ରଦାନ କଲି। ତାଙ୍କ ଲେଖନୀରେ ପୁଷ୍ପ ବୃଷ୍ଟି ହେଉ, ଏହାହିଁ କାମନା କରୁଛି।

**ଡକ୍ଟର ହରିହର ପଟ୍ଟନାୟକ**
**ପୂର୍ବତନ କୁଳପତି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,**
**ବଙ୍ଗାଳୀ ସାହି, କଟକ**

# ମୋ ଦୃଷ୍ଟିରେ ବିକ୍ରମ ଦାସଙ୍କ ଜୀବନର ଛାପ

ମହାପାତ୍ର ନୀଳମଣି ସାହୁ

ସହକାର -ରଜ ସଂଖ୍ୟା-ଜୁନ୍ ୨୦୦୭

ନବଉତ୍କଳର ନିର୍ମାତା ଋଷିପ୍ରତିମ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ପ୍ରାତଃସ୍ମରଣୀୟ ପୁରୁଷ ପଣ୍ଡିତ ନୀଳକଣ୍ଠ ଦାସଙ୍କ କନିଷ୍ଠ ପୁତ୍ର ସ୍ୱନାମଧନ୍ୟ ଡାକ୍ତର ଅବସରପ୍ରାପ୍ତ ପାଥୋଲୋଜି ପ୍ରଫେସର ବିକ୍ରମ ଦାସଙ୍କ ଲିଖିତ ଆତ୍ମଜୀବନୀ 'ଜୀବନର ଛାପ' ଗ୍ରନ୍ଥଟି ପାଠ କରି ଅତ୍ୟନ୍ତ ସନ୍ତୋଷ ଲାଭ କଲି ଏବଂ ଜୀବନର ଏକ ଅଜ୍ଞାତ ଅଞ୍ଚଳକୁ ଦେଖିବାର ସୁଯୋଗ ଲାଭ କରି ଧନ୍ୟ ହେଲି ।

ଡାକ୍ତର ବିକ୍ରମ ଦାସ ଏକଧାରାରେ ଜଣେ ବିଶିଷ୍ଟ କବି ଓ ଖ୍ୟାତନାମା ଲୋକପ୍ରିୟ କବିରାଜ । ବିଜ୍ଞାନ ଜଗତ ଓ ସାରସ୍ୱତ ଜଗତ ଭିତରେ ସେ ନିଜକୁ ଏକ ସ୍ୱର୍ଣ୍ଣସେତୁ ରୂପେ ପ୍ରତିଷ୍ଠା କରିଛନ୍ତି । ସେ କେବଳ ମଣିଷର ଦେହର ଚିକିତ୍ସାରେ ସାରାଟି ଜୀବନ ନିୟୋଜିତ କରିନାହାନ୍ତି । ମଣିଷର ମନ ଓ ହୃଦୟକୁ ନେଇ ନାନାଦି ଭାବ, ଚିନ୍ତା, ଅନୁଭୂତି, ଆବେଗ ଓ ଉପଲବ୍ଧିର ଆବିଷ୍କାର କରି ସେଗୁଡ଼ିକୁ ସୁନ୍ଦର ଓ ସରସ ଭାଷା ଶୈଳୀରେ ପ୍ରକାଶ କରିଛନ୍ତି ମଧ୍ୟ ।

ତାଙ୍କର ଲେଖନୀର ଏଯାବତ୍ ୨ଟି ଗଳ୍ପ ସଂକଳନ, ଦଶଟି ଉପନ୍ୟାସ । ଦଶଖଣ୍ଡରୁ ଉର୍ଦ୍ଧ୍ୱ ଜୀବନୀ ଓ ଭ୍ରମଣ କାହାଣୀ- ସତରଖଣ୍ଡ ଶିଶୁ ଓ କିଶୋର ସାହିତ୍ୟ ଗ୍ରନ୍ଥ ନିଃସୃତ ହୋଇଛି । ଏତଦ୍‌ବ୍ୟତୀତ ବହୁ,ସାମାଜିକ, ନୈତିକ, ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ ବିଷୟ ଓ ସମସ୍ୟାକୁ ନେଇ ସେ ବହୁ ପୁସ୍ତକ ମଧ୍ୟ ରଚନା କରିଛନ୍ତି । ତାଙ୍କର 'ନିର୍ବାସିତ ଗଜପତି', 'ମୁଁ ଦଶରଥ', 'ମୁଁ ବ୍ୟାସ ଦେବ', 'ବୁଦ୍ଧଖୋଳର ମାୟା', 'ସ୍ୱପ୍ନର ପାଞ୍ଚାଳୀ' ପ୍ରଭୃତି ଉପନ୍ୟାସ ଓ 'ମୋ ନନାଙ୍କ ଦେଶ' ଭଳି ଗ୍ରନ୍ଥ ଖୁବ୍ ଲୋକପ୍ରିୟତା ଅର୍ଜନ କରିଛି ଓ ସେ ମଧ୍ୟ ସେଥିପାଇଁ ସାରସ୍ୱତ ମହଲରେ ବହୁ ସମ୍ମାନ ଓ ପୁରସ୍କାର ଲାଭ କରିଛନ୍ତି ।

ଡକ୍ଟର ଦାସ ଜଣେ ସୁନାମଧନ୍ୟ ଭେଷଜ ବିଶେଷଜ୍ଞ । ଆମ ଭାଷାରେ ଓଡ଼ିଶାର ବହୁ ବରପୁତ୍ର ଓ ବରପୁତ୍ରୀଙ୍କ ଜୀବନୀ ଲେଖାଯାଇଛି ଏବଂ ବହୁ ଆତ୍ମ-ଜୀବନୀ ମଧ୍ୟ ପ୍ରକାଶ ପାଇଛି । ବିଭିନ୍ନ କ୍ଷେତ୍ରରେ ସୁନାମ, ପ୍ରତିଷ୍ଠା ଓ ସ୍ୱାତନ୍ତ୍ର୍ୟ ଅର୍ଜନ କରିଥିବା ସେହି ସବୁ ବଡ଼ ମଣିଷମାନେ ଆମ ଜାତିର ପଥ ପ୍ରଦର୍ଶକ ଓ ଜୀବନର ବିକାଶ ପାଇଁ ପ୍ରଚୋଦ । ସେମାନଙ୍କ ଜୀବନୀ, ବିଶେଷତଃ ଆତ୍ମଜୀବନୀ ପାଠ କଲେ ଆମେ ବୁଝିପାରୁ ସେମାନଙ୍କର ପ୍ରତିଷ୍ଠା ଅର୍ଜନ ପଛରେ କ'ଣ ସବୁ ଆଦର୍ଶ ଥିଲା ଓ କି ଭୀଷଣ ଜୀବନ ସଂଗ୍ରାମରେ ବୀର

ସୈନିକ ଭଳି ଯୁଦ୍ଧ କରି ସେମାନେ ଜୀବନରେ ବିଜୟୀ ହୋଇଛନ୍ତି ଓ ମୃତ୍ୟୁ ପରେ ମଧ୍ୟ ମୃତ୍ୟୁଞ୍ଜୟୀ ହୋଇ ରହିଛନ୍ତି ।

ଆନନ୍ଦର କଥା ଯେ, ଆମ ଭାଷା ସାହିତ୍ୟରେ ଜୀବନୀ ଓ ଆତ୍ମଜୀବନୀକୁ ମହତ୍ ସାହିତ୍ୟର ମର୍ଯ୍ୟାଦା ଦିଆଯାଇଛି । ମଣିଷ ଜୀବନର ବିକାଶ କ୍ଷେତ୍ର ବଡ଼ ପ୍ରଶସ୍ତ । ଜଣେ କୃଷକ ଠାରୁ ଆରମ୍ଭ କରି ଜଣେ ପ୍ରଶାସକ, ଶିଳ୍ପୀ, କଳାବିତ୍, ପୋଲିସ, ସୈନିକ, ରାଜନୈତିକ ନେତା, ଦେଶସେବକ, ସାହିତ୍ୟିକ ଓ ସନ୍ଥ ବା ଯୋଗୀ ସବୁରି ଜୀବନ ନାନା ବିଚିତ୍ର ଅଭିଜ୍ଞତାରେ ପରିପୂର୍ଣ୍ଣ ଓ ନାନାଦି ରୋମାଞ୍ଚକର ଘଟଣାରେ ହୃଦୟସ୍ପର୍ଶୀ ହୋଇଥାଏ । ଡକ୍ଟର ବିକ୍ରମ ଦାସଙ୍କ ଆତ୍ମଜୀବନୀରୁ ଆମେ ନିଶ୍ଚୟ ଏକ ନୂତନ ଅଭିଜ୍ଞତାର ଆସ୍ୱାଦନ ଲାଭ କଲୁ। ତାଙ୍କର ଚିକିତ୍ସକ ଜୀବନରେ ସେ କିପ୍ରକାର ବିଚିତ୍ର ରୋଗୀ ରୋଗିଣୀମାନଙ୍କର ସମ୍ମୁଖୀନ ହୋଇଛନ୍ତି ଏବଂ କି ପ୍ରକାର ମାନସିକ ରୋଗଗ୍ରସ୍ତ ରୋଗୀ ରୋଗିଣୀଙ୍କୁ ସେ କିପରି ଅସୀମ କରୁଣା ଓ ଧୈର୍ଯ୍ୟର ସହିତ ଚିକିତ୍ସା କରିଛନ୍ତି- ତାହା ଡକ୍ଟର ଦାସଙ୍କର କେବଳ ଚିକିତ୍ସା-ବୈଶିଷ୍ଟ୍ୟ ପ୍ରଦର୍ଶନ କରେ ନାହିଁ- ତାଙ୍କର ସମ୍ବେଦନଶୀଳ ଗଭୀର ହୃଦୟର ମଧ୍ୟ ପରିଚୟ ପ୍ରଦାନ କରେ ।

ତାଙ୍କ ଆତ୍ମ-ଜୀବନୀର ଆଉ ଏକ ବିଶେଷତ୍ୱ ହେଲା-ଗତ ଶତାବ୍ଦୀର ତୃତୀୟ ଦଶକ ଠାରୁ ଶେଷ ଦଶକ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶାର ଗ୍ରାମୀଣ ଓ ନାଗରିକ ଜୀବନର ଏକ ଉଜ୍ଜ୍ୱଳ ଆଲେଖ୍ୟ ପ୍ରଦାନ। କହିବା ବାହୁଲ୍ୟ ଯେ, ଏ ବହିଟି ପାଠ କରି ମୁଁ ଖୁବ୍ ମୁଗ୍ଧ ହୋଇଛି ଏବଂ ମୋ ରାଜ୍ୟର ଜଣେ ବିଶିଷ୍ଟ ସ୍ୱନାମଧନ୍ୟ ଚିକିତ୍ସକ ସାହିତ୍ୟିକ ଓ ସଂଗ୍ରାମୀ ବଡ଼ ମଣିଷର ସାର୍ଥକ ଜୀବନ ସହିତ ନିବିଡ଼ ପରିଚୟ ଲାଭ କରିବାର ସୁଯୋଗ ପାଇଛି । ମୁଁ କେବଳ ତାଙ୍କର ଆତ୍ମଜୀବନୀ ପାଠ କରି କହୁନାହିଁ ସେ ମୋର ପ୍ରାୟ ସମସାମୟିକ ବଡ଼ ମଣିଷମାନଙ୍କ ଭିତରେ ଯେ ଜଣେ ଅନନ୍ୟ ବ୍ୟକ୍ତିତ୍ୱଧାରୀ ମଣିଷ - ସେ କଥା ମୁଁ ତାଙ୍କୁ ଓ ତାଙ୍କର କର୍ମାବଳୀର ପ୍ରତ୍ୟକ୍ଷ ପରିଚୟ ପାଇ ମଧ୍ୟ ବାରମ୍ବାର ସେଇ ଗୋଟିଏ କଥା ମୁଁ ତାଙ୍କ ସମ୍ବନ୍ଧେ କହିବି- ସେ ଆମ ସମୟର ଜଣେ ଅସାଧାରଣ ଗୁଣବନ୍ତ ମଣିଷ । ତାଙ୍କର ସାହିତ୍ୟିକ ଅବଦାନ ଅମୂଲ୍ୟ ରତ୍ନ ରୂପେ ଉତ୍କଳ ଭାରତୀ ମା' ଶାରଳାଙ୍କ ରତ୍ନଭଣ୍ଡାରରେ ଚିରଦିନ ପାଇଁ ଗଚ୍ଛିତ ରହିବ-ଏଥିରେ ମୁଁ ନିଃସନ୍ଦେହ। ତାଙ୍କର ଏଇ ଆତ୍ମଜୀବନୀଟି ଅବଶ୍ୟ ପାଠ କରିବାକୁ ମୁଁ ନିଶ୍ଚୟ ସମସ୍ତଙ୍କୁ ପରାମର୍ଶ ଦେବି ।

ଡକ୍ଟର ବିକ୍ରମ ଦାସ ଓଡ଼ିଶାର ସେହି ପ୍ରାତଃସ୍ମରଣୀୟ ପଣ୍ଡିତ ନୀଳକଣ୍ଠ ଦାସଙ୍କର ସୁଯୋଗ୍ୟ ଉତ୍ତରାଧିକାରୀ। ତାଙ୍କର ହାତ ଯଶ ଚିକିତ୍ସା କ୍ଷେତ୍ରରେ ଯେପରି ଅମ୍ଲାନ ସ୍ମୃତ ରୂପେ ଅନ୍ୟ ଚିକିତ୍ସକଙ୍କ ପାଇଁ ପ୍ରେରଣାଦାୟକ ହେବ- ସେହିପରି ତାଙ୍କର ସାହିତ୍ୟକୃତି ମଧ୍ୟ ଆମ ପାଇଁ ସୁଚିନ୍ତା, ସଦ୍‌ଭାବ ଓ ଉଜ୍ଜ୍ୱଳ ପ୍ରେରଣାର ଉତ୍ସ ହୋଇ ରହିଥିବ। ତାଙ୍କୁ ବାରମ୍ବାର ନମସ୍କାର ଜଣାଉଛି ।

ପ୍ଲଟ୍ ନଂ- ୭୮୭ ସହିଦ ନଗର, ଭୁବନେଶ୍ୱର-୭

# ମୁଖବନ୍ଧ

## ଚଉରା-ଅସି କବିତା (ଚଉରାଶୀ) ପୁସ୍ତକର

ପ୍ରଫେସର ଡାକ୍ତର ବିକ୍ରମ ଦାସଙ୍କ ପ୍ରଣୀତ ଚଉରାଶିଟି କବିତା ସମ୍ୱଳିତ ଏ ପୁସ୍ତକର ନାମ ଲେଖକ ଅର୍ଥାନ୍ତରରେ 'ଚଉରା-ଅସି କବିତା' ରଖିଛନ୍ତି। ଏଭଳି ନାମକରଣର ତାତ୍ପର୍ଯ୍ୟ ହେଉଛି, ଏ ପୁସ୍ତକରେ ପୂଜା-ପାର୍ବଣ, ବ୍ରତ ଓଷା ଆଦି ଧାର୍ମିକ ଅନୁଷ୍ଠାନ ଉପରେ ଲିଖିତ କବିତାମାନ ରହିଛି। ତା ସାଙ୍ଗକୁ ସମାଜରେ ଚାଲିଥିବା ଦୁର୍ନୀତି, ଭ୍ରଷ୍ଟାଚାର ଓ ନାନା ପ୍ରକାର ଅନ୍ୟାୟ; ଅତ୍ୟାଚାର ଓ ଶୋଷଣ ପ୍ରଥା ବିରୁଦ୍ଧରେ ଲିଖିତ ଅନେକ କବିତା ମଧ୍ୟ ସ୍ଥାନିତ ହୋଇଛି।'ଚଉରା' ତ ହିନ୍ଦୁ ଗୃହରେ ଏକ ପବିତ୍ର ପୂଜାସ୍ଥଳୀ। ତାହା ଧାର୍ମିକ କବିତା ଗୁଡ଼ିକର ପ୍ରତୀକ ଏବଂ 'ଅସି' ସାମାଜିକ ଅନାଚାର ଓ ଦୁର୍ନୀତି ବିରୁଦ୍ଧରେ ଲେଖକଙ୍କର ଶାଣିତ ପ୍ରତିବାଦର ଏକ ରୂପକ। ସେହି ଦୃଷ୍ଟିରୁ ଦେଖିବାକୁ ଗଲେ ଲେଖକଙ୍କର ନାମକରଣଟି ଯଥାର୍ଥ ହୋଇଛି।

ଏହି କବିତାଗୁଡ଼ିକରୁ କେତେକ ସ୍ୱ ନାମରେ ଏବଂ ଛଦ୍ମ ନାମରେ, କେତେକ ଓଡ଼ିଆ ପତ୍ରପତ୍ରିକାରେ ଯଥା ନିଆଁଖୁଣ୍ଟା, ନବଭାରତ, ଝଙ୍କାର ପ୍ରଭୃତିରେ ପ୍ରକାଶ ପାଇଥିଲା। ଲେଖକ ଓଡ଼ିଶାର ଗ୍ରାମ୍ୟ ଜୀବନକୁ କବିତାରେ ରୂପାୟିତ କରିବାକୁ ଚେଷ୍ଟା କରିଛନ୍ତି ଏବଂ କେତେକ କବିତାରେ ସଫଳ ମଧ୍ୟ ହୋଇଛନ୍ତି। ଗ୍ରାମୀଣ ଓଡ଼ିଆ ଜୀବନର ବହୁ ଚିତ୍ର ଲେଖକଙ୍କ ଲେଖନୀ ମୁନରେ ଜୀବନ୍ତ ହୋଇ ଫୁଟି ପାରିଛନ୍ତି। ଦୈନନ୍ଦିନ ଜୀବନର ନାନା ସାଧାରଣ ଘଟଣା, ସୁଖ, ଦୁଃଖ, ଆଶା, ନୈରାଶ୍ୟ କବିତା ମାଧ୍ୟମରେ ନୂତନ ଭାବମୂର୍ତ୍ତି ନେଇ ଉଭା ହୋଇଛନ୍ତି।

ଲେଖକ ନିଦାନ ବିଭାଗର ଜଣେ କୃତି ଚିକିତ୍ସକ। ଚାକିରୀ ଜୀବନରୁ ଅବସର ନେବା ପରେ ସେ ଗତ କେତେ ବର୍ଷ ହେଲା ସାହିତ୍ୟ ସାଧନାରେ ମନ ବଳାଇଛନ୍ତି। ସେ ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ ଦାସଙ୍କର କନିଷ୍ଠ ପୁତ୍ର। ତେଣୁ ସାହିତ୍ୟ ଯେ, ତାଙ୍କ ରକ୍ତ ମଜ୍ଜାଗତ ଏହା କହିବା ବାହୁଲ୍ୟ ମାତ୍ର। ସାହିତ୍ୟ ମନ୍ଦିରକୁ ତ ଅନେକ ଆସନ୍ତି। ଅନେକ ପୁଣି ତୁଙ୍ଗ ଆକାଙ୍‌କ୍ଷାମାନ ନେଇ ଏ ପବିତ୍ର ପୀଠକୁ ନିଜ ସ୍ୱାର୍ଥ ସାଧନାରେ ଲଗାଇ କଳୁଷିତ କରନ୍ତି। ମାତ୍ର ବିକ୍ରମ ଦାସ ଜଣେ ନିଷ୍ପାପର ରିତ୍ୱିକ୍। ସେ ସାହିତ୍ୟକୁ ଜୀବନର ବ୍ରତ ହିସାବରେ ହିଁ ଗ୍ରହଣ କରିଛନ୍ତି। ବିଳାସ ରୂପେ ନୁହେଁ।

ଏହି ଅଳ୍ପ କେତେ ବର୍ଷ ମଧ୍ୟରେ ସେ କେତେଗୁଡ଼ିଏ ମନୋଜ୍ଞ ଉପନ୍ୟାସ ଯଥା 'ମଣିମାଡିହ' 'ଅଲିଭା ଇତିହାସ' ଏବଂ ବହୁ ଶିଶୁ ପୁସ୍ତକ, ଭ୍ରମଣ କାହାଣୀ, କ୍ଷୁଦ୍ର ଗଳ୍ପ

ସଂକଳନ ଏବଂ ଜୀବନୀ ପ୍ରଭୃତିର ରଚୟିତା ରୂପେ ଓଡ଼ିଶାର ସାହିତ୍ୟ ଜଗତରେ ବେଶ୍ ଖ୍ୟାତି ଅର୍ଜନ କରିଛନ୍ତି ।

ଶଂସିତ ପୁସ୍ତକରେ ଲେଖକଙ୍କର ବହୁ ବ୍ୟଙ୍ଗ କବିତା ସ୍ଥାନ ପାଇଛି । ସମାଜ ଓ ଶାସନରେ ଯେଉଁ ଦୁର୍ନୀତି, ଭ୍ରଷ୍ଟାଚାର, ପ୍ରିୟାପ୍ରୀତି ତୋଷଣ ଓ ଗରିବ ଶୋଷଣ ଦିନକୁ ଦିନ ବଢ଼ି ଚାଲିଛି, ଲେଖକ ସେସବୁର ମୁଖା ଖୋଲି ଦେଇଛନ୍ତି । 'ଅୟି କେନ୍ଦୁପତ୍ର' 'ପିଆଜ ରାଣୀ', 'ଭୋଟ ବେପାରୀ', 'ସୁଷମ ଖାଦ୍ୟ' ପ୍ରଭୃତି କବିତାମାନ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ଲେଖକ ଶାଣିତ ଶ୍ଳେଷ ବାଣରେ ସମାଜରେ ଭଦ୍ରବେଶରେ ଆସନ ମାଡ଼ି ବସିଥିବା ବ୍ୟକ୍ତିମାନଙ୍କୁ କ୍ଷତବିକ୍ଷତ କରିବାକୁ ଛାଡ଼ିନାହାନ୍ତି । ଶାସନ କଳର ବହୁ ଦୋଷ ତ୍ରୁଟି ସେ ଧରାଇ ଦେଇଛନ୍ତି ମାତ୍ର ଯେଉଁଠି ଯିଏ ଅପରାଧୀ, ସେଇ ବିଚାରକ, ସେଠି ସାମାଜିକ ନ୍ୟାୟ ବା ମିଳିବ କିପରି ? ସମାଜର ଶୋଷିତ ଓ ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ପାଇଁ ହିଁ ତାଙ୍କ କବି କଣ୍ଠ ମୁଖରିତ ହୋଇଉଠିଛି ।

ଧର୍ମଭିତ୍ତିକ କବିତାଗୁଡ଼ିକ ଯେପରି ସରଳ ଓ ସମ୍ବେଦନଶୀଳ, ସେହିପରି ଏକ ନିର୍ମଳ ଓ କଳୁଷହୀନ ଜୀବନର ଭୂୟୋଦର୍ଶନରେ ପ୍ରବୁଦ୍ଧ । ନାନା ଛୋଟ ଛୋଟ ସରଳ ଚରିତ୍ର ମଧ୍ୟରେ ସେ ଜୀବନର ନାନା ବିଡ଼ମ୍ବନା, ସ୍ୱବିରୋଧ ଏବଂ କରୁଣାତ୍ମକ ପରିସ୍ଥିତି ତଥା ପରିଣତିକୁ ସୁନ୍ଦର ଭାବେ ଚିତ୍ରଣ କରିଛନ୍ତି ।

ଲେଖକଙ୍କ କବିତାରେ ବହୁ ଗ୍ରାମ୍ୟ ଚରିତ୍ର ସବାକ୍ ଓ ସଚଳ ହୋଇଉଠିଛନ୍ତି । ତାଙ୍କ କବିତାର ପ୍ରସାଦଗୁଣ ସପକ୍ଷରେ ଏହା ଏକ ବଡ଼ ସାକ୍ଷ୍ୟ । ଲେଖକ ଓଡ଼ିଶାର ପୁରପଲ୍ଲୀ, ତଥା ସହରୀ ଜୀବନର ବହୁ ରେଖାଚିତ୍ର ପରିବେଷଣ କରିଛନ୍ତି ।

ଓଡ଼ିଶାର ଜନଜୀବନ ପ୍ରତି ସେ ଯେପରି ସାର୍ବିକ ଦୃଷ୍ଟିପାତ କରିଛନ୍ତି ତାହା ତାଙ୍କର ବହୁଦର୍ଶିତାର ପ୍ରମାଣ ଦିଏ । ତାଙ୍କ ହୃଦୟର ଓ ମନର ପ୍ରବଣତା ଯେ ସାଧାରଣ ମଣିଷ ଆଡ଼େ, ଏହା ତାଙ୍କ କବିତାଗୁଡ଼ିକରୁ ସ୍ପଷ୍ଟ ବୁଝି ହୁଏ ।

ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଯେଉଁମାନେ ଭବ୍ୟ ସଂସ୍କାରବାଦ ଦ୍ୱାରା ସୁଧାରିବାର ପକ୍ଷପାତୀ, ଲେଖକ ବୋଧହୁଏ ସେଇମାନଙ୍କ ଆଶାବାଦରେ ବିଶ୍ୱାସୀ । ମାତ୍ର ସେ ଯାହା ହେଉନା କାହିଁକି ଆମ ଦୂଷିତ ଓ ବାଧିତ ସମାଜର ଭ୍ରଷ୍ଟତା ଓ ଭଣ୍ଡାମି ତାଙ୍କ କବିତାର କାଠଗଡ଼ା ଭିତରେ ଭୟତ୍ରସ୍ତ ଆସାମୀ ପରି ଛିଡ଼ା ହୋଇଛନ୍ତି । ସେମାନଙ୍କର ବିଚାରକ ଏ ଦେଶର ଗଣ ଦେବତା । କୌଣସି ଦରମାଖିଆ କାଜି ବା ନ୍ୟାୟାଧୀଶ ନୁହେଁ । କବି ହିଁ ସେଠି ମୁଖ୍ୟ ଅଭିଯୁକ୍ତ । କବି ବିକ୍ରମ ଦାସ ତାଙ୍କର ସେ ଭୂମିକାଟି ସୂଚାରୁରୂପେ ତୁଲାଇ ପାରିଛନ୍ତି ।

ତାଙ୍କ କବିତାଗୁଡ଼ିକ ମାନବଧର୍ମୀ ଏବଂ ତାଙ୍କ ଉଦାର ନୈତିକ ଦୃଷ୍ଟିକୋଣର ପରିପ୍ରକାଶ । ମୁଁ ତାଙ୍କ କବି ଜୀବନର ସାର୍ଥକ ବିକାଶ ଓ ସାଫଲ୍ୟ କାମନା କରୁଛି ।

**ସଚ୍ଚିଦାନନ୍ଦ ରାଉତରାୟ**

**ମିଶନରୋଡ, କଟକ**

## Domain of Lord Jagannath A Historicla Study

# *Foreword*

This little book, entitled Domain of Lord Jagannath- A Historical Study by Dr Bikram Das, a medical professor, is a unique work in the field of cultural history relating to Lord Jagannath and the Thakur Raja of puri. It describes how the glorious administration of the sixteenth century developed in Purushottama-dham and how the Gajapati Rajas were respected by Rajas, Zamindars and people of Orissa even after they were deprived of power and independence.

The title of the book is befitting the honour of the Lord's and prestige of the Rajas of puri, who among the Hindus, is regarded like the pope of the christian community.

I hope this book will enhance the glory of Orissa as also of the Hindus with their sense of unity in the modern world.

Date: 26-01-1997
Paralakhemundi
Ganjam, ORISSA

***Dr. S.N. Rajguru***
Padmashree
Scholar Emeritus
(History and Archelogy)
Jagannath Sanskrit University
Sri Vihar, Puri

# *Introduction*

Dr. Bikram Das is a versatile writer. His writings comprising Novels, Short stories, Biographics, Historical and social studies and children's Literature have been well appreciated by all concerned. A Docter of the University of Alabama of the U.S.A. and a retired professor of pathology in the medical services of Orissa Government and a renowned physician, he has been devoting himself to literary pursuits of rare kind. Dr. Das has kept himself engaged in literary and Socio-political activities since his studend days. Some of his literary works including Novels are considered by descerning critics as outstanding works of literature.

The "DOMAINS OF JAGANNATH" is unique work in the field of cultural history relating to Lord Jagannath and Thakur Rajas of Puri. It conveys the history of 500 years of Gajapati Kings of Orissa who ruled the land as representative of Lord Jagannath. In this book Dr. Das, has thrown much light on many hidden chapters of Orissan History which were hitherto unknown or little known to the readers of History.

Jagannath is a living emblem of racial memory of Oriyas extending over thousand years, combining in itself many legends and Historical accounts that reveal the collective memories of a heroic race like the Oriyas. It is also a symbol of national integration transcending all barriers of caste and sect as evident in Car festival. It is verily known as a synthesis of many cults and creeds such as Ganapatya, Solar or a Sun

worship and tree worship etc. The cult of Jagannath is an offshoot of Jainisim and Buddhism and finally integrated in Vaishnavism. Many rituals of Jagannath temple are embedded on the vast cultural gestalt of eastern India.

Jagannath is Orissa in a nutshell and Orissa is Jagannath. Orissa is known all over the world as a citadel of arts and culture and she fully justifies her synonym. Utkal which means the land of super arts. Her many splendoured culture and her epic contributions to arts and literature at the common heritage of mankind.

I am happy to know that the renowned publishing firm of Delhi BRPC(India) Ltd. is bringing out the book.

I hope this book will unveil the glory of Orissa and also of the people of India to the modern world.

Date:31/1/97.
Misson Road,
Cuttack-753001

***Dr. Sachidananda Raut-ray***
*Jnanpitha Award Winner &*
*Fellow of Sahitya Academy*
*(National Academy of Letters) and*
*Ex-president, Orissa Sahitya Academy*

# ମୁଁ ଜାଣିଥିଲି, ଏବେ ଆଉ ଖଦଡ଼ ଯୋଦ୍ଧାର ପୋଷାକ ହେବନି, କ୍ଷମତାକୁ ଭଲ ପାଉଥିବା ମଣିଷମାନଙ୍କ ପୋଷାକ ହେବ



**- ପ୍ରଫେସର ଡାକ୍ତର ବିକ୍ରମ ଦାସ**

ପିଲାଦିନୁ ସ୍ୱାଧୀନତା ସଂଗ୍ରାମ ଓ ସମାଜସେବା ସହ ସଂପୃକ୍ତି । ଛାତ୍ର ଜୀବନରେ ଫରଓ୍ୱାର୍ଡ଼ ବ୍ଲକ୍‌ର ଉଗ୍ରବାଦୀ କର୍ମୀ ଭାବେ କାର୍ଯ୍ୟ । ପରବର୍ତ୍ତୀ ସମୟରେ ଦେଶ ବିଦେଶରେ ଡାକ୍ତରୀ ପାଠପଢ଼ା । ଡାକ୍ତରୀ ବୃତ୍ତିରେ ସଫଳତା । ଡାକ୍ତରୀ ବୃତ୍ତିରୁ ଅବସର ପରେ ସାରସ୍ୱତ ସାଧନା । ଜୀବନରେ ଅନେକ କ୍ଷେତ୍ରରେ କାର୍ଯ୍ୟ କରି ନିଜକୁ ପ୍ରତିପାଦିତ କରିଛନ୍ତି ସେ- ଡାକ୍ତର ବିକ୍ରମ ଦାସ । ଡାକ୍ତର ବିକ୍ରମ ଦାସଙ୍କ ଜନ୍ମ ୧୯୨୧ ଫେବୃୟାରୀ ବସନ୍ତ ପଞ୍ଚମୀ ଦିନ । ମହାମନୀଷୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ କନିଷ୍ଠ ପୁତ୍ର ସେ । ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନିକଟବର୍ତ୍ତୀ ଶ୍ରୀରାମଚନ୍ଦ୍ରପୁରଠାରେ ଜନ୍ମଗ୍ରହଣ, ନୂଆ ଓଡ଼ିଶା ମେଡ଼ିକାଲ କଲେଜ (ପରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ)ରେ ନାମ ଲେଖା । ୧୯୫୦ରେ କୃତିତ୍ୱ ସହ ଏମ୍‌ବିବିଏସ୍ ପାଶ୍, ୧୯୫୪ରେ ଆମେରିକାର ବର୍ମିଂହାମ୍ ମେଡ଼ିକାଲ ୟୁନିଭରସିଟି ଅଫ୍ ଆଲବାମାରୁ ସ୍ନାତକୋତ୍ତର ଶିକ୍ଷାଲାଭ ପରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରି ୧୯୫୫ରେ ପୁନଶ୍ଚ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ନିଦାନ ବିଭାଗରେ ଶିକ୍ଷକ ଭାବେ ନିଯୁକ୍ତି, ପରେ ବ୍ରହ୍ମପୁର ମେଡ଼ିକାଲ କଲେଜରେ ନିଦାନ ବିଭାଗର ପ୍ରଥମ ମୁଖ୍ୟ ଅଧ୍ୟାପକ ଭାବେ ଯୋଗଦାନ ତାଙ୍କ ଜୀବନର ଗୋଟିଏ ଗୋଟିଏ ପାହାଚ । ବ୍ରହ୍ମପୁର ଓ ଉତ୍କଳ ବିଶ୍ୱବିଦ୍ୟାଳୟର ଫେଲୋ, ଇଣ୍ଡିଆନ୍ ମେଡ଼ିକାଲ କାଉନ୍‌ସିଲର ନିର୍ବାଚିତ ସଭ୍ୟ ଓ


ପିତା ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହ

ଓଡ଼ିଶା ମେଡ଼ିକାଲ ରେଜିଷ୍ଟ୍ରେସନ୍ ବୋର୍ଡ଼ର ସଦସ୍ୟ ହୋଇଥିଲେ ଓ ପାଥୋଲୋଜି ମାଇକ୍ରୋବାୟୋଲୋଜି ଆସୋସିଏସନ୍‌ର ଆଜୀବନ ସଦସ୍ୟ ଅଛନ୍ତି । ଭାରତର ବିଭିନ୍ନ ରାଜ୍ୟର ମେଡ଼ିକାଲ କଲେଜ ଦ୍ୱାରା ସେ ବହୁ ବର୍ଷ ଏମ୍‌ବିବିଏସ୍ ଓ ଏମ୍‌ଡିର ପରୀକ୍ଷକ ଭାବେ କାର୍ଯ୍ୟ କରିଛନ୍ତି । ୟୁନିୟନ ପବ୍ଲିକ୍ ସର୍ଭିସ୍ କମିଶନର ନିଦାନ, ଜୀବାଣୁତତ୍ତ୍ୱ ଓ ଫୋରେନ୍‌ସିକ୍ ମେଡିସିନ୍‌ର ଶିକ୍ଷକ ଓ ବିଶେଷଜ୍ଞ ନିଯୁକ୍ତିରେ ସେ ପରାମର୍ଶଦାତା ଭାବେ କାର୍ଯ୍ୟ କରିଛନ୍ତି । ଜଣେ ସଫଳ ସ୍ରଷ୍ଟା ଭାବେ ସେ ଦଶଟି ଉପନ୍ୟାସ, ଦୁଇଟି ଗଳ୍ପ ସଂକଳନ, ଦୁଇଟି ଭ୍ରମଣ କାହାଣୀ, ଆଠଟି ଜୀବନ କାହାଣୀ, ତିନୋଟି ରମ୍ୟରଚନା ସଂକଳନ, ସତରଟି ଶିଶୁ ଓ ନବସାକ୍ଷର ସାହିତ୍ୟ ସଂକଳନ ଆଦି ପୁସ୍ତକ ପ୍ରକାଶିତ । ତାଙ୍କ ସହ ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦଙ୍କ ସାକ୍ଷାତ୍...

■ *ଆପଣ ଆମେରିକାରେ ଡାକ୍ତରୀ ଶିକ୍ଷା କରିଥିଲେ । ବିଦେଶରେ ଶିକ୍ଷା ନେବାକୁ ଚାହିଁଲେ କାହିଁକି ?*

☐ ଆମେରିକାର ବର୍ମିଂହାମ୍ ମେଡ଼ିକାଲ କଲେଜ ୟୁନିଭରସିଟି ଅଫ୍ ଆଲବାମାରେ ଅଧ୍ୟୟନ କରିଥିଲି । ସେଠାରେ ମୁଁ ପାଥୋଲୋଜି ଆଣ୍ଡ୍ ମାଇକ୍ରୋ ବାୟୋଲୋଜି ବିଷୟ ନେଇ ସ୍ନାତକୋତ୍ତର ଶିକ୍ଷା କରିଥିଲି । ଏକ୍‌ସଚେଞ୍ଜ ଭିଜିଟର ପ୍ରୋଗ୍ରାମରେ ଦିଲ୍ଲୀରେ ଇଣ୍ଟରଭ୍ୟୁ ଦେଇ ଆମେରିକାରେ ଶିକ୍ଷାଲାଭ ପାଇଁ ଯୋଗ୍ୟ ହୋଇଥିଲି । ପ୍ରଥମ ବ୍ୟାଚ୍‌ରେ ଉଦୟନାଥ ଦାସ ଓ ଆଦିତ୍ୟନାରାୟଣ ବର୍ମନ ଓ ଦ୍ୱିତୀୟ ବ୍ୟାଚ୍‌ରେ ମୁଁ ଏଥିପାଇଁ ଯୋଗ୍ୟ ବିବେଚିତ ହୋଇଥିଲୁ । ଏଠାରେ

ସୂଚନାଯୋଗ୍ୟ ଉଭୟ ଦାସ ଓ ବର୍ମନ ଆମେରିକାରେ ଅଧିକ ବେତନ ପାଇ ସେଠାରେ କାର୍ଯ୍ୟ କଲେ, ମୁଁ କିନ୍ତୁ ଓଡ଼ିଶା ଫେରି ଏଠାରେ ଡାକ୍ତରୀ ବୃତ୍ତିକୁ ଗ୍ରହଣ କରିଥିଲି । ୧୯୫୫ରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ନିଦାନ ବିଭାଗରେ ଅଧ୍ୟାପକ ରୂପେ ନିଯୁକ୍ତି ପାଇଲି ।

■ *ଓଡ଼ିଶା ଫେରିଆସିଲେ କାହିଁକି ?*

❑ ମୋର ଜଣେ ଅତି ଯଶସ୍ୱୀ ବାପା ଥିଲେ । ମୁଁ ଯାଇ ଆମେରିକାରେ ପହଞ୍ଚିଲା ପରେ ତାଙ୍କର ଡାଇବେଟିସ୍ ଓ ହୃଦ୍‌ଘାତ ହେଲା । ଏଣୁ ମୁଁ ସେଠାରୁ ବିଛଣାପତ୍ର ଧରି ବାହାରିଲି । ବାପାଙ୍କର ସେବା ନ କରି ସେଠାରେ ଟଙ୍କା ପାଇଁ ପାଠପଢ଼ିବା ଠିକ୍ ନୁହେଁ ବୋଲି ଭାବିଲି । ମୋର ଜଣେ ପ୍ରଫେସର ମ୍ୟାକ୍‌ମାନ୍‌ସ୍, ଯିଏ କି ମୋତେ ଖୁବ୍ ଭଲ ପାଉଥିଲେ । ମୋତେ କହିଲେ ତୁମେ ବ୍ୟସ୍ତ ହେଉଛ । ଟିକେଟ୍



ପ୍ରଫେସର ମ୍ୟାକ୍‌ମାନ୍‌ସ୍‌ଙ୍କ ସହ ଡାକ୍ତର ବିକ୍ରମ ଦାସ (ମଝିଧାଡ଼ିରେ ଡାହାଣରୁ ଦ୍ୱିତୀୟ)

କରିଛ । ତୁମେ ସଠିକ୍ ଭାବେ ବୁଝ ବାପାଙ୍କ ଦେହ ଏବେ ଭଲ ଅଛି କି ନାହିଁ । ତୁମେ ଏ ରୋଗ ବିଷୟରେ ଜାଣିଛ । ତୁମେ ତ ପାଥୋଲୋଜି ଡାକ୍ତର । ତୁମେ ଏ ରୋଗ ବିଷୟରେ ଜାଣିଥିବା ହୃଦ୍‌ଘାତ ଜଣକୁ ହେଲେ କେତେବେଳ ଯାଏ ସିଏ ରହିବେ କହି ହେବ ନାହିଁ । ଗୋଟିଏ ମୁହୂର୍ତ୍ତ ରହି ନପାରନ୍ତି, ନଚେତ୍ ବର୍ଷ ବର୍ଷ

ଧରି ରହିପାରନ୍ତି । ବୁଝ, ଦେହ କିପରି ଅଛି । ପରେ ବୁଝିଲି ବାପାଙ୍କ ଦେହ ଭଲ ଓ ସେ ବିଧାନସଭା କାର୍ଯ୍ୟରେ ଯୋଗ ଦେଇଛନ୍ତି । ମୋର ଆମେରିକାରୁ ଫେରିବା ନୋହିଲା । ପାଠ ଅଧାରୁ ନ ଫେରି ପ୍ରଫେସରଙ୍କ ପରାମର୍ଶ କ୍ରମେ ପରୀକ୍ଷା ପର୍ଯ୍ୟନ୍ତ ଅପେକ୍ଷା କରିଥିଲି । ମୋତେ ସେହି ପୂଜ୍ୟ ପ୍ରଫେସର କହିଥିଲେ ଯେ, ତୁମେ ଜାଣନା । ମୁଁ ମଧ୍ୟ ତୁମ ପାଇଁ ତିନିଦିନ ଖାଇନାହିଁ । ସେ କିପରି ଗୁରୁ ଥିଲେ, ତାହା ବୁଝୁଥିବ । ମୁଁ ପରୀକ୍ଷା ପରେ ଫେରିଲି ଓ ଏଠାରେ ଡିଗ୍ରୀ ପାଇଥିଲି । ଏଠାରେ ସୂଚନାଯୋଗ୍ୟ ଯେ, ଆମେରିକାରେ ମୁଁ ବାପାଙ୍କ ସ୍ୱାସ୍ଥ୍ୟ ସଂପର୍କରେ ଆର୍‌ଏସ୍‌ଏସ୍‌ର ଗୁରୁଜୀ ଗୋଲଓ୍ୱାଲକରଙ୍କଠାରୁ ଖବର ପାଇଥିଲି ।

■ *ଆମେରିକାର କେଉଁ ସ୍ମୃତି ଏବେ ମନେପଡ଼େ ?*

❑ ଆମେରିକା ଜୀବନର ଅନେକ ସ୍ମୃତି ରହିଛି । ତେବେ ସେଠାରେ ଥିଲାବେଳେ କାରେଲ୍ ହୁଇଜରଙ୍କ ସହ ମିଶିବାର ସୁଯୋଗ ମିଳିଥିଲା । ସେ ଆଇନ୍‌ଷ୍ଟାଇନ୍‌ଙ୍କ ଶିଷ୍ୟ ଥିଲେ । ସେ ଓ୍ୱାର୍ଦ୍ଧା ଆସିଥିଲେ ଓ ଶାନ୍ତିନିକେତନରେ ରହିଥିଲେ । ଚାଲି ଚାଲି ତିବ୍ବତ ଯାଇଥିଲେ ଆଷ୍ଟ୍ରୋନୋମି ସଂପର୍କରେ ବୁଝିବା ପାଇଁ । ଦିନେ ୟୁନିଟେରିଆନ୍ କ୍ଲବରେ ସେ 'ଇଣ୍ଡିଆ ଆଣ୍ଡ୍ ଗାନ୍ଧୀ' ସଂପର୍କରେ ବକ୍ତୃତା ଦେଲେ । ଖୁବ୍ ଚମତ୍କାର ସେ ବକ୍ତୃତା । ସେଇଠି ତାଙ୍କ ସହ ସାକ୍ଷାତ ଓ ପରେ ଅନ୍ତରଙ୍ଗ ହେବାର ସୁଯୋଗ । ତା'ପରେ ମୋତେ ତାଙ୍କଠାରୁ ଏକ ଏକ୍ସମାସ କାର୍ଡ଼ ମିଳିଲା ଓ ଏହି କାର୍ଡ଼ରେ ଦେବନାଗରୀ ଲିପିରେ ସେ ଲେଖିଥିଲେ ଗୀତାର ସେହି ଶାଶ୍ୱତ ଶ୍ଳୋକ 'ଯଦା ଯଦା ହି ଧର୍ମସ୍ୟ...' । ସେ ସବୁବେଳେ ନିଗ୍ରୋଙ୍କ ଚର୍ଚ୍ଚକୁ ବକ୍ତୃତା ଦେବାପାଇଁ ଆସନ୍ତି, ମୁଁ ଯାଇ ଶୁଣେ । ତିନିବର୍ଷର ବିଦେଶ ରହଣୀ କାଳରେ ତାଙ୍କ ସହ ସମ୍ବନ୍ଧ ସବୁବେଳେ ମନେପଡ଼େ ।

■ *ପିଲାଦିନର କେଉଁ ସ୍ମୃତି ମନେପଡ଼େ ?*

❑ ମୋର ମନେପଡ଼େ ବାପ ମା' ଓ ସାନ ଭଉଣୀଙ୍କ କଥା । ଗୋପବନ୍ଧୁ ସେବାସଦନ ଗଢ଼ାହେବା କଥା । ଆଚାର୍ଯ୍ୟ ହରିହର, ଲାଲବିହାରୀ ଦାସ, ସତ୍ୟବାଦୀ ନନ୍ଦ, ଦୁଃଖୀଶ୍ୟାମ ଦାସ ପ୍ରଭୃତି ସତ୍ୟାଗ୍ରହୀଙ୍କ କାର୍ଯ୍ୟ ମୋର ମନେପଡ଼େ । ବେଶୀ ମନେପଡ଼େ ସ୍ୱାଧୀନତା ସଂଗ୍ରାମୀ ଲାଲବିହାରୀ ଦାସଙ୍କ ସାନଭାଇ ଗୋଲକ ବିହାରୀ ଦାସଙ୍କୁ ପାଟଣା କ୍ୟାମ୍ପ ଜେଲ୍ ଭିତରେ ଗୁଳିକରି ମାରିଦିଆଗଲା । ଆମେ ସେଥିରେ ଖୁବ୍ ଦୁଃଖିତ ହୋଇଥିଲୁ ।

■ *ଆପଣଙ୍କ ଛାତ୍ର ଜୀବନ... ?*

❑ ସେତେବେଳକୁ ସତ୍ୟବାଦୀ ବନବିଦ୍ୟାଳୟ ଭାଙ୍ଗିଯାଇଥାଏ । ମୁଁ ନୂଆକରି ଗଢ଼ାଯାଇଥିବା ସତ୍ୟବାଦୀ ବନବିଦ୍ୟାଳୟରେ ଚତୁର୍ଥ ଶ୍ରେଣୀରେ ଭର୍ତ୍ତି ହେଲି । ଦୁଇଅଣା ପଇସା ଘରଭଡ଼ା । ଆମେ ୮/୧୦ ଜଣ ପିଲା ସେହି ଘରେ ଲିପିପୋଛି ପଟି ପକାଇ ଶୋଉଥିଲୁ । ମୁଁ ସେତେବେଳେ ୩ଟଙ୍କା ସ୍କଲାରସିପ୍ ପାଉଥିଲି । ମୋର ଦରମା ଛାଡ଼ ଥିଲା ।

■ *ପିତା ନୀଳକଣ୍ଠ ଦାସ ଓଡ଼ିଶା ରାଜନୀତିରେ ସକ୍ରିୟ ଥିଲାବେଳେ ଏ କ୍ଷେତ୍ରରେ ଆପଣ କିଛି ଭୂମିକା ନେଉଥିଲେ କି ?*

❑ ଦେଖନ୍ତୁ ୧୯୩୯ରେ ମୁଁ ଛାତ୍ର ଆନ୍ଦୋଳନରେ ସାମିଲ ହୋଇ ଜେଲ୍ ଯାଇଥିଲି । ସେତେବେଳେ ମୁଁ ରେଭେନ୍ସା କଲିଜିଏଟ୍ ସ୍କୁଲ୍‌ରେ ପଢୁଥିଲି । ପୁଣି ବାପା ନିର୍ବାଚନ ଲଢୁଥିଲାବେଳେ ତାଙ୍କ ପାଇଁ ମଧ୍ୟ ପ୍ରଚାର କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲି । ସେତେବେଳର ନିର୍ବାଚନ ଥିଲା ଖୁବ୍ ଭିନ୍ନ । ମୂଲ୍ୟବୋଧକୁ ଗୁରୁତ୍ୱ ଦିଆଯାଉଥିଲା । ବାପା ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ନିର୍ବାଚନ ଲଢୁଥିଲେ । ତାଙ୍କ ବିରୋଧରେ ଲଢୁଥିଲେ କଂଗ୍ରେସର ସତ୍ୟବାଦୀ ନନ୍ଦ । ଦିନେ ନିର୍ବାଚନ ପ୍ରଚାରରେ ଯାଇଥିଲା ବେଳେ ଜଣେ ବାପାଙ୍କୁ ପ୍ରଶ୍ନ କଲେ, "ଆପଣଙ୍କୁ ଭୋଟ୍ ଦେବୁ । ଆପଣ କଟକ ଭୁବନେଶ୍ୱରରେ ରହିବେ । କାହିଁକି ଆପଣଙ୍କୁ ଭୋଟ୍ ଦେବୁ । ଆମ ଦୁଃଖସୁଖ କ'ଣ ଆପଣ ବୁଝିବେ ?" ବାପା କହିଲେ "ମୁଁ ତ ବୁଝାଇବାକୁ ଆସିଥିଲି ଭୋଟ୍ କ'ଣ ? ପଞ୍ଚାୟତଠାରୁ ପାର୍ଲାମେଣ୍ଟ ପର୍ଯ୍ୟନ୍ତ ଭୋଟ୍ ହେଉଛି । କେଉଁଥିପାଇଁ କିଏ ଯୋଗ୍ୟ ତାହା ତୁମେ ଦେଖିବା ଦରକାର । ତୁମେ ଭୋଟ୍ ଦେବବୋଲି ତୁମ ଗୁହାଳ ପୋଛିପାରିବିନି । ମୁଁ ବୁଝାଇବାକୁ ଆସିଛି ଭୋଟ୍ ସଂପର୍କରେ । ନୂଆ ଭୋଟ୍ ହେଲା । ମୁଁ ପୂର୍ବେ ଯେତେବେଳେ ଆସୁଥିଲି ତୁମ ବାପା ବଡ଼ବାପାଙ୍କ ସହ ସଂପର୍କ ଥିଲା । ମୁଁ ଆଜି ଏ ଅବସ୍ଥାରେ ତୁମକୁ ଆସି ଦେଖା କରିପାରିବି ନାହିଁ । ଏହି ନିର୍ବାଚନରେ ବାପା ଖୁବ୍ ଭୋଟ୍‌ରେ ବିଜୟୀ ହୋଇଥିଲେ ।"

■ *ବାପାଙ୍କୁ କିପରି ଦେଖି ଆସିଛନ୍ତି ?*

❑ ବାପାଙ୍କ ସାଙ୍ଗରେ ଆମର ଖୁବ୍ କମ୍ ଦେଖା ହୁଏ । ସେ ତ ୨୪ ବର୍ଷ କାଳ କେନ୍ଦ୍ର ବ୍ୟବସ୍ଥାପକ ସଭାର ସଦସ୍ୟ ଥିଲେ । ସ୍ୱରାଜ ପାର୍ଟି (କଂଗ୍ରେସ)ର ସମ୍ପାଦକ ରୂପେ ସେ କାର୍ଯ୍ୟ କରିଥିଲେ । ଗୋପବନ୍ଧୁଙ୍କ ଦେହାବସାନ ପରେ କଂଗ୍ରେସ

ଦଳର ଦାୟିତ୍ୱ ନେଇଥିଲେ । କର୍ମବ୍ୟସ୍ତତା ଭିତରେ ତାଙ୍କ ସହ ମିଶିବାର ସୁଯୋଗ କମ୍ ଥିଲା । ତେବେ ସେ କାହାକୁ ଆତ୍ମୀୟ ବା କୁଟୁମ୍ବ ବୋଲି ଭାବୁ ନଥିଲେ । ସେ ସମସ୍ତଙ୍କୁ ନିଜର କର୍ମୀ ଭାବେ ଭାବୁଥିଲେ । ମୁଁ ନବମ ଶ୍ରେଣୀରେ ପଢ଼ିଲା ବେଳେ ସେ ମୋତେ ଶିମିଳାରୁ ଯେଉଁ ଚିଠି ଲେଖିଥିଲେ, ସେଥିରେ ସେ ଓଡ଼ିଶାରେ କିଛି କାମ ସଂପର୍କରେ ବୁଝିବାକୁ କହିଥିଲେ । ମୁଁ ପରୀକ୍ଷା ମୁଣ୍ଡ ଉପରେ ଥିବାରୁ ଏହା କରିବା ସମ୍ଭବପର ନୁହେଁ ବୋଲି ଜଣାଇଥିଲି । ସେ ମୋତେ ଲେଖିଥିଲେ, ତୁ କ'ଣ ପରୀକ୍ଷା ପାଇଁ ପାଠ ପଢୁଛୁ । ପରୀକ୍ଷାରେ ପାଶ୍ ଫେଲ୍ ବଡ଼କଥା ନୁହେଁ, ଜ୍ଞାନ ଅର୍ଜନ ପାଇଁ ପାଠପଢ଼ ।'

■ ***ବାପାଙ୍କୁ ତ ଅନେକ ରାଗି ବୋଲି କହନ୍ତି ?***

❑ ତାଙ୍କୁ ରାଗି ବୋଲି କହନ୍ତି, ମାତ୍ର ତାଙ୍କୁ ରାଗି ଆସୁ ନଥିଲା । ସେ ଚିଡ଼ିଗଲେ କହନ୍ତି, 'ଅର୍ବାଚୀନ ବାଳକ' । ସେତେବେଳେ ନିଜର ଦାଢ଼ି ଧରନ୍ତି । ଏତିକିରେ ତ ପିଲାମାନେ ଛାନିଆଁ । କିନ୍ତୁ ତାଙ୍କ ପାଟିରୁ କେବେ ଖରାପ ଭାଷା ବାହାରେ ନାହିଁ । ଥରେ ସେ ଗାଳିଦେଇ ଜଣକୁ କହିବାର ଶୁଣିଛି–' ଗୃହିଣୀ ସହୋଦରଟା କ'ଣ କଲାରେ...' । ସେ ଅତି ସାଧାରଣ ଲୋକ ଥିଲେ । ଯିଏ ନାହିଁ ସିଏ ତାଙ୍କୁ ସହଜରେ ଠକି ଦେଉଥିଲେ । କଟକରେ ସେ ଆସି ରହନ୍ତି, ମାତ୍ର କେଉଁଠି କେଉଁ ଦୋକାନ ରହିଛି ଜାଣନ୍ତି ନାହିଁ । ଏକାକୀ ଖାଇବାକୁ ସେ ଭଲପାଉ ନଥିଲେ । କର୍ମୀମାନେ ଏକାଠି ବସିଲେ, ସେ ଖାଇବାକୁ ଭଲପାଉଥିଲେ ।

■ ***ମନେପଡୁଛି ୧୯୪୭ ଅଗଷ୍ଟ ୧୫ର କଥା ?***

❑ ଆମେ ସୁଭାଷ ପନ୍ଥୀ ଥିଲୁ । ଆମକୁ ତ ପୁଲିସ୍ ଗୋଡ଼ାଉଥିଲା । ଏହା କୋହଳ ହେବାରୁ ମୁଁ କୌଣସି ପ୍ରକାରେ ମେଡ଼ିକାଲ ପଢ଼ିଲି । ପିଲାଦିନୁ ଖଦଡ଼ରେ ମୋର ଜନ୍ମ । ଖଦଡ଼ ଲୁଗା ଚାଦର ଓ ପଞ୍ଜାବୀ ପିନ୍ଧି କଲେଜ ଯାଉଥିଲି । ୧୯୪୭ ଅଗଷ୍ଟ ୧୫ରେ ମୁଁ ଖଦଡ଼ ପିନ୍ଧା ଛାଡ଼ିଲି । ସେହିଦିନ ମେଡ଼ିକାଲ କଲେଜ ସାମ୍ନାରେ ମୋର ଖଦଡ଼ ପୋଷାକ ପୋଡ଼ି ଦେଇଥିଲି । କାରଣ ମୁଁ ଭାବିଥିଲି ଏବେ ଆଉ ଖଦଡ଼ ଯୋଦ୍ଧାର ପୋଷାକ ହେବନାହିଁ, କ୍ଷମତାକୁ ଭଲ ପାଉଥିବା ମଣିଷମାନଙ୍କ ପୋଷାକ ହେବ ।

■ ***ଯେତେବେଳେ ଡାକ୍ତରୀକୁ ବୃତ୍ତି ରୂପେ ଗ୍ରହଣ କଲେ, ସେତେବେଳର ଅବସ୍ଥା ?***

❑ ସେତେବେଳେ ଦୁଇଟି ବ୍ୟାଚ୍‌ରେ ୩୧ ଜଣ ପିଲା ଭର୍ତ୍ତି ହୋଇଥିଲୁ । ମାତ୍ର ୯ ଜଣ ପିଲା ପାଶ୍ କରିଥିଲୁ । ସେଇ ସମୟରେ ରକ୍ତଲେଇ ଘଟଣା ଘଟିଥିଲା ।

ହଜାର ହଜାର ଲୋକ ମଲେ । ମୁଁ ହାଉସ୍ ସର୍ଜନ ଥିଲି । ୮ଟି ମାତ୍ର ବେଡ୍ । ଶହଶହ ରୋଗୀ ଗଦା ହେଲେ । ସେମାନେ ବିଭିନ୍ନ ରୋଗରେ ମଧ୍ୟ ଆକ୍ରାନ୍ତ । ସେତେବେଳେ ପ୍ରଫେସର ଏମ୍.ଏନ୍. ପିସାରୋଟୀ ଖୁବ୍ ନିଷ୍ଠାର ସହ ରୋଗୀଙ୍କୁ ଚିକିତ୍ସା କରୁଥିଲେ । ଆମେ ଯେତେବେଳେ ଡାକ୍ତରୀ ବୃତ୍ତି ଆରମ୍ଭ କଲୁ, ସେତେବେଳେ ପଇସା ଦେଇ ଚିକିତ୍ସା ହେବା ଲୋକ କେହି ନଥିଲେ । ସମସ୍ତଙ୍କର ମାଗଣା କାମ କରାଯାଉଥିଲା । ଗୋଟିଏ ସୁଦ୍ଧା ନର୍ସିଂହୋମ୍ ନଥିଲା । ବାଲୁବଜାରରେ ୨/୩ଟି ଘରୋଇ ଦୋକାନ ଓ କଟକରେ ୮/୧୦ଜଣ ହାତଗଣତି ଡାକ୍ତର । ଡାକ୍ତରୀ କାର୍ଯ୍ୟ ବେଳେ ଭଗବତୀ ଆଚାର୍ଯ୍ୟ, ଶରତଚନ୍ଦ୍ର ମିଶ୍ର, ମୁଁ ଓ ଅନ୍ୟ ଯେଉଁମାନେ ପଇସା ଚାହୁଁ ନଥିଲୁ, ରୋଗୀ ଦେଖି ଫେରିଆସୁ । ରାତିରେ ନିଦ ହୁଏନା, ସେହି ରୋଗୀର କଥା ଭାବୁଥାଉ । ଡାକ୍ତର ରଘୁସାହୁ ନିଜ ଫିସ୍ ନେଉଥିଲେ ମଧ୍ୟ ରୋଗୀକୁ ଘଣ୍ଟାଏ ଦୁଇଘଣ୍ଟା ପରୀକ୍ଷା କରି ମାତ୍ର ଚାରଣା ମୂଲ୍ୟର ଔଷଧ ଦେଉଥିଲେ । ରୋଗୀ ସେହିଥିରେ ଆରୋଗ୍ୟ ।

ପିସାରୋଟୀ ପ୍ରଫେସର ଥିଲାବେଳେ ସେ ସବୁ ୱାର୍ଡ ବୁଲି ବୁଲି ଦେଖନ୍ତି । ଥରେ ଜଣେ ରୋଗୀ ଅଭିଯୋଗ କଲା ତା'ର ନିଦ ହେଉନାହିଁ। ତାକୁ ବ୍ରୋମାଇଡ୍ ମିକ୍‌ଚର ଲେଖିଦିଆଗଲା । ଆମେ ଅନ୍ୟ ୱାର୍ଡ ବୁଲି ବୁଲି ଆସିଲା ବେଳକୁ ସେହି ରୋଗୀ ଶୋଇଛି ଓ ନର୍ସ ତାକୁ ହଲାଉଛି ବ୍ରୋମାଇଡ୍ ମିକ୍‌ଚର ଖାଇବାକୁ । ଲୋକଟିକୁ ନିଦ; କିନ୍ତୁ ନର୍ସ ନିଦ ଔଷଧ ଦେବାକୁ ତାକୁ ଡାକୁଛି । ସେଇଠି ପିସାରୋଟି ସମସ୍ତେ ରୋଗୀକୁ ଭଲ ଭାବରେ ଚିକିତ୍ସା କରିବାକୁ ପରାମର୍ଶ ଦେଇଥିଲେ ।

■ ***ଡାକ୍ତର ରୂପେ ଆପଣଙ୍କ ସଫଳତା ?***

❑ ୧୯୬୮ରେ କଟକରୁ ବଦଳି ହୋଇ ବ୍ରହ୍ମପୁର ମେଡ଼ିକାଲ୍ କଲେଜ ନିଦାନ ବିଭାଗରେ ପ୍ରଥମ ମୁଖ୍ୟ ଅଧ୍ୟାପକ ଭାବେ ଯୋଗ ଦେଲି । ନୂଆ କଲେଜ ଗଢ଼ି ଭାରତ ମେଡ଼ିକାଲ କାଉନ୍‌ସିଲ୍ ଦ୍ୱାରା ଏମ୍‌ବିବିଏସ୍ ଓ ଏମ୍.ଡି ପାଠ୍ୟକ୍ରମକୁ ସ୍ୱୀକୃତି ଦେବାକୁ ଲାଗିପଡ଼ିଲି । ଓଡ଼ିଶାରେ ଅନ୍ୟ କଲେଜରେ ଏ ବିଭାଗ ପ୍ରଥମ ପରିଦର୍ଶନରେ ସ୍ୱୀକୃତି ପାଇନଥିଲା ବେଳେ ମୋ ବିଭାଗ ଆଇଏମ୍‌ସିର ସମସ୍ତ ସର୍ତ୍ତ ପୂରଣ କରି ଗୋଟିଏ ଲେଖାଏଁ ପରିଦର୍ଶନରେ ଏମ୍‌ବିବିଏସ୍ ଓ ଏମ୍‌ଡି ପାଇଁ ସ୍ୱୀକୃତି ପାଇପାରିଥିଲା । ମୁଁ ବହି ନୁହେଁ ଭିଜୁଆଲ୍ ଟ୍ରେନିଂରେ ପାଠପଢ଼ାକୁ ଗୁରୁତ୍ୱ ଦେଉଥିଲି ଏବଂ ଜଣେ ଡାକ୍ତର ଓ ଅଧ୍ୟାପକ ରୂପେ ଲୋକପ୍ରିୟ ହୋଇଥିଲି ।

■ *ଆପଣ ଲେଖାଲେଖି ପ୍ରତି ଆଗ୍ରହୀ ହେଲେ କିପରି ?*

❑ ମୁଁ ପ୍ରକୃତରେ ସ୍ୱାଧୀନତା ସଂଗ୍ରାମୀ । ବହୁତ ସ୍ୱାଧୀନତା ସଂଗ୍ରାମୀଙ୍କ ସଂପର୍କରେ ପଢ଼ାପଢ଼ି କରିଥିଲି । ବାପାଙ୍କ ପାଖକୁ ଗଲେ ଦେଖେ ବାପା ପଢୁଥା'ନ୍ତି । ବାପାଙ୍କ ନିକଟକୁ ବଡ଼ବଡ଼ ସାହିତ୍ୟିକମାନେ ଆସୁଥିଲେ । ସାହିତ୍ୟ ସମ୍ପର୍କରେ ଆଲୋଚନା ହେଉଥିଲା । ସେଥିରୁ ଲେଖା ଲେଖି କରିବାକୁ ପ୍ରେରଣା ପାଇଥିଲି । ସ୍ୱାଧୀନତା ସଂଗ୍ରାମର ଯେଉଁ ଝଲକ ମୋ'ଠାରେ ବାଜିଥିଲା । ତାହା ମୋତେ ଐତିହାସିକ ଉପନ୍ୟାସ ଲେଖିବାରେ ପ୍ରେରଣା ଦେଇଥିଲା ।

■ *ରାଜନୀତି ନ କରି ଡାକ୍ତରୀ ବୃତ୍ତିକୁ ଗ୍ରହଣ କରିବା ଆପଣଙ୍କ ମନରେ ଅବସୋସ ସୃଷ୍ଟି କରିଛି କି ?*

❑ ଆଦୌ ନୁହେଁ । ବାପାଙ୍କ ବୟସ ହେବା ପରେ ମୋତେ ଠିଆ କରିବାକୁ ଅନେକ ଲାଗିଥିଲେ । ମୋର ସାଥୀ ବାଙ୍କବିହାରୀ ଦାସ, ପ୍ରଦୀପ୍ତ କିଶୋର ଦାସ, ଚିନ୍ତାମଣି ପାଣିଗ୍ରାହୀ ରାଜନୀତି କଲେ । କିନ୍ତୁ ମୋ ବୃତ୍ତିରେ ମୁଁ ସନ୍ତୁଷ୍ଟ । ଏବେ ବହି ଲେଖୁଛି, ଖୁସିରେ ଅଛି ।

■ *'ନବଭାରତ'ରେ ଆପଣ ଲେଖାଲେଖି କରିଥିଲେ କି ?*

❑ ଖୁବ୍ କମ୍ ଲେଖିଥିଲି । ଏ ପତ୍ରିକାର ନାମ ଥିଲେ ମଧ୍ୟ ଏହା ବନ୍ଦ ହୋଇଗଲା । ନବଭାରତ ମାସିକ ପତ୍ରିକାର ପୁନଃପ୍ରକାଶ କରିବା ଆଶାରେ ଲୋକସେବକ ମଣ୍ଡଳକୁ ନବଭାରତ ପ୍ରେସ୍ ଆଦି ସମସ୍ତ ପ୍ରେସ୍ ସାମଗ୍ରୀ ପ୍ରଦାନ କରାଯାଇଥିଲା । ମାତ୍ର ଏହି ପତ୍ରିକା ପ୍ରକାଶ ପାଇବା ସମ୍ଭବ ହେଲାନାହିଁ । ଏହା ପ୍ରକାଶ ପାଉଥିଲେ ଏକ ସମ୍ଭ୍ରାନ୍ତ ପତ୍ରିକା ରୂପେ ତିଷ୍ଠି ରହିବାର ସୌଭାଗ୍ୟ ପାଇଥା'ନ୍ତା ।

**ପ୍ରଜାତନ୍ତ୍ର ଆଇନା- ତା.୧.୧୦.୨୦୦୬ ରବିବାର**



## ପ୍ରଫେସର ଡାକ୍ତର ବିକ୍ରମ ଦାସଙ୍କ ସୃଷ୍ଟି -ସମ୍ଭାର

| ବହିର ନାମ | ପ୍ରକାଶକ | ପ୍ରକାଶ ସମୟ |
|---|---|---|
| **ଗଳ୍ପ ସଂକଳନ** | | |
| ୧) ସାତ ତିରିକି ସତର | ଦାସବ୍ରଦର୍ସ, ବ୍ରହ୍ମପୁର | ୧୯୭୬ |
| ୨) ଅଖଇରିଆ କଡ଼ା | ସାଥୀ ପ୍ରକାଶ, କଟକ | ୧୯୮୧ |
| **ଉପନ୍ୟାସ** | | |
| ୧) ମଣିମାଡ଼ିହ | ଗ୍ରନ୍ଥମନ୍ଦିର, କଟକ | ୧୯୮୧ |
| ୨) ଅଲିଭା ଇତିହାସ | ଗ୍ରନ୍ଥମନ୍ଦିର, କଟକ | ୧୯୮୬ |
| ୩) ବୁଦ୍ଧ ଖୋଲର ମାୟା | ନିଉ ଷ୍ଟୁଡେଣ୍ଟ ଷ୍ଟୋର, କଟକ | ୧୯୮୫ |
| ୪) ନିର୍ବାସିତ ଗଜପତି | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୮୬ |
| ୫) ଭଲେ ବିରାକୋଜୀ | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୮୮ |
| ୬) ସ୍ୱପ୍ନର ପାଞ୍ଚାଳି | ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ | ୧୯୯୦ |
| ୭) ଅକଲ ଗୁଡ଼ମ୍ | ସାଥୀ ପ୍ରକାଶନୀ | ୧୯୯୦ |
| ୮) ତିନି ପିଢ଼ିର ହୋଟେଲ | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୯୧ |
| ୯) ମୁଁ ଦଶରଥ | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୯୪ |
| ୧୦) ମୁଁ ବ୍ୟାସଦେବ | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୯୯ |
| **ରମ୍ୟରଚନା** | | |
| ୧) ଆମ ପାତାଳପୁରୀ(ଐତିହାସିକ) | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୮୪ |
| ୨) ଆମ ଗଜପତି ଆମ ଗାଁ | ଗ୍ରନ୍ଥପ୍ରକାଶନୀ, କଟକ | ୧୯୯୫ |
| ୩) ଅସୁର ରାମାୟଣ(ପୌରାଣିକ) | ଖଣ୍ଡକ୍ଷୀରୋଦ ମିଶ୍ର, ବାଙ୍କାବଜାର, କଟକ | ୧୯୮୩ |

| ବହିର ନାମ | ପ୍ରକାଶକ | ପ୍ରକାଶ ସମୟ |
|---|---|---|
| **ଭ୍ରମଣ କାହାଣୀ** | | |
| ୧) ସେପଟ ଦୁନିଆ | ନାଳନ୍ଦା, କଟକ | ୧୯୮୧ |
| ୨) ଚିର ବସନ୍ତର ଦେଶ ମରିସସ୍ | କଟକ ପବ୍ଲିଶିଂ ହାଉସ | ୧୯୯୫ |
| **ଜୀବନ କାହାଣୀ** | | |
| ୧) ମୋ ନନାଙ୍କ ଦେଶ | ଓଡ଼ିଶା ବୁକ୍ ଷ୍ଟୋର | ୧୯୮୩ |
| ୨) ଚିତ୍ରେ ମହାମନିଷୀ | ନୀଳକଣ୍ଠନୀଳକଣ୍ଠ ଶତବାର୍ଷିକ ପ୍ରକାଶନ | ୧୯୮୫ |
| ୩) ବିଚାରପତି ଚଗଲା | ଗୋପବନ୍ଧୁସାହିତ୍ୟ ମନ୍ଦିର 'ସମାଜ' | ୧୯୮୫ |
| ୪) ଆଦିଜ୍ୟୋତି ହରିହର | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୮୮ |
| ୫) ସଂଗ୍ରାମୀ ଗୁରୁ | କଟକ ଷ୍ଟୁଡେଣ୍ଟ ଷ୍ଟୋର | ୧୯୯୨ |
| ୬) ସରଳାଦେବୀ | ସାରସ୍ୱତ ଭଣ୍ଡାର | ୧୯୯୨ |
| ୭) ଜାତୀୟ ରଣାଙ୍ଗନରେ ସୁଭାଷ ଓ ନୀଳକଣ୍ଠ | ନୀଳକଣ୍ଠ ସ୍ମୃତି ସମିତି, ଭୁବନେଶ୍ୱର | ୧୯୯୩ |
| ୮) ଓଡ଼ିଆ ବଜାରର ଅଗ୍ନିଶିଖା ସୁଭାଷ | ଜନ୍ମ ଶତବର୍ଷିକ ପ୍ରକାଶନ, ଖଣ୍ଡ କ୍ଷୀରୋଦ ମିଶ୍ର | |
| **ଆତ୍ମଜୀବନୀ** | | |
| ୧) ଜୀବନର ଛାପ ଅନୁଭୂତି ଓ ଅନ୍ୱେଷଣ | ଲାର୍କ ବୁକସ୍ | ୨୦୦୫ |
| **କବିତା** | | |
| ୧) ଚଉରାଅସୀ କବିତା | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୯୫ |

ସେ ବାରିଛନ୍ତି ଏ ମାଟିର ବାସ୍ନା,
ଖୋଜିଛନ୍ତି ଇତିହାସ ଓ କିମ୍ବଦନ୍ତୀ।
ଏ ଜାତିର ଐତିହ୍ୟ ଓ ଜୀବନବେଦ
ଲିପିବଦ୍ଧ ହୋଇଛି ତାଙ୍କ ସୃଷ୍ଟିର ପୃଷ୍ଠାରେ ପୃଷ୍ଠାରେ...।
ସେ କଥାକାର ଡାକ୍ତର ବିକ୍ରମ ଦାସ।
ଉପନ୍ୟାସରୁ ଜୀବନୀ, ଆତ୍ମଜୀବନୀରୁ ରମ୍ୟରଚନା,
ଗଳ୍ପ ଓ କବିତା – ଏମିତି ସାହିତ୍ୟର
ଚିତ୍ରିତ ଚୌହଦୀକୁ ବର୍ଣ୍ଣମୟ କରିଛନ୍ତି ସେ।
ଏ ଜାତିର ପ୍ରାତଃସ୍ମରଣୀୟ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁତ୍ର
ଜୀବନ ସଂଗ୍ରାମର ଯୋଦ୍ଧା ଡାକ୍ତର ଦାସ
ଉପଯୁକ୍ତ ଉତ୍ତରାଧିକାରୀ ଭାବେ
ନିର୍ବାହ କରିଛନ୍ତି ନିଜର ଦାୟବଦ୍ଧ ଭୂମିକା।
ଦେଶମାତୃକାକୁ ସ୍ୱାଧୀନ କରିବାକୁ
ଝାସ ଦେଇଥିଲେ ସ୍ୱାଧୀନତା ସଂଗ୍ରାମର ମହାଯଜ୍ଞରେ...।
ଚିକିତ୍ସକ ଭାବେ ନିଜ ପାଇଁ
ସ୍ୱତନ୍ତ୍ର ପରିଚିତି ସୃଷ୍ଟି କରିଥିଲେ ହେଁ
ତାଙ୍କ ସାରସ୍ୱତ କୃତି ବାସ୍ନା-ବିଭୋର କରିଛି
ଏ ମାଟି ଓ ତା'ର ଇତିହାସକୁ
ଭଲପାଉଥିବା ମଣିଷମାନଙ୍କୁ।
ସାରସ୍ୱତ ସାଧକ ଡାକ୍ତର ବିକ୍ରମ ଦାସଙ୍କ
ଜୀବନ ଓ ସାରସ୍ୱତ ସାଧନା ସଂପର୍କରେ ଏ ସଂକଳନ।




ଉତ୍କଳ ସାହିତ୍ୟ ସମାଜ